# କଳିଙ୍ଗର
# ମନ୍ଦିର ସ୍ଥାପତ୍ୟ




ଦୁର୍ଗାଚରଣ ପଣ୍ଡା




ଆର୍ଟ ସେଣ୍ଟର ପ୍ରକାଶନ

କଳିଙ୍ଗର ମନ୍ଦିର ସ୍ଥାପତ୍ୟ
ଲେଖକ: ଶ୍ରୀ ଦୁର୍ଗାଚରଣ ପଣ୍ଡା

ପ୍ରଥମ ପ୍ରକାଶନ -ଏପ୍ରିଲ- ୨୦୦୦

ପ୍ରକାଶକ :
ଆର୍ଟ ସେଣ୍ଟର,
ଏମ୍.ବି.-୮୩, ବ୍ରିଟ୍, ବଡ଼ଗଡ଼
ଭୁବନେଶ୍ୱର -୭୫୧୦୧୮

ଲିପି ସଂଯୋଜନା :
ଚେଷ୍ଟା, ଭୁବନେଶ୍ୱର - ୭୫୧୦୦୨

ମୁଦ୍ରାକର : ସୁମନ ପ୍ରେସ୍, ଭୁବନେଶ୍ୱର -୧୪

ମୂଲ୍ୟ - ଟ ୧୫୦.୦୦ ମାତ୍ର

Kalingara Mandira Sthapatya

Written by : **Sri Durga Charan Panda**

First Published - April - 2000

Published by :
**Art Centre**
M.B.- 83, Brit Badagada
BHUBANESWAR - 751018

D.T.P. at :*Chetshha*,
Ravi Talkies Sq., Bhubaneswar-2

Printed at :
**Suman Press**, Bhubaneswar-14

**Price Rs. -150.00 Only**

# କଳିଙ୍ଗର
# ମନ୍ଦିର ସ୍ଥାପତ୍ୟ

ଦୁର୍ଗାଚରଣ ପଣ୍ଡା



ଆର୍ଟ ସେଣ୍ଟର
ଏମ୍.ବି-୮୩,ବ୍ରୀଟ୍, ବଡ଼ଗଡ଼, ଭୁବନେଶ୍ୱର-୭୫୧୦୧୮

# ନିଜ କଥା

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଓ ପ୍ରତ୍ନତତ୍ତ୍ୱ ବିଭାଗରେ ଦୀର୍ଘ ଦିନର କର୍ମମୟ ଜୀବନରେ ଦେଶ ବିଦେଶର ଅନେକ ଗବେଷକ, ଗବେଷିକା, ସ୍ଥପତି ଓ ଶିଳ୍ପୀଙ୍କ ସଂସ୍ପର୍ଶରେ ଆସିଛି । ସେମାନଙ୍କ ସହିତ ଆଳାପ ଆଲୋଚନା ଦ୍ୱାରା କଳା ଓ ସଂସ୍କୃତି ସଂପର୍କରେ ଅନେକ କଥା ଜାଣିବାର ସୁଯୋଗ ପାଇଛି । ଅଧିକ ଜାଣିବା ନିମନ୍ତେ ଅଧ୍ୟୟନ ଓ ସନ୍ଦେହ ମୋଚନ ନିମନ୍ତେ ବାସ୍ତବ କ୍ଷେତ୍ରରେ ମନ୍ଦିର କଳା ଓ ସ୍ଥାପତ୍ୟର ନିରୀକ୍ଷଣ ଓ ଅନୁଶୀଳନ ଏକ ନିଶା ହୋଇପଡ଼ିଛି କହିଲେ ଭୁଲ ହେବନାହିଁ ।

ମୋର ଜ୍ୟେଷ୍ଠା କନ୍ୟା ସୁଜାତା, ଧର୍ମ ବିଷୟ ନେଇ ଓଡ଼ିଆରେ ସ୍ନାତକ ପଢୁଥିବା ବେଳେ, ଓଡ଼ିଶାର ଦେବ ଦେବୀ ଓ ମନ୍ଦିର ବିଷୟରେ ଅନେକ କଥା ଜାଣିବାକୁ ଚାହେଁ । ମୋର କନିଷ୍ଠା କନ୍ୟା ସବିତା କାରୁକଳା ଓ ଚାରୁକଳାରେ ପ୍ରଶିକ୍ଷଣ ନେବା ବେଳେ, କଳା ଓ ସ୍ଥାପତ୍ୟ ସଂପର୍କରେ ଅନେକ ପ୍ରଶ୍ନ କରେ । ଏଥିରୁ ଅନୁଭବ କରିଥିଲି ଯେ ଏହି ସବୁ ବିଷୟ ଉପରେ ଇଂରେଜୀରେ ଅନେକ ପୁସ୍ତକ ଥିବା ସତ୍ତ୍ୱେ ଓଡ଼ିଆରେ କେତେ ଖଣ୍ଡ ପୁସ୍ତକର ଆବଶ୍ୟକତା ରହିଛି । ମୋର ଏହି ମନୋଭାବ ଓଡ଼ିଶା ଲଳିତକଳା ଏକାଡେମୀର ପୂର୍ବତନ ସଂପାଦକ, ବଂଧୁ ଶ୍ରୀଯୁକ୍ତ ଜଗଦୀଶଚନ୍ଦ୍ର କାନୁନ୍‌ଗୋ, ରାଜ୍ୟ ସଂଗ୍ରହାଳୟର ପୂର୍ବତନ ଅଧ୍ୟକ୍ଷ, ଡ଼ଃ ହରିଶ୍ଚନ୍ଦ୍ର ଦାସ ତଥା ସଂସ୍କୃତି ବିଭାଗର ପୂର୍ବତନ ସଂପାଦକ ଡ଼ଃ ଭଗବାନ ପଣ୍ଡାଙ୍କୁ ଜଣାଇବା ପରେ ସେମାନେ ଏହି କାର୍ଯ୍ୟ ନିମନ୍ତେ ମୋତେ ଉତ୍ସାହିତ କରିଥିଲେ । ବହିର ପାଣ୍ଡୁଲିପି ସଂଶୋଧନରେ ବନ୍ଧୁ ଶ୍ରୀଯୁକ୍ତ ହରେକୃଷ୍ଣ ରାଉତଙ୍କ ସାହାଯ୍ୟ ଓ ପୁସ୍ତକଟିକୁ ତଥ୍ୟପୂର୍ଣ୍ଣ କରିବା ନିମନ୍ତେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଅଧ୍ୟକ୍ଷ ଡ଼ଃ ବିଜୟକୁମାର ରଥଙ୍କ ଉପାଦେୟ ପରାମର୍ଶ ନିମନ୍ତେ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

ସୁଧୀ ପାଠକପାଠିକାଙ୍କ ନିକଟରେ ବିନମ୍ର ନିବେଦନ ଏହି ଯେ, ପୁସ୍ତକର ଭାଷାଗତ ଓ ଲିପିସଂଯୋଜନାଜନିତ ତ୍ରୁଟି ମାର୍ଜନା କରିବେ । କାରଣ ମୁଁ ଜଣେ ଶିଳ୍ପୀ । ଦୀର୍ଘ ଦିନ କେବଳ କଳା ଓ ପ୍ରତ୍ନତତ୍ତ୍ୱ ଚର୍ଚ୍ଚାରେ କଟିଛି । ଏଣୁ ଭାଷା ଉପରେ ମୋର ଦକ୍ଷତା ଯଥେଷ୍ଟ କମ୍ । ବୈଷୟିକ ବିଷୟ ସମ୍ବଳିତ ଏହି ପୁସ୍ତକଟିରେ କେବଳ ଭାବ ପ୍ରକାଶ କରିବାକୁ ଚେଷ୍ଟା କରିଛି ।

ମହାବିଷୁବ ସଂକ୍ରାନ୍ତି

ତାରିଖ ୧୩.୦୪.୨୦୦୦ *ଦୁର୍ଗାଚରଣ ପଣ୍ଡା*



# ଉତ୍ସର୍ଗ

ମୋର ପ୍ରତ୍ୟେକ ସୁକୃତିରେ
ସହଯୋଗ କରିବା ନିମନ୍ତେ ଯିଏ ସଦା ତତ୍ପର ଥିଲା,
ମୋର ସେହି ପ୍ରିୟ କନ୍ୟା
ସ୍ୱର୍ଗୀୟା ସୁଜାତା (ରୋଜି)ର ସ୍ମୃତିରେ ।

**ଲେଖକ -**

# ମୁଖବନ୍ଧ

ପ୍ରାଚୀନ ମନ୍ଦିର କଳା ଓ ସ୍ଥାପତ୍ୟ ପାଇଁ ଓଡ଼ିଶା ସମଗ୍ର ବିଶ୍ୱରେ ସୁପରିଚିତ ଓ ଗୌରବାନ୍ୱିତ । ଦେଶ ବିଦେଶର ଅନେକ ବିଦ୍ୱାନ ଏହି କଳା କୁଶଳତାରେ ପ୍ରଭାବିତ ହୋଇ ନିଜ ନିଜର ଚିନ୍ତାଧାରା ଲିପିବଦ୍ଧ କରିଛନ୍ତି । ଆମର ସ୍ୱାଧୀନତା ପୂର୍ବରୁ ରଚିତ ଅନେକ ପୁସ୍ତକରେ ବହୁ ଉପାଦେୟ ତଥ୍ୟ ରହିଥିଲେ ମଧ୍ୟ ଏହାର ଅବତାରଣା ଦୀର୍ଘ ହୋଇଥିବା ଯୋଗୁ ସୁଖପାଠ୍ୟ ହୁଏନାହିଁ । ଅନେକ କ୍ଷେତ୍ରରେ ଅଣଓଡ଼ିଆ ଲେଖକମାନେ ତଥ୍ୟ ସଂଗ୍ରହ ବେଳେ କେତେକ ଅବୋଧ ତଥା ତ୍ରୁଟିପୂର୍ଣ୍ଣ ତଥ୍ୟ ନିଜ ପୁସ୍ତକରେ ସନ୍ନିବେଶିତ କରିଥିବା ମଧ୍ୟ ଦେଖାଯାଏ । ପରବର୍ତ୍ତୀ କାଳରେ ଅନେକ ଗବେଷକ/ଗବେଷିକା ଏହି ତ୍ରୁଟିଗୁଡିକୁ ଯଥାସାଧ୍ୟ ସଂଶୋଧନ କରି ମନ୍ଦିର କଳା ଓ ସ୍ଥାପତ୍ୟର ବୈଷୟିକ ଦିଗକୁ ବିଭିନ୍ନ ଭାବରେ ଉପସ୍ଥାପନ କରିବାକୁ ଚେଷ୍ଟା କରିଛନ୍ତି । ତେବେ ଛାତ୍ରଛାତ୍ରୀ ଓ ସଂସ୍କୃତିପ୍ରେମୀ ବ୍ୟକ୍ତିବିଶେଷ ଏହି ଦୀର୍ଘ ପୁସ୍ତକଗୁଡିକୁ ଅଧ୍ୟୟନ କରି ସେଥିରୁ ସାର ସଂଗ୍ରହ କରିବା ଏକ କଷ୍ଟସାଧ୍ୟ ବ୍ୟାପାର । ପୁନଶ୍ଚ ଏହି ମୂଲ୍ୟବାନ ଓ ଦୁର୍ଲ୍ଲଭ ପୁସ୍ତକଗୁଡିକ ସାଧାରଣତଃ କଟକଣା ଥିବା କେତେକ ସରକାରୀ ପାଠାଗାରରେ ଉପଲବ୍ଧ ହେଉଥିବାରୁ ଆଗ୍ରହୀ ପାଠକମାନଙ୍କ ପାଇଁ ସହଜଲବ୍ଧ ନୁହେଁ । ଉଲ୍ଲେଖଯୋଗ୍ୟ ଯେ ଏହି ସମସ୍ତ ପୁସ୍ତକ ଇଂରାଜୀ ଭାଷାରେ ହିଁ ରଚିତ । ତେଣୁ ଓଡ଼ିଶାର ମନ୍ଦିର କଳା ଓ ଭାସ୍କର୍ଯ୍ୟ ସମ୍ପର୍କରେ ସମ୍ୟକ ଜ୍ଞାନ ଆହରଣ ନିମନ୍ତେ ଓଡ଼ିଆ ପାଠକପାଠିକାଙ୍କ ପାଇଁ ଓଡ଼ିଆ ଭାଷାରେ ଖଣ୍ଡିଏ ପୁସ୍ତକର ଆବଶ୍ୟକତା ଅନୁଭୂତ ହେଉଥିଲା । ଶ୍ରୀଯୁକ୍ତ ଦୁର୍ଗାଚରଣ ପଣ୍ଡାଙ୍କ ଦ୍ୱାରା ରଚିତ ଏହି ପୁସ୍ତକଟି ସେହି ଅଭାବ ପୂରଣ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ମୋର ସହକର୍ମୀ ରୂପେ ଦୀର୍ଘକାଳ କାର୍ଯ୍ୟ କରିଥିବା ଶ୍ରୀଯୁକ୍ତ ପଣ୍ଡା ମୁଖ୍ୟତଃ ଜଣେ ସୃଜନଶୀଳ ଶିଳ୍ପୀ । କଳା ଓ ସଂସ୍କୃତି ପ୍ରତି ତାଙ୍କର ଆନ୍ତରିକ ଆଗ୍ରହ ମୁଁ ଅନେକ ସମୟରେ ଲକ୍ଷ୍ୟ କରିଛି । ଓଡ଼ିଶାର ମନ୍ଦିର କଳା ଓ ସ୍ଥାପତ୍ୟ ସହିତ ତାଙ୍କର ଚାରି ଦଶନ୍ଧିର ନିବିଡ଼ ସଂପର୍କ ରହିଛି । ଏହା ବ୍ୟତୀତ ନୂଆଦୀଲ୍ଲିସ୍ଥିତ 'ସ୍କୁଲ ଅଫ୍ ଆର୍କୋଲଜି'ରେ ପ୍ରତ୍ନତାତ୍ତ୍ୱିକ କାର୍ଯ୍ୟଧାରା ବିଷୟରେ ପ୍ରଶିକ୍ଷଣ ନେବାବେଳେ ସେ ଭାରତର ବିଭିନ୍ନ ପ୍ରାନ୍ତରେ ଥିବା ମନ୍ଦିର ଓ ଅନ୍ୟାନ୍ୟ କୀର୍ତ୍ତି ବୁଲି ଦେଖିବାର ସୁଯୋଗ ପାଇଛନ୍ତି । ଏହା ଦ୍ୱାରା କଳିଙ୍ଗ ମନ୍ଦିର ଶୈଳୀ ସହିତ ଭାରତର ଅନ୍ୟ କେତେକ ଅଞ୍ଚଳରେ ଥିବା ମନ୍ଦିର ଶୈଳୀର ଏକ ତୁଳନାତ୍ମକ, ଉପାଦେୟ ତଥା ସଂକ୍ଷିପ୍ତ ଅଧ୍ୟାୟ ଏହି ପୁସ୍ତକରେ ସେ ସନ୍ନିବେଶିତ କରିପାରିଛନ୍ତି । ଏହା ବ୍ୟତୀତ ଭାରତୀୟ କଳା ଓ ସଂସ୍କୃତି ଉପରେ ତାଙ୍କର କେତେକ ଉପାଦେୟ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ସେଗୁଡ଼ିକ ମଧ ପୁସ୍ତକ ଆକାରରେ ସଙ୍କଳନ କରାଯିବା ବାଞ୍ଛନୀୟ ।

ପ୍ରସ୍ତୁତ ପୁସ୍ତକର ୬୧ଟି ଅଧ୍ୟାୟରେ କଳିଙ୍ଗ ମନ୍ଦିର କଳା ଓ ସ୍ଥାପତ୍ୟର ସମସ୍ତ ଗୁରୁତ୍ୱପୂର୍ଣ୍ଣ ଦିଗକୁ ସଂକ୍ଷେପରେ ସ୍ପର୍ଶ କରିବାର ସଫଳ ପ୍ରୟାସ କରାଯାଇଛି । ପ୍ରଥମ ୬ ଗୋଟି ଅଧ୍ୟାୟରେ ବାସ୍ତୁ ବା

ଶିଳ୍ପଶାସ୍ତ୍ରର ଇତିହାସ ଓ ପରମ୍ପରା ବିଷୟରେ ସୂଚନାତ୍ମକ ଆଲୋଚନା ସମେତ କଳିଙ୍ଗ ଇତିହାସରେ ଅଶୋକ ଓ ଖାରବେଳଙ୍କ ପରବର୍ତ୍ତୀ ସମୟରେ ସୃଷ୍ଟି ହୋଇଥିବା କଳା ଓ ସଂସ୍କୃତିର ଅନ୍ଧକାର ଯୁଗ ଉପରେ ନୂତନ ଆଲୋକପାତ କରିଛନ୍ତି । ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ଏହାର ପରବର୍ତ୍ତୀ ୪୫ଟି ଅଧ୍ୟାୟରେ ବର୍ଣ୍ଣିତ ମନ୍ଦିର ନିର୍ମାଣର ଶାସ୍ତ୍ରୀୟତା, ନିର୍ମାଣଧାରା, ଅଙ୍ଗ ପ୍ରତ୍ୟଙ୍ଗର ପରିଚୟ ଓ ତା'ର ବିକାଶଧାରାର ଅନୁଶୀଳନ ଓ ସଚିତ୍ର ଉଦାହରଣଗୁଡିକ ଛାତ୍ରଛାତ୍ରୀଙ୍କ ନିମନ୍ତେ ସୁବୋଧ ଓ ଉପାଦେୟ । ଏହା ବ୍ୟତୀତ ବହିର ଅନ୍ତିମ ପର୍ଯ୍ୟାୟରେ ସନ୍ନିବେଶିତ ଥିବା ବିକଶିତ ମନ୍ଦିରଗୁଡିକର ବୈଷୟିକ ତଥ୍ୟ ଓ ବୈଷୟିକ ଶବ୍ଦର ଅର୍ଥଗୁଡିକ ସବୁ ଶ୍ରେଣୀର ପାଠକପାଠିକାଙ୍କ ପକ୍ଷରେ ଅବଶ୍ୟ ଜ୍ଞାତବ୍ୟ ବିଷୟ । ସମୟ ସ୍ରୋତରେ ଆମ ପ୍ରାଚୀନ ମନ୍ଦିରଗୁଡିକର ଅବକ୍ଷୟ ଘଟୁଥିବା ବେଳେ ଏହାର ସଂରକ୍ଷଣ ସମ୍ପର୍କରେ ସର୍ବସାଧାରଣ ସଚେତନ ହେବା ଅପରିହାର୍ଯ୍ୟ । ଏହି ବିଷୟ ଉପରେ ଲେଖକ ଏକ ସୁଚିନ୍ତିତ ଅଧ୍ୟାୟ ବହିରେ ସଂଯୋଗ କରିଥିବାରୁ ଧନ୍ୟବାଦର ପାତ୍ର ଅଟନ୍ତି । ପୁସ୍ତକଟିରେ ମୁଖ୍ୟତଃ ମନ୍ଦିରର ସ୍ଥାପତ୍ୟ ବିଷୟକୁ ଅଧିକ ଗୁରୁତ୍ୱ ଦିଆଯାଇଥିବା ସତ୍ତ୍ୱେ ମଣ୍ଡନକୃତି ଓ ମୂର୍ତ୍ତିକଳା ଯେହେତୁ ତା'ର ଏକ ଅବିଚ୍ଛେଦ୍ୟ ଅଙ୍ଗ ସେ ବିଷୟରେ ମଧ୍ୟ ସଂକ୍ଷେପ ଧାରଣା ଦିଆଯାଇଛି । ଏଣୁ ବହିଟି ପୂର୍ଣ୍ଣାଙ୍ଗ ମନେ ହୁଏ ।

ନିକଟ ଅତୀତରେ ଭାରତ ସରକାରଙ୍କ ଦଶମ ଅର୍ଥ କମିଶନଙ୍କ ଅନୁଦାନରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଥିବା ବହୁ ମନ୍ଦିରର ସଂରକ୍ଷଣ କାର୍ଯ୍ୟ କରାଗଲା । ଏହି ଅବସରରେ ବିଭିନ୍ନ ପ୍ରାନ୍ତର ମନ୍ଦିର ଶିଳ୍ପୀ ଓ ପଥର କାରିଗରଙ୍କ ସଂସ୍ପର୍ଶରେ ଆସିବାର ଏକ ସୁଯୋଗ ସୃଷ୍ଟି ହୋଇଥିଲା । ଦେଖାଗଲା ଯେ ଅଧିକାଂଶ ଶିଳ୍ପୀଙ୍କର ପ୍ରାଚୀନ ଓଡ଼ିଶାର ମନ୍ଦିର ଶୈଳୀ, ଏପରିକି ସେଗୁଡିକର ଅଙ୍ଗ ପ୍ରତ୍ୟଙ୍ଗର ନାମ ସମ୍ପର୍କରେ ମଧ ସନ୍ତୋଷଜନକ ଜ୍ଞାନର ଅଭାବ ରହିଛି । ଏହାର କାରଣ, ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀ ପରେ ଦୀର୍ଘ ପାଞ୍ଚଶହ ବର୍ଷ ଧରି ମନ୍ଦିର କଳା ଓ ସ୍ଥାପତ୍ୟର ଚର୍ଚ୍ଚା ବିସ୍ମୃତ ପ୍ରାୟ ହୋଇପଡିଥିଲା । ବର୍ତ୍ତମାନ ସେ ବିଷୟରେ ଯତ୍‌କିଞ୍ଚିତ ସଚେତନତା ସୃଷ୍ଟି ହୋଇଛି । ଯାହାହେଉ ବହିଟିର ବୋଧଗମ୍ୟ ଭାଷା, ସୁଚିନ୍ତିତ ସଚିତ୍ର ଉପସ୍ଥାପନା ଶିଳ୍ପୀକୁଳ ନିମନ୍ତେ ମଧ ଉପଯୋଗୀ ହେବ । ପ୍ରାଚୀନ ଇତିହାସ, ପତ୍ନତତ୍ତ୍ୱ, ସାହିତ୍ୟ ତଥା ବିଭିନ୍ନ ସାଂସ୍କୃତିକ ସ୍ନାତକ ପାଠ୍ୟକ୍ରମରେ ବହିଟି ସାମିଲ କରାଯିବା ନିତାନ୍ତ ଆବଶ୍ୟକ ମନେହୁଏ । ସର୍ବଶେଷରେ ପୁସ୍ତକଟି ଗବେଷକଗବେଷିକା ତଥା କଳା ଓ ସଂସ୍କୃତି ପ୍ରେମୀ, ଅନୁସନ୍ଧିତ୍ସୁ ବ୍ୟକ୍ତିବିଶେଷଙ୍କଠାରେ ଆଦୃତ ହେବ ବୋଲି ଆଶା କରେ ।

ବିଜୟ କୁମାର ରଥ

*ଡ: ବିଜୟ କୁମାର ରଥ*
ଅଧକ୍ଷ,
ଓଡ଼ିଶା, ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ
ଭୁବନେଶ୍ୱର

# ବିଷୟ ସୂଚୀ

# ପ୍ରାଚୀନ ଭାରତୀୟ ବାସ୍ତୁଶାସ୍ତ୍ର ଓ ଓଡ଼ିଶାର ଶିଳ୍ପପୋଥି

ବାସଗୃହ, ପ୍ରାସାଦ, ରାଜା, ମହାରାଜା ଓ ସୈନ୍ୟମାନଙ୍କ ନିମନ୍ତେ ଦୁର୍ଗ, ସ୍ମାରକୀସୌଧ ତଥା ମନ୍ଦିର ମାନଙ୍କୁ ବାସ୍ତୁ କୁହାଯାଉଥିବା ବେଳେ, ବିଭିନ୍ନ ପ୍ରକାର ମୂର୍ତ୍ତି, ମଣ୍ଡନକଳାଗୁଡ଼ିକ ଶିଳ୍ପ ଶ୍ରେଣୀଭୁକ୍ତ ହୋଇଥାଏ । ଏହି କଳା ଓ ସ୍ଥାପତ୍ୟର ନିର୍ମାଣ କୌଶଳ, ଭାଗମାପ ଇତ୍ୟାଦି ବୈଷୟିକ ତଥ୍ୟ ସଂବଳିତ ପ୍ରାଚୀନ ଓ ମଧ୍ୟ ଯୁଗୀୟ ରଚନା ଗୁଡ଼ିକ ବାସ୍ତୁଶାସ୍ତ୍ର ଓ ଶିଳ୍ପଶାସ୍ତ୍ର ନାମରେ ପରିଚିତ । ଅନ୍ୟ ଭାବରେ ଏଗୁଡ଼ିକୁ ବାସ୍ତୁବିଜ୍ଞାନ ମଧ୍ୟ କୁହାଯାଏ । ବୈଦିକ ଆର୍ଯ୍ୟମାନେ ସରଳ ନିରାଡ଼ମ୍ବର କୁଟୀରମାନଙ୍କରେ ରହି ଆଧ୍ୟାତ୍ମିକ ଜୀବନଯାପନ କରିବାକୁ ଅଧିକ ପସନ୍ଦ କରୁଥିଲେ ହେଁ ବେଦମାନଙ୍କରେ କଳା ଓ ସ୍ଥାପତ୍ୟ ସମ୍ପର୍କୀୟ କେତେକ ଶବ୍ଦ ଦେଖିବାକୁ ମିଳେ । ତେବେ ଏଥିରେ ନିର୍ମାଣ କଳାର କୌଣସି ବୈଷୟିକ ସୂଚନା ନାହିଁ । ଆଜକୁ ପାଞ୍ଚ ହଜାର ବର୍ଷ ପୂର୍ବେ ସିନ୍ଧୁ ସଭ୍ୟତାର ସୁପରିକଳ୍ପିତ ବିଭିନ୍ନ ନିର୍ମାଣ କୌଶଳ ଦେଖିଲେ କେହି ବିଶ୍ୱାସ କରିବେ ନାହିଁ ଯେ, ଏଗୁଡ଼ିକ ବିନା ପଦ୍ଧତି ବା ଶାସ୍ତ୍ରରେ ସୃଷ୍ଟି ହୋଇଛି । ତେବେ ସେ ସମୟର ସ୍ଥାପତ୍ୟ ଓ ଶିଳ୍ପକଳାର ଜ୍ଞାନ, ଶିଳ୍ପୀ ଓ ସ୍ଥପତିମାନଙ୍କ ସ୍ମୃତିରେ ଓ କାର୍ଯ୍ୟକ୍ଷେତ୍ରର ଅଭିଜ୍ଞତାରେ ରହୁଥିଲା । ଏହାର ପରବର୍ତ୍ତୀ ସମୟରେ ରଚିତ ବେଦାଙ୍ଗ ଜ୍ୟୋତିଷ, ବୈଦିକ ମଣ୍ଡଳ ଯୁକ୍ତ କେତେକ ଗ୍ରନ୍ଥ, ତନ୍ତ୍ରଶାସ୍ତ୍ର ଓ ଶୁଲ୍ୟସୂତ୍ର ଇତ୍ୟାଦିରେ ଶିଳ୍ପଶାସ୍ତ୍ରର ଆଦ୍ୟ ସୂଚନା ମିଳେ । ଖ୍ରୀ: ପୂର୍ବ ୩ୟ ଶତକରେ ରଚିତ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରର ସାତୋଟି ଅଧ୍ୟାୟରେ ରାଜପ୍ରାସାଦ, ଦୁର୍ଗ ଓ ନଗର ନିର୍ମାଣର କେତେକ ବିଧି ଉଲ୍ଲେଖ ହୋଇଛି । ଏହି ଶତାବ୍ଦୀରେ ଅଶୋକଙ୍କ ଦ୍ୱାରା ବୌଦ୍ଧ ଧର୍ମର ଉଲ୍ଲେଖଯୋଗ୍ୟ ପ୍ରଚାର ଓ ପ୍ରସାର ଘଟିଥିଲା । ଏହି କାର୍ଯ୍ୟଧାରା ମଧ୍ୟରେ ସୃଷ୍ଟି ହେଉଥିବା ସ୍ଥାପତ୍ୟ ଓ କଳାର ନୀତି ନିର୍ଦ୍ଧାରଣ କରିବା ନିମନ୍ତେ ରଚିତ ହୋଇଥିଲା କେତେକ ବୌଦ୍ଧ ଶିଳ୍ପଶାସ୍ତ୍ର । ଏହାର ପରବର୍ତ୍ତୀ ସମୟରେ ମଧ୍ୟ ମୂର୍ତ୍ତିତତ୍ତ୍ୱ ଉପରେ କେତେକ ଶାସ୍ତ୍ର ପ୍ରଣିତ ହୋଇଛି । ଏହି ଗ୍ରନ୍ଥମାନଙ୍କ ମଧ୍ୟରେ ଚିତ୍ର ଲକ୍ଷଣମ୍ , ପ୍ରତିମା ଲକ୍ଷଣମ୍, ଲଳିତବିସ୍ତର, ମଞ୍ଜୁଶ୍ରୀ ମୂଳକଳ୍ପର ନାମ ଉଲ୍ଲେଖଯୋଗ୍ୟ । ମାନସାର ଏକ ପ୍ରାଚୀନ ବାସ୍ତୁ ତଥା ଶିଳ୍ପଶାସ୍ତ୍ର । ତେବେ ଏହାର ରଚନା ସମୟ ସଠିକ ଭାବେ ନିର୍ଣ୍ଣୟ ହୋଇପାରିନାହିଁ । ଆନୁମାନିକ ଖ୍ରୀ: ୧ମ ଶତାବ୍ଦୀର କୃତି ଭରତଙ୍କ ନାଟ୍ୟଶାସ୍ତ୍ରରେ ଲିଖିତ ପ୍ରେକ୍ଷାଗୃହମାନଙ୍କ ନିର୍ମାଣ ତଥ୍ୟ ମଧ୍ୟ ବାସ୍ତୁଶାସ୍ତ୍ରର ଏକ ଅଙ୍ଗ ଅଟେ । ଖ୍ରୀ: ୪ର୍ଥ-୫ମଶତାବ୍ଦୀରେ ରଚିତ ଅଷ୍ଟାଦଶ ପୁରାଣରୁ ଅନେକରେ ବାସ୍ତୁଶାସ୍ତ୍ର ଓ ଶିଳ୍ପଶାସ୍ତ୍ର ଉପରେ ଉଲ୍ଲେଖଯୋଗ୍ୟ ତଥ୍ୟମାନ ଦେଖିବାକୁ ମିଳେ । ଏଥି ମଧ୍ୟରୁ ନଅଟି ପୁରାଣର ତଥ୍ୟ ପରବର୍ତ୍ତୀ ସମୟର ବହୁ ଶିଳ୍ପଶାସ୍ତ୍ରରେ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଏ । ବରାହ ମିହିରଙ୍କ ଦ୍ୱାରା ରଚିତ ବୃହଦ୍ ସଂହିତା ଆନୁମାନିକ ଖ୍ରୀ:୬ଷ୍ଠ ଶତାବ୍ଦୀର କୃତି ବୋଲି ଜଣାଯାଏ । ଏହା ମୁଖ୍ୟତଃ ଏକ ଜ୍ୟୋତିଷ ଶାସ୍ତ୍ର ହେଲେହେଁ, ଏହାର ପାଞ୍ଚଗୋଟି ଅଧ୍ୟାୟରେ କଳା ଓ ସ୍ଥାପତ୍ୟ ବିଷୟ ଦେଖିବାକୁ ମିଳେ । ଏହି ସବୁ ଗ୍ରନ୍ଥ ଉତ୍ତର ଭାରତରେ ରଚିତ ହୋଇଥିବା ବେଳେ ଖ୍ରୀ: ୫ମ ଶତାବ୍ଦୀ ବେଳକୁ ଦକ୍ଷିଣଭାରତରେ ଶୈବତତ୍ତ୍ୱ ଉପରେ ଆଧାରିତ ଆଗମମାନଙ୍କର

ସୃଷ୍ଟି ହୋଇଥିଲା । ଏହି ଗ୍ରନ୍ଥ ଗୁଡ଼ିକର କେତେକ ଅଧ୍ୟାୟରେ ଥିବା ବାସ୍ତୁ ଓ ଶିଳ୍ପଶାସ୍ତ୍ର ସମ୍ପର୍କୀୟ ବିଷୟ ଗୁଡ଼ିକ ପୌରାଣିକ ତଥ୍ୟ ଠାରୁ ବହୁଭାବରେ ଭିନ୍ନ । 'ସମରାଙ୍ଗଣସୂତ୍ରଧର' ମଧ ଦକ୍ଷିଣଭାରତର ଏକ ବହୁଚର୍ଚ୍ଚିତ ଶିଳ୍ପ ଶାସ୍ତ୍ର ।

ଉପରୋକ୍ତ ବେଦାନ୍ତ ଓ ପୌରାଣିକ ତଥ୍ୟକୁ ଭିତ୍ତି କରି ବିଭିନ୍ନ ସମୟରେ, ବିଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ଭାବରେ ବହୁ ବାସ୍ତୁ ଓ ଶିଳ୍ପଶାସ୍ତ୍ର ରଚନା କରିଛନ୍ତି । ଏଗୁଡ଼ିକ ମଧରେ ଶୁକ୍ରାଚାର୍ଯ୍ୟଙ୍କ ଶୁକ୍ରନୀତି, ହେମାଦ୍ରିଙ୍କ ମୟସମାଗ୍ରହ, ମଣ୍ଡନଙ୍କ 'ଶିଳ୍ପଶାସ୍ତ୍ର' ବହୁ ବିଦିତ । ଓଡ଼ିଶା ସମେତ ଭାରତର ଅନ୍ୟ ପୂର୍ବାଞ୍ଚଳରେ ମଣ୍ଡନଙ୍କ ଶିଳ୍ପଶାସ୍ତ୍ରକୁ ଆଧାର କରି ବହୁ ମନ୍ଦିର ଓ ମୂର୍ତ୍ତି ନିର୍ମିତ ହୋଇଥିବା ଜଣାଯାଏ । ମଣ୍ଡନ ତାଙ୍କ ଗ୍ରନ୍ଥରେ ବେଦାନ୍ତର କେତେକ ବିଷୟ ସହିତ ଗରୁଡ଼ ପୁରାଣ, ମତ୍ସ୍ୟ ପୁରାଣ, ସ୍କନ୍ଦ ପୁରାଣ, ପଦ୍ମ ପୁରାଣ ଇତ୍ୟାଦିରୁ ବହୁ ଉପାଦେୟ ତଥ୍ୟକୁ ଆଧାର କରି ତାଙ୍କ ଗ୍ରନ୍ଥକୁ ପରିପୁଷ୍ଟ କରିଛନ୍ତି । ଏହାର ପରବର୍ତ୍ତୀ ସମୟରେ ଓଡିଶାର ସ୍ଥପତି ଓ ଶିଳ୍ପୀମାନଙ୍କ ଦ୍ୱାରା ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ଭାଷାରେ କେତେକ ପ୍ରାନ୍ତୀୟ ଶିଳ୍ପଶାସ୍ତ୍ର ରଚିତ ହୋଇ ଥିବା ଦେଖାଯାଏ । ଏଗୁଡ଼ିକ ଓଡ଼ିଶାରେ 'ଶିଳ୍ପ ପୋଥି' ନାମରେ ପରିଚିତ । ଏହି ସବୁ ରଚନାରେ ସ୍ଥପତି ଓ ଶିଳ୍ପୀମାନଙ୍କ ସୃଜନଶୀଳ ପରିକଳ୍ପନା, କାର୍ଯ୍ୟକ୍ଷେତ୍ରର ଅଭିଜ୍ଞତା ତଥା ବିଦ୍ୱାନମାନଙ୍କ ଶାସ୍ତ୍ରୀୟତା ନିହିତ । ଏହା ବ୍ୟତୀତ ଉତ୍କଳୀୟ ଶିଳ୍ପଶାସ୍ତ୍ର ଗୁଡ଼ିକରେ ବିଭିନ୍ନ ପୌରାଣିକ ତଥ୍ୟ ମଧ ସନ୍ନିବେଶିତ ହୋଇଥିବା ଦେଖାଯାଏ । କଳିଙ୍ଗରେ ପ୍ରଚଳିତ ମନ୍ଦିର ସ୍ଥାପତ୍ୟ ଓ ଶିଳ୍ପକଳା ବିଷୟ ଉଲ୍ଲେଖ ଥିବା କେତେକ ପୁରାଣ ଓ ଶିଳ୍ପଶାସ୍ତ୍ରର ସୂଚନା ନିମ୍ନରେ ଦିଆଗଲା ।

୧. ବିଷ୍ଣୁଧର୍ମୋତ୍ତର ପୁରାଣ - ଏହାର ତୃତୀୟ ଖଣ୍ଡରେ
   ବିଭିନ୍ନ ଦେବ ଦେବୀଙ୍କ ମୂର୍ତ୍ତିତତ୍ତ୍ୱ ବର୍ଣ୍ଣିତ ହୋଇଛି ।
୨. ଗରୁଡ଼ ପୁରାଣ- ଏହାର ୪୬ଶ ଅଧ୍ୟାୟରେ ବାସ୍ତୁ ନିର୍ଣ୍ଣୟ
   ଏବଂ ୪୭ଶ ଅଧ୍ୟାୟରେ ପ୍ରାସାଦ ଲକ୍ଷଣର ତଥ୍ୟମାନ ଉଲ୍ଲେଖ ଅଛି ।
୩. ଅଗ୍ନି ପୁରାଣ- ଏହାର ୪୯ଶ ଅଧ୍ୟାୟରେ ପ୍ରତିମା ଗଠନ ପ୍ରଣାଳୀ,
   ୧୦୪ର୍ଥ ଅଧ୍ୟାୟରେ ପ୍ରାସାଦ ନିର୍ମାଣ, ୧୦୫ମ ଅଧ୍ୟାୟରେ ଗୃହ ନିର୍ମାଣ
   ଓ ୧୦୬ଷ୍ଠ ଅଧ୍ୟାୟରେ ନଗର ନିର୍ମାଣ ବିଷୟଗୁଡ଼ିକର ତଥ୍ୟ ରହିଛି ।
୪. ଭବିଷ୍ୟ ପୁରାଣ - ଏଥିରେ ମୁଖ୍ୟତଃ ଗୃହ ନିର୍ମାଣର ବିଧି ବର୍ଣ୍ଣିତ ହୋଇଛି ।
୫. ବୃହତ୍‌ସଂହିତା - ଏହାର ୫୮ଶ ଅଧ୍ୟାୟରେ ପ୍ରତିମା ଲକ୍ଷଣ
   ଓ ବିଭିନ୍ନ ଦେବ ଦେବୀଙ୍କ ମୂର୍ତ୍ତିତତ୍ତ୍ୱ ଉଲ୍ଲେଖ ଅଛି ।
୬. ମତ୍ସ୍ୟ ପୁରାଣ-ଏହାର ୨୫୬ ଓ ୨୫୭ ଅଧ୍ୟାୟରେ ବାସ୍ତୁଶିଳ୍ପ ବା ଗୃହ,
   ମନ୍ଦିର ଇତ୍ୟାଦି ନିର୍ମାଣ ବିଷୟ,୨୫୯ ଅଧ୍ୟାୟରେ ପ୍ରତିମା ଗଠନ
   ଓ କେତେକ ଦେବ ଦେବୀଙ୍କ ମୂର୍ତ୍ତିତତ୍ତ୍ୱ ଉଲ୍ଲେଖ ଅଛି ।
୭. ଶୁକ୍ରନୀତି- ଏହି ଶିଳ୍ପଶାସ୍ତ୍ରରେ ମୁଖ୍ୟତଃ ପ୍ରତିମା ଗଠନ ତତ୍ତ୍ୱ
   ୪ର୍ଥ ଅଧ୍ୟାୟରେ ଦେଖିବାକୁ ମିଳେ ।

ଓଡ଼ିଶାରୁ ପ୍ରାପ୍ତ ତାଳପତ୍ର ଉପରେ ଲିଖିତ ଶିଳ୍ପଶାସ୍ତ୍ର ଗୁଡ଼ିକ ମଧ୍ୟରୁ କେତେକ ପ୍ରକାଶିତ ଓ ଅନ୍ୟ କେତେକ ଅପ୍ରକାଶିତ । ବହୁଦିନ ତଳେ ପ୍ରକାଶିତ କେତେ ଖଣ୍ଡ ଶିଳ୍ପବହିର ଚାହିଦା ଅଭାବରୁ ପୁନଃ ପ୍ରକାଶ ହୋଇନପାରି ଦୁଷ୍ପ୍ରାପ୍ୟ ହୋଇ ପଡ଼ିଛି । ସ୍ୱର୍ଗୀୟ ଡ଼ାକ୍ତର ରାଧାଚରଣ ପଣ୍ଡା ଜଣେ ଚିକିତ୍ସକ ଥିଲେହେଁ ନିଜର ଆଗ୍ରହ ଓ ପ୍ରଚେଷ୍ଟା ବଳରେ ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଓଡ଼ିଶାର ଇତିହାସ, ପ୍ରତ୍ନତତ୍ତ୍ୱ, କଳା ଓ ସଂସ୍କୃତି ଉପରେ କେତେ ଖଣ୍ଡ ଉପାଦେୟ ପୁସ୍ତକ ରଚନା କରିଛନ୍ତି । ଖ୍ରୀ: ୧୯୩୦ ସାଲ ବେଳକୁ ସେ ବିଭିନ୍ନ ସ୍ଥାନର ବ୍ୟକ୍ତିବିଶେଷଙ୍କ ଠାରୁ ତାଳପତ୍ର ଶିଳ୍ପପୋଥିମାନଙ୍କ ସନ୍ଧାନ ନେଇ ଓ ତଥ୍ୟ ସଂଗ୍ରହ କରି ଓଡ଼ିଶାର ମନ୍ଦିର କଳା ଓ ସ୍ଥାପତ୍ୟ ଉପରେ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକର ନାମ ଥିଲା 'ଉତ୍କଳର ଶିଳ୍ପ ଚାତୁରୀ' । ବୋଧହୁଏ ଏହା ଓଡ଼ିଆରେ ମନ୍ଦିର କଳା ଓ ସ୍ଥାପତ୍ୟ ଉପରେ ପ୍ରଥମ ସୂଚନାତ୍ମକ ପୁସ୍ତକ ଯାହାକି ଡ଼ଃ ପଣ୍ଡା ନିଜେ ବହିଟି ଖ୍ରୀ: ୧୯୩୨ ସାଲରେ ପ୍ରକାଶ କରିଥିଲେ । ଏହି ବହି ବ୍ୟତୀତ ସେ ସମୟରେ ଓ ତା'ର ପରବର୍ତ୍ତୀ ସମୟରେ ଓଡ଼ିଶାର ମନ୍ଦିର କଳା ସ୍ଥାପତ୍ୟ ଉପରେ ପ୍ରକାଶିତ କେତେକ ଇଂରାଜୀ ବହି ମଧ୍ୟ ଦେଖିବାକୁ ମିଳେ । ତେବେ ଏହି ବହିମାନଙ୍କର ତଥ୍ୟକୁ ତୁଳନା କଲାବେଳେ ବହୁ ମତ ପାର୍ଥକ୍ୟ ଦେଖା ଯାଉଥିବା ବେଳେ କେତେକ କ୍ଷେତ୍ରରେ ବିଷୟବସ୍ତୁ ଅବୋଧ ଓ ପରସ୍ପର ବିରୋଧଭାଗ ପ୍ରକାଶ କରେ । ଏଥିରୁ ମନେହୁଏ ଯେ, ପ୍ରତ୍ୟେକ ଲେଖକ ନିଜ ନିଜ ପ୍ରଚେଷ୍ଟାରେ ଭିନ୍ନ ଭିନ୍ନ ବ୍ୟକ୍ତି ଓ ଲେଖାମାନଙ୍କରୁ ତଥ୍ୟ ସଂଗ୍ରହ କରି ନିଜ ନିଜ ପୁସ୍ତକରେ ଉପସ୍ଥାପିତ କରିଥିବା ସତ୍ତ୍ୱେ ଓଡ଼ିଶାର ସର୍ବତ୍ର ସମମତ ପ୍ରଚଳିତ ନଥିବାରୁ ଏହି ପାର୍ଥକ୍ୟମାନ ସୃଷ୍ଟି ହେବା ସ୍ୱାଭାବିକ । ଯାହା ହେଉନା କାହିଁକି ଡ଼ଃ ପଣ୍ଡାଙ୍କ ଦ୍ୱାରା ସଂଗୃହୀତ କେତେକ ଉପାଦେୟ ତଥ୍ୟ ଏଠାରେ ସନ୍ନିବେଶିତ ହୋଇଛି । ଉପରୋକ୍ତ ପୁସ୍ତକ ପ୍ରକାଶ ପୂର୍ବରୁ ଡ଼ଃ ପଣ୍ଡା ବିଭିନ୍ନ ସ୍ଥାନରେ ଦେଖିଥିବା କେତେକ ପ୍ରକାଶିତ ଓ ଅପ୍ରକାଶିତ ବହି ଓ ପୋଥିର ସୂଚନା ନିମ୍ନରେ ଦିଆ ଗଲା ।

୧. ଭୁବନ ପ୍ରବେଶ, ପୁରୀର ବାବାଜି ମହାରଣାଙ୍କ ପୁତ୍ର ଗୋପାଳ ମହାରଣାଙ୍କ ପ୍ରଣୀତ, ଏହା ଏକ ସଚିତ୍ର ପୋଥି । ୨. ଭୁବନ ପ୍ରଦୀପ, ପୁରୀର ରାମ ମହାରଣାଙ୍କ କୃତି । ୩. ଶିଳ୍ପ ପୋଥି - ପୁରୀର ନୀଳକଣ୍ଠ ମହାରଣାଙ୍କ କୃତ । ୪. ଭୁବନ ପ୍ରଦୀପ, କଟକ ଲଳିତଗିରି, ସୂର୍ଯ୍ୟ ମହାରଣାଙ୍କ କୃତ । ୫ ଓ ୬. ଏହି ନାମରେ ଅନ୍ୟ ଦୁଇ ଖଣ୍ଡ ପୋଥି ଯଥାକ୍ରମେ ପୁରୀର ଧର୍ମ ମହାରଣା ଓ ଭୁବନେଶ୍ୱରର ଦାମୋଦର ମହାରଣାଙ୍କ କୃତ ବୋଲି ଜଣାଯାଏ । ଉପରୋକ୍ତ ସମସ୍ତ ପୋଥି ଶାନ୍ତି ନିକେତନ, ବିଶ୍ୱଭାରତୀ ଗ୍ରନ୍ଥାଳୟରେ ଥିବା ଜଣାଯାଏ । ୭. ଓଡ଼ିଆ ଶିଳ୍ପଶାସ୍ତ୍ର, 'ଭୁବନ ପ୍ରବେଶ' ନାମକ ଖଣ୍ଡିଏ ପୋଥି ପୁରୀର ଶ୍ରୀଯୁକ୍ତ ବୀରେନ୍ଦ୍ର ନାରାୟଣ ରାୟଙ୍କ ବ୍ୟକ୍ତିଗତ, ଯେଉଁଥିରେ ପ୍ରଣେତାଙ୍କ ନାମ ନାହିଁ । ୮. ଉତ୍କଳୀୟ ଶିଳ୍ପଶାସ୍ତ୍ର, ଏହା ଶ୍ରୀ ରାମ ମହାରଣାଙ୍କ ଦ୍ୱାରା ପ୍ରଣୀତ ଯାହାକି ଉତ୍କଳ ସାହିତ୍ୟ ସମାଜର ଗ୍ରନ୍ଥାଗାରରେ ରହିଛି । ୯. ଏହି ନାମରେ ଅନ୍ୟ ଖଣ୍ଡିଏ ପୋଥି ଯେଉଁ ଥିରେ ଗ୍ରନ୍ଥକର୍ତ୍ତାଙ୍କ ନାମ ନାହିଁ । ଭୁବନେଶ୍ୱରର ବୈରାଗୀ ମହାରଣାଙ୍କ ଦ୍ୱାରା ସଂଗୃହୀତ । ୧୦. 'ଗୃହ ନିର୍ମାଣ ପ୍ରଥା ବା ଶିଳ୍ପଶାସ୍ତ୍ର' ଉପରେ ୰ ଜଗବନ୍ଧୁ ସିଂହ ତାଙ୍କ 'ପ୍ରାଚୀନ ଉତ୍କଳ' ପୁସ୍ତକରେ ଏହାର ନକଲ ଦେଇଛନ୍ତି । ୧୧. ଶିଳ୍ପଶାସ୍ତ୍ର, 'ଗୃହ ନିର୍ମାଣ ପଦ୍ଧତି', ପ୍ରଣେତା ବାଉରି ମହାରଣା, ଏହି ପୁସ୍ତକଟି କଟକର ଚନ୍ଦ୍ରୋଦୟ ପ୍ରେସ୍ ପ୍ରକାଶ କରିଛନ୍ତି । ଓଡ଼ିଶାରେ ତାଳପତ୍ର ପୋଥି ଓ ପୁରୁଣା ପୁସ୍ତକ ପ୍ରତି ମୁହୂର୍ତ୍ତରେ କ୍ଷୟ ହେଉଥିବା ବେଳେ ଏହି ତଥ୍ୟ ଗୁଡ଼ିକ ନିଶ୍ଚିତ ଭାବେ ଉପାଦେୟ ।

ପୁରୀର ନିଖିଳ ଉତ୍କଳ ଗବେଷଣା କାର୍ଯ୍ୟାଳୟ ଦ୍ୱାରା ଖ୍ରୀ: ୧୯୪୭ ମସିହାରେ ଯୋଗୀ ମହାରଣାଙ୍କ କୃତ 'ଶିଳ୍ପ ଚନ୍ଦ୍ରିକା' ନାମକ ପୁସ୍ତକ ପ୍ରକାଶ ପାଇଥିଲା । ଏହି ସଂସ୍ଥାର ତତ୍‌କାଳୀନ, ସଂସ୍କୃତ ବିଭାଗ ତତ୍ତ୍ୱାବଧାରକ ଶ୍ରୀ କୁଞ୍ଜବିହାରୀ ଦାଶ ପୁସ୍ତକ ସଂକଳନ କରିବା ସହିତ ଏଥିରେ ଏକ ଦୀର୍ଘ ମୁଖବନ୍ଧ ଲେଖିଥିଲେ । ଏହାର ମୂଳ ତାଳପତ୍ର ପୋଥିଟି ପଣ୍ଡିତ ସଦାଶିବ ରଥ ସଂଗ୍ରହ କରିଥିଲେ ।। ପ୍ରକାଶିତ ପୁସ୍ତକର ତଥ୍ୟରୁ ଜଣା ଯାଏ ଯେ, ଯୋଗୀ ମହାରଣା, ରାଜା ଅନଙ୍ଗଭୀମ ଦେବଙ୍କ ସମୟର ଜଣେ ମନ୍ଦିର ଶିଳ୍ପୀ । ସେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣରେ ସକ୍ରିୟ ଭାଗ ନେଇଥିଲେ । ତାଙ୍କର ଏହି ରଚନାରେ ମନ୍ଦିର ନିର୍ମାଣ ସମୟର କେତେକ ଘଟଣା ସହ ମନ୍ଦିର ସ୍ଥାପତ୍ୟର ବିଭିନ୍ନ ସୂଚନା ରହିଛି । କିନ୍ତୁ ଏଥିରେ ବିଭିନ୍ନ ମନ୍ଦିରର ଭାଗମାପ ଓ ନିର୍ମାଣ କୌଶଳକୁ କ୍ୱଚିତ୍ ଗୁରୁତ୍ୱ ଦିଆଯାଇଛି । ଏହା ବ୍ୟତୀତ ବୈଷୟିକ ବିଷୟ ଗୁଡ଼ିକର ଉପସ୍ଥାପନାରେ ମଧ୍ୟ ଶୃଙ୍ଖଳାର ଘୋର ଅଭାବ ଦେଖାଯାଏ । ତେବେ ମନ୍ଦିର ନିର୍ମାଣ କାର୍ଯ୍ୟରେ ଜଣେ ସହଯୋଗୀ ଶିଳ୍ପୀଙ୍କର ନିର୍ମାଣ ବିଦ୍ୟା ବିଷୟରେ ସାଧାରଣ ଜ୍ଞାନ ହିଁ ଏହି ପୁସ୍ତକରେ ପ୍ରତିଫଳିତ ହୋଇଛି । ଏହାର ମୂଳ ପୋଥି ଜଗନ୍ନାଥ ମନ୍ଦିର ନିର୍ମାଣ ସମୟ ଅର୍ଥାତ୍ ଖ୍ରୀ: ୧୨ଶ ଶତାବ୍ଦୀର କୃତି ବୋଲି କୁହା ଯାଉଥିବା ବେଳେ, ଭାଷା ତତ୍‌କାଳୀନ ପ୍ରଚଳିତ ଓଡ଼ିଆ ଭାଷା ଭଳି ମନେ ହୁଏ ନାହିଁ । ଏଣୁ ଏହି ଗ୍ରନ୍ଥର ବାସ୍ତବତା ଜାଣିବା ନିମନ୍ତେ ଅଧିକ ଅନୁସନ୍ଧାନ ଓ ଗବେଷଣା ଆବଶ୍ୟକ । 'ଶିଳ୍ପ ଚନ୍ଦ୍ରିକା' ବୋଧ ହୁଏ ମନ୍ଦିର ଶିଳ୍ପ ଓ ସ୍ଥାପତ୍ୟ ଉପରେ ମୁଦ୍ରିତ ଓ ପ୍ରକାଶିତ ପ୍ରଥମ ଓଡ଼ିଆ ପୁସ୍ତକ ।

ଇଂରାଜୀରେ ଅନୂଦିତ ଓ ସଙ୍କଳିତ ଦୁଇଟି ଉତ୍କଳୀୟ ଶିଳ୍ପଶାସ୍ତ୍ର 'କେନନ୍‌ସ୍ ଅଫ୍ ଓରିସାନ୍ ଆର୍କିଟେକ୍‌ଚର' ଓ 'ଶିଳ୍ପ ପ୍ରକାଶ' ଗବେଷକ ମହଲରେ ବେଶ୍ ଆଦୃତ । 'ଭୁବନ ପ୍ରଦୀପ' ନାମକ ୭ ଖଣ୍ଡ ମୂଳ ପୋଥିକୁ ସଙ୍କଳନ ଓ ଅନୁବାଦ କରି ଶ୍ରୀ ନିର୍ମଳ କୁମାର ବୋଷ ଏହାର ନାମ 'କେନନ୍‌ସ୍ ଅଫ୍ ଓରିସାନ୍ ଆର୍କିଟେକ୍‌ଚର' ରଖିଛନ୍ତି । ସଙ୍କଳକ ଏହି ତାଳପତ୍ର ପୋଥିଗୁଡ଼ିକ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନ ଓ କଟକ ଜିଲ୍ଲାର ଲଳିତଗିରି ଠାରୁ ସଂଗ୍ରହ କରିଥିଲେ । ସେ ଏହାର ପ୍ରାକ୍ କଥନ ଖ୍ରୀ : ୧୯୩୧ ସାଲରେ ଲେଖିଥିବା ବେଳେ ବହିର ପ୍ରଥମ ମୁଦ୍ରଣ ଖ୍ରୀ: ୧୯୩୨ ସାଲରେ ହୋଇଥିଲା । ପ୍ରକାଶିତ ପୁସ୍ତକର ଅଠର ଅଧ୍ୟାୟ ମଧ୍ୟରୁ ପ୍ରଥମରୁ ସପ୍ତମ ଅଧ୍ୟାୟରେ ବିଶ୍ୱକର୍ମା, ଗଣପତି ଇତ୍ୟାଦି ଦେବତାଙ୍କ ବନ୍ଦନା, ଗ୍ରନ୍ଥ କର୍ତ୍ତାଙ୍କ ସଂକ୍ଷିପ୍ତ ସୂଚନା, ମୃତ୍ତିକାର ଶ୍ରେଣୀ ବିଭାଗ, ସ୍ଥାନ ନିରୂପଣ, କ୍ଷେତ୍ର ପରିଚୟ, ବାସ୍ତୁନାଗର ସ୍ଥିତି, ଜ୍ୟୋତିଷ ଶାସ୍ତ୍ର ଅନୁଯାୟୀ ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ, ପଣ୍ଡିତ, ପୁରୋହିତଙ୍କ ପୂଜାର୍ଚ୍ଚନା ବିଧି ଇତ୍ୟାଦି ବର୍ଣ୍ଣିତ ହୋଇଛି । ଅଷ୍ଟମ ଅଧ୍ୟାୟରେ ମନ୍ଦିରର ପରିବେଶ, ଶୁଭ ଅଶୁଭ ବୃକ୍ଷ ଓ ଜଳର ସ୍ଥିତି ବିଷୟରେ ସୂଚନା ଦିଆଯାଇଛି । ନବମ ଅଧ୍ୟାୟରେ ପାରମ୍ପରିକ ମାପ ପଦ୍ଧତି, ଭିତ୍ତି ଖନନ ଓ ଶୁଭାରମ୍ଭ ବିଧି ଉଲ୍ଲେଖ ଅଛି । ଦଶମରୁ ଅଷ୍ଟାଦଶ ଅଧ୍ୟାୟରେ ମନ୍ଦିରର ଶ୍ରେଣୀ ବିଭାଗ, ପୀଠ, ୩୬ ପ୍ରକାର ରେଖ ଦେଉଳ, ୫ ପ୍ରକାର ଭଦ୍ର ଦେଉଳ ଓ ୩ ପ୍ରକାର ଖାକରା ଦେଉଳର ନାମ ସହ ସେଗୁଡ଼ିକର ଭାଗ ମାପ ଇତ୍ୟାଦି ବର୍ଣ୍ଣିତ ହୋଇଛି। ଉନବିଂଶ ଅଧ୍ୟାୟରେ ମନ୍ଦିରର କେତେକ ଅଙ୍ଗ ପ୍ରତ୍ୟଙ୍ଗ ବିଷୟରେ ସୂଚନା ଦିଆଯାଇଥିବା ବେଳେ ବିଂଶ ଅଧ୍ୟାୟରେ ସଙ୍କଳକ ମନ୍ଦିର ସମ୍ପର୍କୀୟ ବୈଷୟିକ ଶବ୍ଦର ଅର୍ଥ ଦେଇଛନ୍ତି । ସର୍ବଶେଷରେ ମନ୍ଦିର ସ୍ଥାପତ୍ୟର ଏକ ସଂକ୍ଷିପ୍ତ ଅନୁଶୀଳନ ଓ ଗ୍ରନ୍ଥର ମୂଳ ପାଠ ଦେବନାଗରୀ

ଲିପିରେ ରହିଛି । ବିଷୟଗୁଡ଼ିକର କ୍ରମ, ବୈଷୟିକ ଭାଗମାପ, ଭାଷା ଓ ଅନ୍ୟାନ୍ୟ ସୂଚନାରୁ ମନେ ହୁଏ 'ଭୁବନ ପ୍ରଦୀପ' ମଧ୍ୟଯୁଗ ଶେଷାର୍ଦ୍ଧର ଏକ ସୁପରିକଳ୍ପିତ ରଚନା । ଏଥିରେ ପ୍ରଣେତାଙ୍କ ସମ୍ପୂର୍ଣ୍ଣ ପରିଚୟ ନଥିବା ବେଳେ ପିଙ୍ଗଳ ନାମକ ଶିଳ୍ପୀ ଓ ଅହିଧର ନାମକ ସୂତ୍ରଧର ବା ସ୍ଥପତିଙ୍କ ନାମ ଦେଖିବାକୁ ମିଳେ । ବୋଧ ହୁଏ ଏଦୁହେଁ ଗ୍ରନ୍ଥର ମୂଳ ରଚୟିତା । ରାଜ୍ୟ ସଂଗ୍ରହାଳୟ ଓ ଅନ୍ୟାନ୍ୟ ସ୍ଥାନରେ ଥିବା 'ଭୁବନ ପ୍ରଦୀପ' ନାମକ କେତେକ ପୋଥିରେ ଗୃହ ନିର୍ମାଣ ବିଷୟ ଉଲ୍ଲେଖ ଥିବାବେଳେ ଅନ୍ୟ କେତେକରେ ମନ୍ଦିର ନିର୍ମାଣ ତଥ୍ୟମାନ ଦେଖିବାକୁ ମିଳେ ।

'ଶିଳ୍ପ ପ୍ରକାଶ'ର ପ୍ରାକ୍‌କଥନରୁ ଜଣାଯାଏ ଯେ ଏହାର ମୂଳ ପୋଥିକୁ ପଣ୍ଡିତ ୰ ସଦାଶିବ ରଥଶର୍ମା ଓଡ଼ିଶାର ଦକ୍ଷିଣ ସୀମାନ୍ତ,ମଞ୍ଜୁଷା ଅଞ୍ଚଳରୁ ପାଇଥିଲେ । ରାମଚନ୍ଦ୍ର କୁଳାଚାର ନାମକ ଏହାର ରଚୟିତା ମୁଶଳୀ ନଦୀ କୂଳ ଅଧିବାସୀ ଏବଂ ଏହି ଗ୍ରନ୍ଥ ସେ 'ଶୁଦ୍ଧିକାଗମ' ନାମକ ମୂଳ ଶାସ୍ତ୍ରର ଆଧାରରେ ରଚନା କରିଥିବା ପ୍ରକାଶ କରିଛନ୍ତି । ଶିଳ୍ପ ପ୍ରକାଶର ଅନୁବାଦକ ଓ ସଙ୍କଳକ ଶ୍ରୀମତୀ ଏଲିସ୍ ବୋନର ଓ ପଣ୍ଡିତ ସଦାଶିବ ରଥଶର୍ମା, ଏହି ନାମରେ ଅନ୍ୟ ତିନି ଖଣ୍ଡ ପୋଥି ପାଇଥିବା ସୂଚନା ଦିଅନ୍ତି । ସେମାନଙ୍କ ମତରେ ଏଗୁଡ଼ିକ ୧୮ଶ ଶତାବ୍ଦୀରେ ପୁନଃଲିଖିତ ହୋଇଥିଲେହେଁ ଏହାର ରଚନା କାଳ ୧୧ଶ ଶତାବ୍ଦୀ ବୋଲି ଅନୁମାନ କରନ୍ତି । ଏହା ବ୍ୟତୀତ ସଙ୍କଳକମାନେ କୋଣାର୍କ ନିକଟବର୍ତ୍ତି ନିମାପଡ଼ାର ଏକ ମଠରେ ମଧ୍ୟ ଏହି ନାମର ଏକ ଗ୍ରନ୍ଥ ଦେଖିଥିବା କହିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ଏହିକି, ରାଜ୍ୟ ସଂଗ୍ରହାଳୟରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସଂଗୃହୀତ ପ୍ରାୟ୬୦,୦୦୦ତାଳପତ୍ର ପୋଥି ମଧ୍ୟରୁ ପ୍ରାୟ ୪୫-୫୦ ଖଣ୍ଡ ଶିଳ୍ପପୋଥି ଅଟେ । କେତେକ ବ୍ୟକ୍ତିଗତ ପାଠାଗାରରେ ଓ ଅନୁଷ୍ଠାନରେ ମଧ୍ୟ ଶିଳ୍ପପୋଥି ଦେଖାଯାଏ । ବିସ୍ମୟର ବିଷୟ ଏହିକି ଶିଳ୍ପ ପ୍ରକାଶର ସଙ୍କଳକମାନଙ୍କୁ ଏହି ପ୍ରକାର ଏକାଧିକ ପୋଥି ପ୍ରାପ୍ତ ହୋଇଥିବା ବେଳେ ଉପରୋକ୍ତ କୌଣସି ଠାରେ ଖଣ୍ଡିଏ ସୁଦ୍ଧା 'ଶିଳ୍ପ ପ୍ରକାଶ' କିମ୍ବା ଏହାର ମୂଳ ଗ୍ରନ୍ଥ 'ଶୁଦ୍ଧିକାଗମ' ଦେଖିବାକୁ ମିଳେ ନାହିଁ । ଏହି ପରିସ୍ଥିତିରେ ଶିଳ୍ପ ପ୍ରକାଶର ବାସ୍ତବତାକୁ ନେଇ ସନ୍ଦେହ ସୃଷ୍ଟି ହୁଏ ।

ଯାହା ହେଉନା କାହିଁକି ଉତ୍କଳୀୟ ମନ୍ଦିର କଳା ଓ ସ୍ଥାପତ୍ୟ ବିଷୟରେ ବହୁତଥ୍ୟ ସମ୍ବଳିତ 'ଶିଳ୍ପ ପ୍ରକାଶ' ଏକ ଉପାଦେୟ ପୁସ୍ତକ । ଏହାର ସମସ୍ତ ବିଷୟ ଦୁଇ ଭାଗରେ ବିଭକ୍ତ । ପ୍ରଥମ ପ୍ରକାଶ ବା ପ୍ରଥମ ଭାଗରେ ପରମ୍ପରା ଅନୁଯାୟୀ ପ୍ରଥମେ ବିଶ୍ୱକର୍ମା ଓ ଅନ୍ୟ ଦେବ ଦେବୀଙ୍କୁ ସ୍ତୁତି କରାଯାଇ ମନ୍ଦିର ନିର୍ମାଣର ପ୍ରାରମ୍ଭ ବିଧି ବିଧାନ, ଇତ୍ୟାଦି ବର୍ଣ୍ଣନା ପରେ ମନ୍ଦିରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଭାଗମାପ ଉଲ୍ଲେଖ ସହ ନିର୍ମାଣ କୌଶଳ ବିଷୟରେ ବିଶଦ୍ ବିବରଣୀ ଦିଆଯାଇଛି । କେତେକ ସ୍ଥଳେ ଅଙ୍ଗ ପ୍ରତ୍ୟଙ୍ଗ ଓ ମୂର୍ତ୍ତିମାନଙ୍କର ଜ୍ୟାମିତିକ ନିର୍ମାଣ ସୂତ୍ର, ଯନ୍ତ୍ର ଆକାରରେ ଉପସ୍ଥାପିତ ହୋଇଥିବା ଏହି ପୁସ୍ତକର ଏକ ବିଶେଷତ୍ୱ । ଏଥିରେ ମନ୍ଦିରର ବିଭିନ୍ନ ମଣ୍ଡନକୃତି ତଥା ମୂର୍ତ୍ତିମାନଙ୍କ ନାମ, ବର୍ଣ୍ଣନା ସହିତ ସେଗୁଡ଼ିକର ବ୍ୟବହାର ସ୍ଥାନ ଓ ବିଧି ସୂଚାଇ ଦିଆଯାଇଛି । ଦ୍ୱିତୀୟ ପ୍ରକାଶ ବା ଦ୍ୱିତୀୟ ଭାଗରେ ବିଭିନ୍ନ ପ୍ରକାର ମନ୍ଦିର ଓ ତାର ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ିକର ଭାଗ ମାପ, ନିର୍ମାଣ କୌଶଳ, ଭୂନକ୍ସା ଅଙ୍କନ ସୂତ୍ର ଇତ୍ୟାଦି ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଛି । ଶିଳ୍ପ ପ୍ରକାଶର ବିଷୟବସ୍ତୁ ବିସ୍ତୃତ, ଅନେକ କ୍ଷେତ୍ରରେ ସଚିତ୍ର ଓ

ସୁବୋଧ । ବହିର ପ୍ରାରମ୍ଭରେ ଡ଼ଃ. ଭି.ଏସ୍.ଅଗ୍ରୱାଲାଙ୍କ ମୁଖବନ୍ଧ ଓ ଏଲିସ୍ ବୋନରଙ୍କ ପ୍ରାକ୍ ସୂଚନାରେ ଭାରତୀୟ ମନ୍ଦିର କଳା ଓ ସ୍ଥାପତ୍ୟ ସମେତ ଉତ୍କଳୀୟ ମନ୍ଦିରର ତାତ୍ତ୍ୱିକ ଦିଗ ଉପରେ ଗବେଷଣାତ୍ମକ ବିଷୟଗୁଡ଼ିକ ଉପାଦେୟ ।

ଏହି ସବୁ ଶିଳ୍ପ ପୋଥିଗୁଡ଼ିକର କେତେକ ସାଧାରଣ ତଥ୍ୟକୁ ଛାଡ଼ିଦେଲେ ଗୋଟିଏ ପୋଥିରେ ଥିବା ମନ୍ଦିରର ନାମ ଓ ତାର ଭାଗମାପ, ଅନ୍ୟ ପୋଥିର ଭାଗମାପ ଠାରୁ ଭିନ୍ନ । କେତେକ ସଂକଳକ, ପୋଥିରେ ଥିବା ମନ୍ଦିରର ଭାଗମାପକୁ କୌଣସି ପ୍ରାଚୀନ ମନ୍ଦିରର ଭାଗମାପ ସହିତ ଗାଣିତିକ ପଦ୍ଧତିରେ ପରୀକ୍ଷା ନକରି, ପୋଥିରେ ବର୍ଣ୍ଣିତ ମନ୍ଦିର ସହିତ କୌଣସି ଏକ ପ୍ରାଚୀନ ମନ୍ଦିରକୁ ଚିହ୍ନଟ କରିଥାଆନ୍ତି । ଏଣୁ ଏହିପରି ଉକ୍ତିର କୌଣସି ଯଥାର୍ଥତା ନଥାଏ । ଶିଳ୍ପପୋଥି ଗୁଡ଼ିକ ପ୍ରକାଶ ପାଇବାର ଯଥେଷ୍ଟ ପୂର୍ବରୁ, ଅର୍ଥାତ୍ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଉତ୍କଳୀୟ ମନ୍ଦିରର ବୈଷୟିକ ଦିଗ ଉପରେ ତତ୍‌କାଳୀନ ଜଣେ ଇଞ୍ଜିନିୟର ଶ୍ରୀ ମନମୋହନ ଗାଙ୍ଗୁଲି ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଇଃ: ଗାଙ୍ଗୁଲି ବହୁ ପରିଶ୍ରମ କରି ଭୁବନେଶ୍ୱର ଓ ପୁରୀର କେତେକ ମନ୍ଦିର ସମେତ କୋଣାର୍କ ସୂର୍ଯ୍ୟ ମନ୍ଦିରର ମାପଚୁପ ନେବା ପରେ ସେଗୁଡ଼ିକୁ ଗାଣିତିକ ପଦ୍ଧତିରେ ଅନୁଶୀଳନ କରି, ଅଙ୍ଗ ପ୍ରତ୍ୟଙ୍ଗଗୁଡ଼ିକର ଭଗାନୁପାତର ସମ୍ପର୍କ ନିର୍ଣ୍ଣୟ କରିଛନ୍ତି । ଏହି ତଥ୍ୟ ସହିତ ଅନ୍ୟାନ୍ୟ ବହୁ ବିଷୟ ସମ୍ବଳିତ ତାଙ୍କ ପୁସ୍ତକ 'ଓଡ଼ିଶା ଆଣ୍ଡ ହେର ରିମେନସ୍'ମନ୍ଦିର କଳା ଓ ସ୍ଥାପତ୍ୟର ବୈଷୟିକ ଦିଗ ଅଧ୍ୟୟନ ଓ ଗବେଷଣା ନିମନ୍ତେ ଅତ୍ୟନ୍ତ ଉପାଦେୟ, ଯେଉଁଥିରେକି କଳିଙ୍ଗ ମନ୍ଦିର ସ୍ଥାପତ୍ୟର କେତେକ ସୂତ୍ର ସନ୍ନିବେଶିତ ହୋଇଛି ।

---

* ସମ୍ବଲପୁର ବିଶ୍ୱବିଦ୍ୟାଳୟର ପତ୍ରିକା 'ସପ୍ତର୍ଷି', ସେପ୍ଟେମ୍ବର ୧୯୯୮ରେ ପ୍ରକାଶିତ, ଲେଖକଙ୍କ ସ୍ୱତନ୍ତ୍ର ପ୍ରବନ୍ଧ ।



ଏକ ଶିଳ୍ପପୋଥିର କେତୋଟି ପତ୍ର ।

# ପ୍ରାଚୀନ ଓଡ଼ିଶାର ଶିଳ୍ପୀ ଓ ସମାଜ

ମନ୍ଦିରମାଳିନୀ ଓଡ଼ିଶାର ଅନ୍ୟ ଦୁଇଟି ସାର୍ଥକ ନାମ ହେଲା କଳିଙ୍ଗ ଓ ଉତ୍କଳ । କଳିଙ୍ଗ ଅର୍ଥାତ୍ କଳା ଯାହାର ଅଙ୍ଗ । ଉତ୍କଳ, ଯାହାର କଳା ଉତ୍କୃଷ୍ଟ । ପୂର୍ବେ ଏହି ପୁଣ୍ୟ ଭୂମିର ପୁଣ୍ୟାତ୍ମାମାନେ ମନ୍ଦିର ନିର୍ମାଣକୁ ଜୀବନର ସର୍ବଶ୍ରେଷ୍ଠ ଧର୍ମକୀର୍ତ୍ତି ବୋଲି ମନେ କରୁଥିଲେ । କାରୁକଳା ପୂର୍ଣ୍ଣ ମନ୍ଦିରଟିଏ ନିର୍ମାଣ କରି ସମାଜରେ ଯଶ ଓ ଗୌରବ ଅର୍ଜନ କରୁଥିଲେ । ଏହି କାର୍ଯ୍ୟରେ ସେକାଳର ଶିଳ୍ପୀ ଓ ସମାଜ ମଧ୍ୟରେ ଉତ୍ତମ ସହଯୋଗ ରହିଥିଲା । ଏହା ଦ୍ୱାରା କଳା, ସ୍ଥାପତ୍ୟ ଓ ଧର୍ମାନୁଷ୍ଠାନଗୁଡ଼ିକ ରାଜା, ମହାରାଜା, ସମାଜର ସ୍ଥିତିବାନ୍ ତଥା ଧର୍ମପ୍ରାଣ ବ୍ୟକ୍ତିମାନଙ୍କ ପୃଷ୍ଠପୋଷକତା ଲାଭ କରିବା ଦ୍ୱାରା ସମାଜରେ କଳା ଓ ସଂସ୍କୃତିର ଅଭିବୃଦ୍ଧି ଘଟୁଥିଲା ।

ପ୍ରାଚୀନ ଶିଳ୍ପଶାସ୍ତ୍ରମାନଙ୍କରେ ପାଞ୍ଚ ପ୍ରକାର କାର୍ଯ୍ୟକୁ ଶିଳ୍ପକଳା ଶ୍ରେଣୀଭୁକ୍ତ କରାଯାଇଛି । ସେଗୁଡ଼ିକ ହେଲା କାଷ୍ଠକର୍ମ, ପ୍ରସ୍ତର କର୍ମ, ଲୌହ କର୍ମ, ସ୍ୱର୍ଣ୍ଣ କର୍ମ ଓ ଚିତ୍ରକଳା । ସ୍ୱର୍ଣ୍ଣକାରମାନେ ଅଳଙ୍କାର ନିର୍ମାଣ କରୁଥିବା ବେଳେ ଅନ୍ୟ ଚାରି ଗୋଷ୍ଠୀର କାରିଗର ବା ଶିଳ୍ପୀ ସାଧାରଣତଃ ଗୃହ, ଗୃହ ଉପକରଣ, ଅସ୍ତ୍ରଶସ୍ତ୍ର, ମନ୍ଦିର ନିର୍ମାଣ ଓ ପୂଜା-ପର୍ବାଣି ନିମନ୍ତେ କେତେକ କଳାତ୍ମକ ଦ୍ରବ୍ୟ ପ୍ରସ୍ତୁତ ତଥା ଚିତ୍ରାଙ୍କନରେ ନିଜକୁ ନିୟୋଜିତ କରୁଥିଲେ । ସମାଜରେ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକଙ୍କର ଏହାଥିଲା କୌଳିକ ପେସା । ସମାଜରେ ଏହି ଶିଳ୍ପୀମାନଙ୍କର ସମ୍ମାନ ଓ ଆଦର ମଧ୍ୟ ରହିଥିଲା । ଓଡ଼ିଶାରେ ଏହି ଗୋଷ୍ଠୀମାନେ ବର୍ତ୍ତମାନ ସାଧାରଣତଃ ମହାରଣା, ମହାପାତ୍ର, ଓଝା, ଚିତ୍ରକର ଇତ୍ୟାଦି ସଂଜ୍ଞାରେ ପରିଚିତ । ତତ୍କାଳୀନ ସମାଜର ପରିସ୍ଥିତି ଓ ପ୍ରଚଳନ ଅନୁଯାୟୀ ଏହି ଶିଳ୍ପୀମାନେ ନିଜ କାର୍ଯ୍ୟ ବିନିମୟରେ ମୁଦ୍ରା ପରିବର୍ତ୍ତେ ଅଧିକାଂଶ କ୍ଷେତ୍ରରେ ବିଭିନ୍ନ ଦ୍ରବ୍ୟ ଗ୍ରହଣ କରିବା ସଙ୍ଗେ ସଙ୍ଗେ କେତେକ ସ୍ଥଳେ ଭୂସମ୍ପଦ ମଧ୍ୟ ଲାଭ କରୁଥିଲେ । ଗୃହ କିମ୍ବା ମନ୍ଦିର ପ୍ରତିଷ୍ଠା ଓ ପୂଜା, ଉତ୍ସବମାନଙ୍କରେ ଏମାନଙ୍କୁ ସ୍ୱତନ୍ତ୍ର ଭାବେ ସମ୍ମାନିତ କରିବା ପରମ୍ପରା ଅଦ୍ୟାବଧି ପ୍ରଚଳିତ ଅଛି । ମନ୍ଦିରମାନଙ୍କ ରକ୍ଷଣାବେକ୍ଷଣ, ବିଭିନ୍ନ ପର୍ବ ପର୍ବାଣିରେ ଦେବତାମାନଙ୍କ ରଥ, ବିମାନ ଇତ୍ୟାଦି ନିର୍ମାଣ ଓ ଚିତ୍ରାଙ୍କନ ନିମନ୍ତେ ରାଜା ମହାରାଜାମାନେ ଏମାନଙ୍କୁ ନିଷ୍କର ଭୂସଂପତ୍ତି ଦାନ ସୂତ୍ରରେ ଦେଉଥିଲେ ।

ଇତିହାସରୁ ଜଣାଯାଏ ଯେ ପରବର୍ତ୍ତୀ ସମୟରେ କେତେକ ଧାର୍ମିକଗୋଷ୍ଠୀ ମଧ୍ୟରେ ଦ୍ୱନ୍ଦ ସୃଷ୍ଟି ହୋଇଥିଲେ ହେଁ ପ୍ରାଚୀନ ଓଡ଼ିଶାରେ ହିନ୍ଦୁ, ବୌଦ୍ଧ ଓ ଜୈନ ଏହି ମୁଖ୍ୟ ତିନି ଗୋଷ୍ଠୀର ସର୍ବସାଧାରଣ ପରସ୍ପର ମଧ୍ୟରେ ସହୃଦୟତା ରକ୍ଷାକରି ନିଜ ନିଜ ଧର୍ମ ପାଳନ କରିବା ସଙ୍ଗେ ସଙ୍ଗେ ତାହାର ପ୍ରଚାର ଓ ପ୍ରସାର ମଧ୍ୟ ନିର୍ବିଘ୍ନରେ କରି ପାରୁଥିଲେ । ଏଣୁ ଏହି ଶିଳ୍ପୀଗୋଷ୍ଠୀ ହିନ୍ଦୁ ମନ୍ଦିର ହେଉ ବା ବୌଦ୍ଧ ବିହାର ହେଉ, ବିନା ଦ୍ୱିଧା ଓ ବିନା ପକ୍ଷପାତିତାରେ କାର୍ଯ୍ୟ ସମ୍ପନ୍ନ କରୁଥିଲେ । ଉଦାହରଣ ସ୍ୱରୂପ ଭୁବନେଶ୍ୱରର ବୋଇତାଳ ଦେଉଳ, ଶିଶିରେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିରର କାରୁକାର୍ଯ୍ୟ ଓ ମୂର୍ତ୍ତିକଳା ସହିତ ରତ୍ନଗିରି, ଉଦୟଗିରି ଓ ଲଳିତଗିରି ବୌଦ୍ଧ କୀର୍ତ୍ତିଗୁଡ଼ିକର କାରୁକଳା ଓ ମୂର୍ତ୍ତିକଳା ତୁଳନୀୟ । ଏହି କୃତି ସମୂହ ଦେଖି ଯେ କୌଣସି ଅଭିଜ୍ଞ ବ୍ୟକ୍ତି କହିବ ଯେ, 'ଏଗୁଡ଼ିକ ଏକ ସମୟରେ ଗୋଟିଏ

କାରିଗର ବା ଶିଳ୍ପୀ ଗୋଷ୍ଠୀଦ୍ୱାରା ନିର୍ମିତ ।' ଏହି ସବୁ କାର୍ଯ୍ୟ ନିମନ୍ତେ ଜଣେ ଦୁଇ ଜଣ ମୁଖ୍ୟ ସ୍ଥପତିଙ୍କ ସହିତ ବିଭିନ୍ନ କାର୍ଯ୍ୟ ଦକ୍ଷତା ଥିବା ଶିଳ୍ପୀ ଓ ସହଯୋଗୀ ଗୋଷ୍ଠୀ ଏବଂ କେତେକ ଶିକ୍ଷାନବୀସ ମଧ୍ୟ ରହୁଥିଲେ । ବର୍ତ୍ତମାନ ଭଳି ସେ ସମୟର ସମାଜ ସମସ୍ୟା ବହୁଳ ନଥିଲା । ସୀମିତ ଆଶା ଆକାଂକ୍ଷା ମଧ୍ୟରେ ସରଳ ଜୀବନଯାପନ ସହିତ ଦେବାଳୟ ନିର୍ମାଣ ଭଳି ପୁଣ୍ୟ କର୍ମରେ ଶିଳ୍ପୀମାନେ ଭକ୍ତିପୂତ ମନରେ ନିଜକୁ ଉତ୍ସର୍ଗ କରୁଥିଲେ । ଏକାଗ୍ର ଚିତ୍ତରେ ସୃଜନଶୀଳ ଓ ପ୍ରତିଯୋଗିତାମୂଳକ ମନୋଭାବ ନେଇ ନିଜର କଳା କୌଶଳ ପ୍ରଦର୍ଶନ କରିବା ଥିଲା ସେମାନଙ୍କ ଜୀବନର ମୂଳ ଲକ୍ଷ୍ୟ। ଏହାର ଫଳ ସ୍ୱରୂପ ତତ୍କାଳୀନ ଓଡ଼ିଶାରେ ଗଢ଼ି ଉଠିଥିଲା ବହୁ ସୁନ୍ଦର ମୂର୍ତ୍ତି ଓ ମନ୍ଦିର ।

ଜଣେ କର୍ତ୍ତା ମନ୍ଦିର ନିର୍ମାଣ କରିବା ମନସ୍ଥ କରିବା ପରେ ତାଙ୍କର ପ୍ରଥମ କାର୍ଯ୍ୟ ଥିଲା ଜଣେ ଦକ୍ଷ ସ୍ଥପତି ବା ମୁଖ୍ୟ ଶିଳ୍ପୀଙ୍କ ସମେତ ତାଙ୍କ ସହଯୋଗୀମାନଙ୍କୁ ଠାବ କରିବା । ଏହା ପରେ ପୁରୋହିତ, ଜ୍ୟୋତିଷ ଓ ପଣ୍ଡିତମାନଙ୍କ ସହ ପରାମର୍ଶ କରି ପର୍ଯ୍ୟାୟ କ୍ରମେ ମନ୍ଦିର ନିର୍ମାଣ ପ୍ରକ୍ରିୟା ପରିକଳ୍ପନା କରାଯାଉଥିଲା । ଶାସ୍ତ୍ରାନୁଯାୟୀ ଏହି ପର୍ଯ୍ୟାୟ ଗୁଡ଼ିକର କ୍ରମ ହେଲା ୧. ସ୍ଥାନ ନିର୍ଣ୍ଣୟ, ୨. ଭୂମି ପରୀକ୍ଷା, ୩. ବସ୍ତୁ ବ୍ୟବସ୍ଥା ୪. ଶୁଭାରମ୍ଭ ସହିତ ଶୁଭଖମ୍ବ ସ୍ଥାପନ, ୫.ମନ୍ଦିର ନିର୍ମାଣ ୬. ମନ୍ଦିର ପ୍ରତିଷ୍ଠା, ୭. ଦେବତା ସ୍ଥାପନ, ୮. ସ୍ଥାୟୀ ପୂଜା ବିଧିର ବ୍ୟବସ୍ଥା । ଏହି ସମସ୍ତ କର୍ଯ୍ୟକ୍ରମ ମଧ୍ୟରେ ମୁଖ୍ୟ ସ୍ଥପତି ଓ ତାଙ୍କ ସହଯୋଗୀ ଶିଳ୍ପୀମାନଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟ ସର୍ବଦା ଗୁରୁତ୍ୱପୂର୍ଣ୍ଣ । ସୁଚାରୁ ରୂପେ ଏହି କାର୍ଯ୍ୟ କରିବା ନିମନ୍ତେ ଅଭିଜ୍ଞ ସ୍ଥପତିମାନେ ନିଜ ସହିତ ବିଭିନ୍ନ ଶ୍ରେଣୀର ଶିଳ୍ପୀ ଓ ସହଯୋଗୀ ମାନଙ୍କୁ ନେଇ ଏକ ଦଳ ଗଠନ କରୁଥିଲେ । ଏହି ବିଷୟରେ ବିଭିନ୍ନ ଶିଳ୍ପଶାସ୍ତ୍ର ଓ କେତେକ ପୁରାଣରେ ମଧ୍ୟ ବର୍ଣ୍ଣନା ଦେଖିବାକୁ ମିଳେ । ଶିଳ୍ପୀ ଗୋଷ୍ଠୀ ବ୍ୟତୀତ ଗୋଟିଏ ବଡ଼ ମନ୍ଦିର ନିର୍ମାଣରେ ସମାଜର ବିଭିନ୍ନ ବ୍ୟକ୍ତି ଓ ଗୋଷ୍ଠୀର ଶ୍ରମଦାନ ବୌଦ୍ଧିକ ଚିନ୍ତାଧାରା ବିନିଯୋଗ ଓ ନୈତିକ ସମର୍ଥନ, ସାହାଯ୍ୟ ଓ ସହଯୋଗ ରହୁଥିଲା । ଖାଦାନରୁ ପଥର କାଟିବା, ପରିବହନ ବ୍ୟବସ୍ଥା କରି ସେଗୁଡ଼ିକୁ ନିର୍ମାଣ ସ୍ଥଳରେ ପହଞ୍ଚାଇବା ଓ ବିଭିନ୍ନ ଉପକରଣ ଯୋଗାଇବାରେ ଶତାଧିକ ବ୍ୟକ୍ତି ନିୟୋଜିତ ହେଉଥିଲେ । ଜଣେ ଦକ୍ଷ ଶିଳ୍ପୀ ବା ସ୍ଥପତିଙ୍କ ଜୀବନକାଳ ମଧ୍ୟରେ ଗୋଟିଏ ବଡ଼ କିମ୍ବା ଏକ କମନୀୟ ମନ୍ଦିର ନିର୍ମାଣର ସୁଯୋଗ ପାଇଲେ ସେ ନିଜକୁ ଗୌରବାନ୍ୱିତ ଓ ଭାଗ୍ୟବାନ ମନେ କରିବା ସ୍ୱାଭାବିକ ।

ଶିଳ୍ପଶାସ୍ତ୍ରର କେତେକ ମୌଳିକ ନୀତିକୁ ଅନୁସରଣ କରିବା ବ୍ୟତୀତ ନିର୍ମାଣରେ ନିଜସ୍ୱ ଚିନ୍ତାଧାରା, ପରିକଳ୍ପନା ଓ କଳାକୌଶଳ ପ୍ରଦର୍ଶନ କରିବାରେ ଶିଳ୍ପୀମାନେ ଥିଲେ ସମ୍ପୂର୍ଣ୍ଣ ସ୍ୱାଧୀନ । ଏହାର ଫଳ ସ୍ୱରୂପ ପ୍ରତ୍ୟେକ ମନ୍ଦିର ଅନ୍ୟଠାରୁ ଭିନ୍ନ ଓ ସୁନ୍ଦର ଦେଖାଯାଏ । ଯେଉଁଥିରେକି ସମୟାନୁକ୍ରମ କଳା ଓ ସ୍ଥାପତ୍ୟର ବିକାଶଧାରା ସ୍ପଷ୍ଟ । ଐତିହାସିକମାନେ ଏହି ମନ୍ଦିର ଗୁଡ଼ିକୁ ବିଭିନ୍ନ ରାଜବଂଶର ରାଜତ୍ୱ କାଳରେ ନିର୍ମିତ ବୋଲି ଚିହ୍ନିତ କରୁଥିଲେ ହେଁ ସମସ୍ତ ମନ୍ଦିର କେବଳ ରାଜା ମହାରାଜାଙ୍କ ପୃଷ୍ଠପୋଷକତାରେ ନିର୍ମିତ ହୋଇନାହିଁ । ଅନେକ କୀର୍ତ୍ତି ସମାଜର ପ୍ରତିଷ୍ଠିତ ବ୍ୟକ୍ତି, ଧର୍ମପ୍ରାଣ ଗୋଷ୍ଠୀ, ପ୍ରତିଷ୍ଠାନ ତଥା ସାଧୁ ସନ୍ଥଙ୍କ ଦ୍ୱାରା ମଧ୍ୟ ନିର୍ମିତ ହୋଇଛି । ଗୋଟିଏ ବଡ଼ ମନ୍ଦିରନିର୍ମାଣ ନିମନ୍ତେ ପୃଷ୍ଠପୋଷକତା ତଥା ଶିଳ୍ପୀଗୋଷ୍ଠୀର ଭୂମିକା ଯେତିକି ଅପରିହାର୍ଯ୍ୟ, ବିଭିନ୍ନ ଆନୁସାଙ୍ଗିକ କାର୍ଯ୍ୟରେ ସର୍ବସାଧାରଣଙ୍କ ସହଯୋଗ ମଧ୍ୟ ସେତିକି ଗୁରୁତ୍ୱପୂର୍ଣ୍ଣ ।



# କଳିଙ୍ଗ ମନ୍ଦିର ସ୍ଥାପତ୍ୟର ପ୍ରାରମ୍ଭ

ପ୍ରାଚୀନ ଭାରତର ବିଭିନ୍ନ ପ୍ରାନ୍ତରେ ମନ୍ଦିର ନିର୍ମାଣର ପରିକଳ୍ପନା ଓ ପ୍ରାରମ୍ଭ ଯେପରି ହେଉନା କାହିଁକି, ଉଡ୍ର ବା କଳିଙ୍ଗ ଦେଶରେ ଏହି ସ୍ଥାପତ୍ୟ କଳାର ସୃଷ୍ଟି ଓ କ୍ରମ ବିକାଶର ଏକ ନିଜସ୍ୱ ଧାରା ରହିଛି । ଏଣୁ ସର୍ବଭାରତୀୟ ସ୍ତରରେ କଳିଙ୍ଗ ମନ୍ଦିର ଶୈଳୀର ସ୍ୱାତନ୍ତ୍ର୍ୟ ସ୍ୱୀକୃତ । ଏପରିକି କର୍ଣ୍ଣାଟକର ବଲେରି ଜିଲ୍ଲାର ଅମୃତେଶ୍ୱର ଶିବ ମନ୍ଦିରରେ ଥିବା ମୁଖ-ମଣ୍ଡପର ଏକ ଖମ୍ବ ଅଭିଲେଖରେ ଭାରତର ତିନି ମୁଖ୍ୟ ମନ୍ଦିର ଶୈଳୀ, ଯଥା-ନାଗର, ବେଶର ଓ ଦ୍ରାବିଡ଼ ବ୍ୟତୀତ କଳିଙ୍ଗ ମନ୍ଦିର ଶୈଳୀର ସ୍ୱାତନ୍ତ୍ର୍ୟ ବିଷୟରେ ଉଲ୍ଲେଖ ଅଛି । କଳିଙ୍ଗରେ ମନ୍ଦିର ନିର୍ମାଣ ପ୍ରକ୍ରିୟା ଯଥେଷ୍ଟ ପୂର୍ବରୁ ଆରମ୍ଭ ହୋଇଥିଲେହେଁ, ଖ୍ରୀ.୬ଷ୍ଠ-୭ମ ଶତାବ୍ଦୀ ଠାରୁ ନିର୍ମିତ କାରୁକଳାପୂର୍ଣ୍ଣ ମନ୍ଦିରଗୁଡିକହିଁ ଦୃଷ୍ଟି ଆକର୍ଷଣ କରେ । ତେବେ ସୁପରିକଳ୍ପିତ କାରୁକଳାପୂର୍ଣ୍ଣ ଏହି ମନ୍ଦିର ଗୁଡ଼ିକ କେବେ ପ୍ରଥମ ପର୍ଯ୍ୟାୟର ନିର୍ମାଣ ହୋଇ ନପାରେ । ଏହାର ପୂର୍ବରୁ ଅପରିପକ୍ୱ ନିର୍ମାଣ କୌଶଳରେ ନିର୍ମିତ ବହୁ ଛୋଟ ଓ ମଧ୍ୟମ ଆକାରର ମନ୍ଦିର ରକ୍ଷଣାବେକ୍ଷଣ ଅଭାବରୁ, କାଳ ସ୍ରୋତରେ ଭାଙ୍ଗି ନଷ୍ଟ ହୋଇ ପଡ଼ିଛି । ଏଗୁଡ଼ିକର ଖଣ୍ଡ ବିଖଣ୍ଡିତ ଅଂଶ ତଥା କେତେକ କଳାକୃତି ପରବର୍ତ୍ତୀ ସମୟରେ ନିର୍ମିତ କେତେକ ମନ୍ଦିରରେ ବ୍ୟବହୃତ ହୋଇଥିବା ଓ ଅନ୍ୟ କେତେକ ଅବହେଳିତ ଅବସ୍ଥାରେ ବିଭିନ୍ନ ସ୍ଥାନରେ ପଡ଼ି ରହିଥିବା ଦୃଷ୍ଟିଗୋଚର ହୁଏ ।

ଅଶୋକଙ୍କ ରାଜତ୍ୱ ସମୟ (ଖ୍ରୀ:ପୂ ୨୭୩ ରୁ ଖ୍ରୀ:ପୂ ୨୩୬)ର ପ୍ରଥମ ଭାଗରେ ତୋଷାଳୀର ଦୟାନଦୀ କୂଳରେ କଳିଙ୍ଗ ଯୁଦ୍ଧର ସୂତ୍ରପାତ ହୋଇଥିବା ଐତିହାସିକମାନେ ଅନୁମାନ କରନ୍ତି । ଏହି ଯୁଦ୍ଧର ଭୟାବହ ତଥା କରୁଣ ଦୃଶ୍ୟ ଅଶୋକଙ୍କ ମନରେ ଆଣିଥିଲା ଘୋର ପରିବର୍ତ୍ତନ । ତାଙ୍କର କଠୋର ହୃଦୟରେ ଦୟା ଓ କରୁଣାର ଭାବ ଜାଗ୍ରତ ହେବାଦ୍ୱାରା ସେ ବୌଦ୍ଧଧର୍ମ ଗ୍ରହଣ କରି ଚଣ୍ଡାଶୋକରୁ ଧର୍ମାଶୋକ ଭାବେ ପରିଚିତ ହେଲେ । ଏହା ବ୍ୟତୀତ ବୌଦ୍ଧ ଧର୍ମର ଅହିଂସା ବାଣୀ ପ୍ରଚାର ଓ ପ୍ରସାର ନିମନ୍ତେ ସେ ନିଜର ସର୍ବସ୍ୱ ଉତ୍ସର୍ଗ କରିଥିଲେ । ଏହି କାର୍ଯ୍ୟ ନିମନ୍ତେ ସେ ଭାରତର ବିଭିନ୍ନ ସ୍ଥାନ ସମେତ କଳିଙ୍ଗର ତୋଷାଳୀ, ଅର୍ଥାତ ବର୍ତ୍ତମାନର ଭୁବନେଶ୍ୱର ଓ ଗଞ୍ଜାମ ଜିଲ୍ଲାର ଜଉଗଡ଼ ଠାରେ ନିଜ ଅନୁଶାସନ ପଥର ଦେହରେ ଖୋଦିତ କରିବା ସମେତ ଶାନ୍ତି ପ୍ରତିଷ୍ଠା ଓ ଧର୍ମ ପ୍ରଚାରର ସ୍ମାରକୀ ସ୍ୱରୂପ କେତେକ ବୌଦ୍ଧ-କୀର୍ତ୍ତି ନିର୍ମାଣ କରିଥିଲେ । କିନ୍ତୁ ଯୁଦ୍ଧରେ ପ୍ରପୀଡ଼ିତ କଳିଙ୍ଗବାସୀଙ୍କ ମନରୁ ସେ, ତାଙ୍କ ପ୍ରତି ଥିବା ଘୃଣା ଓ ପ୍ରତିହିଂସାପରାୟଣତାକୁ ଲୋପ କରିପାରି ନଥିଲେ । ଏହାର ଫଳ ସ୍ୱରୂପ ଅଶୋକଙ୍କ ଶାସନ ଅନ୍ତେ କଳିଙ୍ଗର ମୂଳ ଅଧିବାସୀ ଓ ବୌଦ୍ଧମାନଙ୍କ ମଧ୍ୟରେ କଳହ ଲାଗି ରହିଲା । ପ୍ରତିଶୋଧପରାୟଣ କଳିଙ୍ଗବାସୀ ବୌଦ୍ଧ ଧର୍ମର ପତନ ନିମନ୍ତେ ଅଶୋକଙ୍କ ଧର୍ମକୀର୍ତ୍ତିଗୁଡ଼ିକୁ ଭାଙ୍ଗି ନଷ୍ଟ କରିଦେବା ସହିତ ନିଜସ୍ୱ ପ୍ରାଚୀନ ଶୈବ ଧର୍ମର ଉତ୍‌ଥାନ ନିମନ୍ତେ ଧର୍ମକୀର୍ତ୍ତିମାନ ସ୍ଥାପନ କରିଥିବା ସ୍ୱାଭାବିକ । ଏହି ଭଗ୍ନ ବୌଦ୍ଧକୀର୍ତ୍ତି ମଧ୍ୟରୁ ଅଶୋକ ସ୍ତମ୍ଭର ଏକ ମୁଖ୍ୟ ଅଂଶ ଭୁବନେଶ୍ୱରର ଭାସ୍କରେଶ୍ୱର ମନ୍ଦିର ମଧ୍ୟରେ ଶିବଲିଙ୍ଗ ରୂପେ ପୂଜିତ ହେଉଥିବା ବେଳେ ଅଶୋକ ସ୍ତମ୍ଭର ସିଂହ ଓ ତାର ଚକ୍ରାକାର ମୂଳ ପୀଠ ଖଣ୍ଡ, ସ୍ତମ୍ଭର ଚତୁଃପାର୍ଶ୍ୱରେ ଥିବା ରେଲିଙ୍ଗ୍ ବାଡ଼ର କେତେକ ଖଣ୍ଡ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ପ୍ରାରମ୍ଭ ସମୟରେ ନିର୍ମିତ ହିନ୍ଦୁ ଧର୍ମକୀର୍ତ୍ତି ଗୁଡ଼ିକ ସାଧାରଣତଃ ମୁକ୍ତାକାଶ ତଳେ କିମ୍ବା ବୃକ୍ଷ ମୂଳେ ସ୍ଥାପିତ କେତେକ ଶିବଲିଙ୍ଗ ଏବଂ ବୌଦ୍ଧ ସ୍ତୁପ ସମକକ୍ଷ, ରେଖ



ମନ୍ଦିର ସଦୃଶ ପ୍ରାଚୀନ ସ୍ତମ୍ଭ



ଶିଖରଚଣ୍ଡୀ ମନ୍ଦିର, ପଟିଆ

ଦେଉଳ ସଦୃଶ କେତେକ ଖମ୍ବ ଆକାରର କୃତିର ଚତୁଃପାର୍ଶ୍ୱରେ ଖୋଦିତ ଶିବଲିଙ୍ଗ, ବିଷ୍ଣୁଙ୍କ ପ୍ରତୀକ ଶାଳଗ୍ରାମ ଓ ବିଭିନ୍ନ ଦେବ ଦେବୀଙ୍କ ପ୍ରତିମା ଅଟେ । ଏହି ନିର୍ମାଣଗୁଡ଼ିକର ପ୍ରଧ୍ୱଂସାବଶେଷ ବିନ୍ଦୁସାଗର କୂଳ, ଭୁବନେଶ୍ୱର ନିକଟ ବୁଆଳିଗଡ଼, ଚନ୍ଦକା ଇତ୍ୟାଦି ସ୍ଥାନରେ ଅବକ୍ଷୟ ଏବଂ ଅବହେଳିତ ଅବସ୍ଥାରେ ପଡ଼ିଥିବାର ଦେଖିବାକୁ ମିଳେ ।

ପରବର୍ତ୍ତୀ ସମୟ, ଅର୍ଥାତ୍ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ, କଳିଙ୍ଗର ଯଶସ୍ୱୀ ସମ୍ରାଟ ମହାମେଘବାହନ ଖାରବେଳ କଳିଙ୍ଗ ତଥା ଭାରତ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରନ୍ତି । ସେ ତାଙ୍କ ସମୟରେ ଜୈନ ଧର୍ମର ପ୍ରଚାର, ପ୍ରସାର ତଥା ଜୈନ ଅର୍ହତ ବା ଶ୍ରମଣମାନଙ୍କ ଆଶ୍ରୟ ନିମନ୍ତେ ଭୁବନେଶ୍ୱରର କୁମାର ଓ କୁମାରୀ ପର୍ବତରେ ମୂର୍ତ୍ତି ଓ କାରୁକଳାଯୁକ୍ତ ଅନେକ ଗୁମ୍ଫା ଖୋଦନ କରାଇ ଥିଲେ । ଜୀର୍ଣ୍ଣ ଅବସ୍ଥାରେ ବର୍ତ୍ତମାନ ତିଷ୍ଠି ରହିଥିବା ଏହାର କଳା ଓ ସ୍ଥାପତ୍ୟ ଦେଖିଲେ, ଯେକେହି ନିଃସନ୍ଦେହରେ କହିବ ଯେ କଳିଙ୍ଗର ତତ୍କାଳୀନ ପଥୁରିଆ, ସ୍ଥପତି ଓ କାରୁକଳା ଶିଳ୍ପୀମାନେ ପଥର ଖୋଦେଇ ନିର୍ମାଣରେ ପାରଙ୍ଗମ ଥିଲେ । ଉଦୟଗିରି ପାହାଡ଼ରେ ଥିବା ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ ଯେ, ଖାରବେଳ ଜୈନ ଥିଲେହେଁ ଅନ୍ୟ ଧର୍ମ ଓ ବ୍ରାହ୍ମଣମାନଙ୍କ ପ୍ରତି ତାଙ୍କର ଭକ୍ତି ଓ ଶ୍ରଦ୍ଧା ଥିଲା । ସେ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ବହୁ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ସହିତ କେତେକ ଶିଖର ନିର୍ମାଣ କରାଇଥିଲେ । ଏହି ଶିଖରଗୁଡ଼ିକ ସାଧାରଣତଃ ହିନ୍ଦୁ ମନ୍ଦିରକୁ ବୁଝାଏ । ପୁନଶ୍ଚ ଶିଳା ଲେଖର ଶେଷ ଭାଗରେ, ସେ ଶିଖର ଓ ଦେବାୟତନମାନଙ୍କ ସଂସ୍କାର ବା ମରାମତି କରାଇ ଥିବା ବିଷୟ ଉଲ୍ଲେଖ ଅଛି । ଏଥିରୁ ମନେହୁଏ ଯେ, ଖାରବେଳଙ୍କ ପୂର୍ବରୁ ନିର୍ମିତ କେତେକ ଦେବ ମନ୍ଦିର ତାଙ୍କ ଶାସନ କାଳ ବେଳକୁ କେତେକାଂଶରେ କ୍ଷତିଗ୍ରସ୍ତ ହୋଇପଡ଼ି ଥିବାରୁ ସେ ତାହାର ସଂସ୍କାର କରାଇଥିଲେ । ତେବେ ଏହି ନିର୍ମାଣଗୁଡ଼ିକ ଅଶୋକଙ୍କ ପରବର୍ତ୍ତୀ ଏବଂ ଖାରବେଳଙ୍କ ପୂର୍ବବର୍ତ୍ତୀ ସମୟ,

ଯାହାକି ଖ୍ରୀ:ପୂ: ୨ୟ ଶତାବ୍ଦୀର ଅଟେ । ପ୍ରଥମ ପର୍ଯ୍ୟାୟର ଏହି ମନ୍ଦିର ଗୁଡ଼ିକ ରୁକ୍ଷ ଭାବରେ କଟା ଯାଇଥିବା ବିଭିନ୍ନ ଆକାର ପ୍ରକାରର ପଥରକୁ ଗୋଟିକ ଉପରେ ଗୋଟିଏ ସଜାଇ ରଖି ନିର୍ମାଣ କରା ଯାଇଥିଲା । ପଥର ସହିତ ପଥରର ସଂଯୋଗ ନିମନ୍ତେ କୌଣସି ମାଧ୍ୟମ ବ୍ୟବହାର କରା ଯାଉନଥିବାରୁ ଏଗୁଡ଼ିକ ଦିର୍ଘସ୍ଥାୟୀ ହୋଇ ପାରୁନଥିଲା । ଏହି ପ୍ରକାର ଏକ ପ୍ରାଚୀନ ନିର୍ମାଣର ଉଦାହରଣ, ଭୁବନେଶ୍ୱର ନିକଟ ପଟିଆ ଗ୍ରାମର ପାହାଡ଼ ଉପରେ ଥିବା ଶିଖରଚଣ୍ଡୀଙ୍କ ପୀଢ଼ ଶୈଳୀର ଦେଉଳ ଅଟେ । ଏହି ସମୟର ବୋଲି ଅନୁମାନ କରାଯାଉଥିବା ଖାକରା ଶୈଳୀର ଅନ୍ୟ ଏକ ଛୋଟ ମନ୍ଦିର ବୁଆଳିଗଡ଼ ଜଙ୍ଗଲ ମଧ୍ୟରେ ଦେଖିବାକୁ ମିଳେ ।

ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାର ଏକ ପରମ୍ପରା ବିଷୟ ଏଠାରେ ଉଲ୍ଲେଖଯୋଗ୍ୟ । ଯେଉଁମାନେ ଖଣ୍ଡଗିରି ପାହାଡ଼ର ସର୍ବୋଚ୍ଚ ସ୍ଥାନ 'ଦେବସଭା' ନିକଟକୁ ଯା'ଆନ୍ତି, ସେଠାରେ ଛୋଟ ଛୋଟ ପଥର ଉପରେ ପଥର ଥୋଇ ମନ୍ଦିର ସଦୃଶ ଏକ ନିର୍ମାଣ କଲେ, ପୁଣ୍ୟ ମିଳିଥାଏ ବୋଲି ବିଶ୍ୱାସ କରାଯାଏ । ମନ୍ଦିର ନିର୍ମାଣ କରି ପୁଣ୍ୟାର୍ଜନ କରିବାର ଏହି ପରମ୍ପରା ବୋଧହୁଏ ଖାରବେଳଙ୍କ ସମୟରୁ ପ୍ରଚଳିତ ଅଛି ।

ମନ୍ଦିର ନିର୍ମାଣ ପ୍ରାରମ୍ଭର ରାଜନୈତିକ ପୃଷ୍ଠଭୂମି ବ୍ୟତୀତ ତା'ର ସାମାଜିକ ଦିଗ ଉପରେ ଦୃଷ୍ଟିପାତ କରାଯାଇପାରେ । ଓଡ଼ିଶା କାହିଁକି, ସାରା ଭାରତବର୍ଷରେ ଭୁବନେଶ୍ୱର ପ୍ରାଚୀନ ମନ୍ଦିରନଗରୀ ଭାବେ ଖ୍ୟାତ । କାରଣ ଖ୍ରୀ:ପୂ: ୨ୟ ଶତାବ୍ଦୀରୁ ଦୀର୍ଘ ପନ୍ଦରଶହ ବର୍ଷ ଧାରାବାହିକ ଭାବେ ଏକାମ୍ରକ୍ଷେତ୍ରରେ, ପ୍ରତ୍ୟେକ ଶତାବ୍ଦୀରେ କୌଣସି ନା କୌଣସି ମନ୍ଦିର ନିର୍ମିତ ହୋଇ ଆସିଛି । ବର୍ତ୍ତମାନ ସୁଦ୍ଧା ବିଭିନ୍ନ ପ୍ରକାର ଖନନ ବେଳେ ଏହାର ମାଟି ତଳୁ ପୂର୍ବବର୍ତ୍ତୀ ସମୟରେ ନିର୍ମିତ ବହୁ ମନ୍ଦିରର ଭଗ୍ନାବଶେଷ ପ୍ରାପ୍ତ ହୋଇଥାଏ । ଏହାର ଫଳ ସ୍ୱରୂପ, ମନ୍ଦିର ନିର୍ମାଣର ଅଙ୍କୁରୋଦ୍‌ଗମ ଠାରୁ ଚରମ ବିକାଶ ଧାରାର ଅଧ୍ୟୟନ ନିମନ୍ତେ ମନ୍ଦିରନଗରୀ ଭୁବନେଶ୍ୱର ଏକ ଅପୂର୍ବ ସ୍ଥାନ । ଏକାମ୍ର ଚନ୍ଦ୍ରିକା, ଏକାମ୍ର ପୁରାଣ, କପିଳ ସଂହିତା ଇତ୍ୟାଦି ପୁରାଣମାନଙ୍କ ବାସ୍ତବ ଦିଗ ଅନୁଶୀଳନ କରି କୁହାଯାଇ ପାରେ ଯେ, ଏକଦା ଏକ ଆମ୍ରବୃକ୍ଷ ମୂଳେ ରହିଥିଲା ଏକ ଦିବ୍ୟଲିଙ୍ଗ । ଏହାର ଶାନ୍ତ ପରିବେଶ, ଶୀତଳ ଜଳପୂର୍ଣ୍ଣ ପୁଷ୍କରିଣୀ ଓ ପ୍ରସ୍ରବଣଗୁଡ଼ିକ ଆଗନ୍ତୁକ ମନରେ ସୃଷ୍ଟି କରୁଥିଲା ଏକ ଆଧ୍ୟାତ୍ମିକ ଭାବ । ଯାହାର ଫଳ ସ୍ୱରୂପ, ଏଠାରେ ଏକ ତୀର୍ଥ କ୍ଷେତ୍ର ଗଢ଼ି ଉଠିଥିଲା । କାଳକ୍ରମେ ଭକ୍ତମାନେ ଧର୍ମାର୍ଜନ ନିମନ୍ତେ ହେଉ କିମ୍ବା କାମନା ପୂରଣ ନିମନ୍ତେ ହେଉ, ଏହାର ବିଭିନ୍ନ ସ୍ଥାନରେ, ମୁକ୍ତାକାଶ ତଳେ ଅନେକ ଶିବଲିଙ୍ଗ ଓ ବିଭିନ୍ନ ଦେବ ଦେବୀଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ପରବର୍ତ୍ତୀ ସମୟରେ ଏହି କୃତିଗୁଡ଼ିକର ସୁରକ୍ଷା ନିମନ୍ତେ ନିର୍ମାଣ କରିଥିଲେ ଛୋଟ ଛୋଟ ମନ୍ଦିର । ଏହିପରି ଏକ ଚାରି ଖମ୍ବଯୁକ୍ତ ପ୍ରାଚୀନ ପୀଢ଼ ଦେଉଳ ବୋଇତାଳ ଦେଉଳର ସମ୍ମୁଖରେ ରହିଛି । ଏହି ଜୀର୍ଣ୍ଣ ମନ୍ଦିରଟିର ଅବକ୍ଷୟକୁ ଦେଖି କୁହା ଯାଇପାରେ ଯେ ଏହା ଏକ ଅତି ପ୍ରାଚୀନ କୃତି । ଏହା ମଧ୍ୟରେ ସ୍ଥାନିତ ହୋଇଥିବା ପୂର୍ବୋକ୍ତ ଖମ୍ବ ସଦୃଶ ଏକ ନିର୍ମାଣର ଚାରିପାଖରେ ଚାରି ଦେବଦେବୀଙ୍କ ମୂର୍ତ୍ତି ରହିଛି । ଏହି କୃତିଟି ଅନ୍ୟ କୌଣସି ସ୍ଥାନରୁ ସଂଗୃହୀତ ହୋଇ ଏଠାରେ ସ୍ଥାପିତ ହୋଇଛି । ମନ୍ଦିରର ଖମ୍ବଗୁଡ଼ିକରେ ସ୍ୱଚ୍ଛ କାରୁକଳା ରହିଥିବାରୁ ଏହା, କିଛିଟା ପରବର୍ତ୍ତୀ ପର୍ଯ୍ୟାୟର ବୋଲି ଅନୁମାନ କରାଯାଏ ।



ଶତ୍ରୁଘ୍ନେଶ୍ୱର ମନ୍ଦିର ଦେହର ନମୁନା ମନ୍ଦିର



ଲିଙ୍ଗରାଜ ମନ୍ଦିର ପରିସରର ପ୍ରାଚୀନ ଛୋଟ ମନ୍ଦିର

ବହୁ ବିକଶିତ ମନ୍ଦିରର ମୂର୍ତ୍ତିକଳାରେ ମନ୍ଦିର ନିର୍ମାଣ ସମୟରେ ତିଷ୍ଠି ରହିଥିବା ପ୍ରାଚୀନ ମନ୍ଦିରମାନଙ୍କ ଚିତ୍ର ବା ନମୁନା ଦେଖିବାକୁ ମିଳେ । ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ମନ୍ଦିର ଗାତ୍ରରେ ଏହି ପ୍ରକାର କେତୋଟି ଉଦାହରଣ ରହିଛି । ଏଠାରେ ମନ୍ଦିରର ପ୍ରବେଶ ଦ୍ୱାର ତୋରଣ ବା ପାଟପଥର ଉପରେ ଖୋଦିତ ଶିବ-ପାର୍ବତୀଙ୍କ ବର୍ଣ୍ଣନାତ୍ମକ ମୂର୍ତ୍ତିକଳାର ଦୁଇ ପାର୍ଶ୍ୱରେ ଥିବା ଦୁଇଟି ପୀଢ଼ ଦେଉଳର ଦୃଶ୍ୟ ଉଲ୍ଲେଖଯୋଗ୍ୟ । ଏଥି ମଧ୍ୟରୁ ଗୋଟିକରେ ଶିବଲିଙ୍ଗ ଓ ଅନ୍ୟଟିରେ ଶିବଙ୍କର ଏକ ଆବକ୍ଷ ପ୍ରତିମା ସ୍ଥାପିତ ହୋଇଛି । ଏହି ଦୁଇ ପୀଢ଼ ଦେଉଳର ଗଣ୍ଡିରେ ଛୋଟ ବକ୍ରମସ୍ତକ ନକ୍ସା ଓ ମସ୍ତକରେ ଅଁଳା, ଦେଖାଯାଏ । ଏଥିରୁ ପ୍ରମାଣିତ ହୁଏ ଯେ, ଖ୍ରୀ:ପୂ:୬ଷ୍ଠ-୭ମ ଶତାବ୍ଦୀ ପୂର୍ବରୁ ଏହି ପ୍ରକାର ଛୋଟ ମନ୍ଦିରମାନ ପ୍ରଚଳିତ ଥିଲା । ଏହି ପ୍ରକାର ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ଭୁବନେଶ୍ୱର ଓ ଯାଜପୁରର ବିଭିନ୍ନ ସ୍ଥାନରେ ପରିତ୍ୟକ୍ତ ଅବସ୍ଥାରେ ଦେଖା ଯାଉଥିବା ବେଳେ ଏହା ମଧ୍ୟରେ ପୂଜା ପାଉଥିବା ଶିବଙ୍କ ଭୈରବ ମୂର୍ତ୍ତି, ନାଗ ଦେବତାଙ୍କ ମୂର୍ତ୍ତି ମଧ୍ୟରୁ କେତୋଟି ରାଜ୍ୟ ସଂଗ୍ରହାଳୟ, ମୁକ୍ତେଶ୍ୱର ମନ୍ଦିର ପରିସର, ସ୍ୱର୍ଣ୍ଣଜଳେଶ୍ୱର ଓ ରାଜାରାଣୀ ମନ୍ଦିରରେ ସଂଗୃହୀତ ହୋଇ ରହିଛି ।

ମଧ୍ୟଯୁଗରେ ଗୋଟିଏ ବଡ଼ ମନ୍ଦିର ଓ ତା'ର ବେଢ଼ା ନିର୍ମାଣ ନିମନ୍ତେ ସ୍ଥାନ ଅଭାବରୁ ସେହି ସ୍ଥାନରେ ପୂର୍ବରୁ ରହିଥିବା ଛୋଟ ମନ୍ଦିରଗୁଡ଼ିକୁ ସ୍ଥାନାନ୍ତରିତ କରାଯାଉଥିଲା ଏବଂ ମନ୍ଦିରର ନିର୍ମାଣ କାର୍ଯ୍ୟ ସରିବା ପରେ ସେହି ଛୋଟ ମନ୍ଦିରଗୁଡ଼ିକୁ ବେଢ଼ା ମଧ୍ୟରେ କିମ୍ବା ବାହାରେ କୌଣସି ଉପଯୁକ୍ତ ସ୍ଥାନରେ ପୁନଃ ସ୍ଥାପିତ କରାଯାଉଥିଲା । ଏହିଭଳି କେତେକ ଛୋଟ ଓ ମଧ୍ୟମ ଆକାରର ପ୍ରାଚୀନ ମନ୍ଦିର ଲିଙ୍ଗରାଜ ମନ୍ଦିର ବେଢ଼ା, ମୁକ୍ତେଶ୍ୱର ମନ୍ଦିର ଓ ଉତ୍ତରେଶ୍ୱର ମନ୍ଦିର ନିକଟରେ ଦେଖିବାକୁ ମିଳେ । ଏହି ପ୍ରକାର ଅନ୍ୟ ଗୋଟିଏ ରେଖ ଦେଉଳ ଦୁଇମିଟର ମାଟିତଳୁ ଭବାନୀଶଙ୍କର ମନ୍ଦିର ପରିସରରୁ

ଉଦ୍ଧାର କରାଯାଇଛି । ଏହି କୃତିଗୁଡ଼ିକର ନିର୍ମାଣ ଶୈଳୀ ଓ ଅବକ୍ଷୟକୁ ଗଭୀରତାର ସହିତ ଅନୁଧ୍ୟାନ ଓ ଅଧ୍ୟୟନ କଲେ ଏହାର ପ୍ରାଚୀନତା ଉପଲବ୍ଧି କରି ହେବ । ଏହି ମନ୍ଦିର ଗୁଡ଼ିକର ଉଚ୍ଚତା ସାଧାରଣତଃ ମନୁଷ୍ୟ ଠାରୁ କିଞ୍ଚିତ କମ୍ କିମ୍ବା ଅଧିକ ହୋଇଥିବାରୁ ଏହା ମଧ୍ୟକୁ ପୂଜକ ପ୍ରବେଶ କରିବା ସମ୍ଭବ ହୁଏ ନାହିଁ । ତେବେ ଏହି ନିର୍ମାଣଗୁଡ଼ିକ ଖ୍ରୀ: ୨ୟ-୩ୟ ଶତାବ୍ଦୀର କୃତି ହୋଇଥିବା ସମ୍ଭବ ।

ଭଦ୍ରକ ନିକଟ ଭଦ୍ରକାଳୀଙ୍କ ମନ୍ଦିର ନିକଟରୁ ଏକ ଲମ୍ବ ପାଟପଥର ପ୍ରାପ୍ତ ହୋଇଛି । କୌଣସି ମନ୍ଦିରର ଦ୍ୱାରବନ୍ଧର ଏହି ପଥରଟିରେ ''ମହାରାଜା ଶ୍ରୀଗଣ'' ବୋଲି ପ୍ରାଚୀନ ଲିପିରେ ଉଲ୍ଲେଖ ଅଛି । ଏହି ଅକ୍ଷରର ଶୈଳୀ ଓ ରାଜାଙ୍କ ସମୟକୁ ଅନୁଶୀଳନ କରି ଲିପିତତ୍ତ୍ୱବିତ୍ ଓ ଐତିହାସିକମାନେ ମତ ଦିଅନ୍ତି ଯେ ଖ୍ରୀ: ୩ୟ ଶତାବ୍ଦୀର ଶେଷ ଭାଗରେ ନିର୍ମିତ କୌଣସି ମନ୍ଦିରର ଏହା ଅଂଶ ବିଶେଷ । କେଉଁଝର ଜିଲ୍ଲାର ଅସନପାଟ ଗ୍ରାମ ନିକଟର ଏକ ମାଟି ଓ ଇଟା ସ୍ତୂପ ମଧ୍ୟରୁ ଅଭିଲେଖଯୁକ୍ତ ଏକ ନଟରାଜ ମୂର୍ତ୍ତି ଆବିଷ୍କୃତ ହୋଇଥିଲା । ପ୍ରାପ୍ତ ଇଟା ସ୍ତୂପଟି ସୂଚନା ଦିଏଯେ, ମୂର୍ତ୍ତିଟି ଏକ ଛୋଟ ଇଟା ମନ୍ଦିର ମଧ୍ୟରେ ସ୍ଥାନିତ ହୋଇଥିଲା । ତେବେ ମୂର୍ତ୍ତି ସହିତ ଥିବା ଲିପି, ଭଞ୍ଜରାଜାଙ୍କ ନାମ ଓ ମୂର୍ତ୍ତିର କଳା ଶୈଳୀକୁ ବିଚାରକରି ଐତିହାସିକମାନେ ମତ ଦିଅନ୍ତି ଯେ ଏହା ଖ୍ରୀ: ୪ର୍ଥ ଶତାବ୍ଦୀର କୃତି । ଓଡ଼ିଶାର ଅନ୍ୟ କେତେକ ଅଞ୍ଚଳରେ ମଧ୍ୟ ପ୍ରାଚୀନ ଶୈଳୀର କେତେକ ମନ୍ଦିର ଦେଖିବାକୁ ମିଳେ । ଏହା ମଧ୍ୟରେ ଗଜପତି ଜିଲ୍ଲାର ମହେନ୍ଦ୍ରଗିରି ଠାରେ, ରୁକ୍ଷ ଭାବରେ କଟା ଯାଇଥିବା ବିଶାଳ ପଥର ଖଣ୍ଡଗୁଡ଼ିକୁ ଗୋଟିକ ଉପରେ ଗୋଟିଏ ଥୋଇ ମନ୍ଦିର ନିର୍ମାଣ କରାଯାଇଛି । ରାୟଗଡ଼ା ଜିଲ୍ଲାର ପଦ୍ମପୁର ଗ୍ରାମର ଜଗମୁଣ୍ଡା ପାହାଡ଼ ଉପରେ ଥିବା ପୀଢ଼ ଶୈଳୀର ନୀଳକଣ୍ଠେଶ୍ୱର ମନ୍ଦିରଟି ଏକ ପ୍ରାଚୀନ ଓ ପ୍ରାରମ୍ଭ ସମୟର କୃତି । କୋରାପୁଟ ଜିଲ୍ଲାର ନନ୍ଦପୁର ନିକଟ ସୁବେଇ ଠାରେ କେତୋଟି ପ୍ରାଚୀନ ଶୈଳୀର ଜୈନ ମନ୍ଦିର ରହିଛି । ଯାଜପୁରର ଦେବୀ ବିରଜାଙ୍କ ଦ୍ୱିଭୁଜା ମହିଷମର୍ଦ୍ଦିନୀ ପ୍ରତିମା ଗୁପ୍ତଯୁଗର କୃତି ବୋଲି ଐତିହାସିକମାନେ ସ୍ୱୀକାର କରନ୍ତି । ପ୍ରଥମେ ମୂର୍ତ୍ତିଟି ନିକଟସ୍ଥ କଳସପୁର ଗ୍ରାମର ଏକ ଛୋଟ ଇଟା ମନ୍ଦିର ମଧ୍ୟରେ ସ୍ଥାପିତ ହୋଇଥିବାର ସୂଚନା ମିଳେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଗୁପ୍ତଯୁଗ ଅର୍ଥାତ



ନୀଳକଣ୍ଠେଶ୍ୱର ମନ୍ଦିର,
ପଦ୍ମପୁର, ରାୟାଗଡ଼ା


ଭୀମ ମନ୍ଦିର , ମହେନ୍ଦ୍ରଗିରି


ଗୁପ୍ତଯୁଗର ମନ୍ଦିର ,
ଭବାନୀପୁର, ଜଗତସିଂହପୁର


ନମୁନା ମନ୍ଦିର, କୁଣ୍ଡେଶ୍ୱର

ଖ୍ରୀ:୪ର୍ଥ-୫ମ ଶତାବ୍ଦୀ ବେଳକୁ ଉତ୍ତର ଭାରତର ମନ୍ଦିର ଗୁଡ଼ିକ ସାଧାରଣତଃ ସରଳ ବର୍ଗାକାର ଗର୍ଭଗୃହ ଓ ସମତଳ ଛାତ ହୋଇଥିବା ବେଳେ କଳିଙ୍ଗର ଶିଳ୍ପୀମାନେ ରଥକ ଓ ଶିଖରଯୁକ୍ତ ମନ୍ଦିରର ପରିକଳ୍ପନା ଓ ନିର୍ମାଣ କରିସାରିଥିଲେ । ପୁନଶ୍ଚ କେବଳ ମଣ୍ଡନକୃତି ବ୍ୟତୀତ, କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ଗୁପ୍ତ ଶୈଳୀର ପ୍ରଭାବ ପରିଲକ୍ଷିତ ହୁଏ ନାହିଁ । କଳିଙ୍ଗ ନିର୍ମାଣ ଶୈଳୀ ସହିତ ଗୁପ୍ତଯୁଗର କାରୁକଳାଯୁକ୍ତ ଏକ ଛୋଟ ତ୍ରିରଥ ରେଖ ଦେଉଳ ଜଗତସିଂହପୁର ନିକଟ ଭବାନୀପୁର ଗ୍ରାମରୁ, ଦୁଇ ମିଟର ମାଟିତଳୁ ଉଦ୍ଧାର କରାଯାଇଛି । ଖ୍ରୀ: ୪ର୍ଥ-୫ମ ଶତାବ୍ଦୀର ଏହା ଏକ ଗୁରୁତ୍ୱପୂର୍ଣ୍ଣ କୃତି ବୋଲି ପ୍ରତ୍ନତତ୍ତ୍ୱବିତ୍‌ମାନେ ମନେକରନ୍ତି ।

ଖ୍ରୀ: ୬ଷ୍ଠ-୭ମ ଶତାବ୍ଦୀର ପ୍ରଶସ୍ତ ଗର୍ଭଗୃହ ଓ ମଧ୍ୟମ ଉଚ୍ଚତା ବିଶିଷ୍ଟ କାରୁକଳାପୂର୍ଣ୍ଣ ମନ୍ଦିର ଗୁଡ଼ିକ ନିର୍ମାଣ ପୂର୍ବରୁ, ମଣ୍ଡନକୃତିର ପ୍ରୟୋଗକୁ ନେଇ ପରୀକ୍ଷା ନିରୀକ୍ଷା କରାଯାଇଥିବା କେତୋଟି ଅପେକ୍ଷାକୃତ, କମ୍ ଉଚ୍ଚତା ବିଶିଷ୍ଟ ରେଖଦେଉଳ ଦେଖାଯାଏ । ଏହା ମଧ୍ୟରେ ଗୌରୀ-ଶଙ୍କର, ଗଣେଶଙ୍କ ମନ୍ଦିର ଅନ୍ୟତମ । ଏହା ପୁରୁଣା ଭୁବନେଶ୍ୱର ମୁଖ୍ୟରାସ୍ତା ଉପରେ ତଥା ଲିଙ୍ଗରାଜ ମନ୍ଦିରର ଉତ୍ତର-ପୂର୍ବ କୋଣରେ ଅବସ୍ଥିତ । ଏହି ପ୍ରାଚୀନ ଦେଉଳଟିର ପାଭାଗ ଓ ଗଣ୍ଡିର କେତେକାଂଶ ଭୂମିପତନର ନିମ୍ନରେ ରହିଥିବା ବେଳେ ଅନ୍ୟ ଅର୍ଦ୍ଧଭାଗ ଭୂମି ଉପରେ ଦେଖାଯାଏ । ଏହାର ନିର୍ମାଣ, ପଥର ଯୋଡ଼େଇ ଓ କାରୁକଳା ଅପରିପକ୍ୱ । ସର୍ବତ୍ର ବିକଶିତ ମନ୍ଦିରମାନଙ୍କ ଗଣ୍ଡିର କନିକପାଗରେ ପାଞ୍ଚଗୋଟି ଭୂମିଅଁଳା ଦେଖା ଯାଉଥିବା ବେଳେ ଏଠାରେ କେବଳ ତିନିଗୋଟି ରହିଛି । ଅର୍ଥାତ ଏହା ପ୍ରଥମ ପର୍ଯ୍ୟାୟର ଏକ ପରୀକ୍ଷାମୂଳକ ନିର୍ମାଣ ଅଟେ ।

ମଣ୍ଡନକୃତି ପ୍ରୟୋଗକୁ ନେଇ ନିର୍ମିତ କେତୋଟି ନମୂନା ମନ୍ଦିର ମଧ୍ୟରେ ଭୁବନେଶ୍ୱରର ଯମେଶ୍ୱର ଶିବ ମନ୍ଦିର ପରିସରରେ ପ୍ରାୟ ଦେଢ଼ ମିଟର ମାଟି ତଳେ ରହିଥିବା ଏକ ସୁନ୍ଦର ରେଖ ଦେଉଳ ଅନ୍ୟତମ । ଜଗତସିଂପୁର ନିକଟ କୁଣ୍ଡେଶ୍ୱର ଗ୍ରାମର, ତ୍ରିଲୋଚନେଶ୍ୱର ମନ୍ଦିର ପରିସରରେ ମଧ୍ୟ ପରୀକ୍ଷାମୂଳକ ଭାବେ ନିର୍ମିତ ହୋଇଥିବା ଏକାଧିକ ଛୋଟ ନମୂନାମନ୍ଦିର ଦେଖିବାକୁ ମିଳେ । ଭୁବନେଶ୍ୱର ଓ ତା'ର ଆଖପାଖ ଅଞ୍ଚଳ ବ୍ୟତୀତ ଓଡ଼ିଶାର ଅନ୍ୟ କେତେକ ସ୍ଥାନରେ ଖ୍ରୀ: ୬ଷ୍ଠ-୭ମ ଶତାବ୍ଦୀ ପୂର୍ବରୁ ନିର୍ମିତ କଳିଙ୍ଗ ମନ୍ଦିର ସ୍ଥାପତ୍ୟର ପ୍ରତ୍ନାବଶେଷମାନ ରହିଛି । ଏଗୁଡ଼ିକର ବିଧିବଦ୍ଧ ଅନୁସନ୍ଧାନ, ଖନନ, ଅଧ୍ୟୟନ ଓ ଗବେଷଣା ହୋଇପାରିଲେ, ଓଡ଼ିଶା ଇତିହାସରେ ଅନ୍ଧକାର ଯୁଗ ବୋଲି କୁହା ଯାଉଥିବା, ଅଶୋକ ଓ ଖାରବେଳଙ୍କ ପରବର୍ତ୍ତୀ ସମୟର ଇତିହାସ ଓ ପ୍ରତ୍ନତତ୍ତ୍ୱରେ ଏକ ନବଦିଗନ୍ତ ଉନ୍ମୋଚିତ ହୋଇ ପାରିବ ।

---

* ଶ୍ରୀଜଗନ୍ନାଥ, ପତ୍ରିକା, ଜାନୁଆରୀ-ଜୁନ୍ ୧୯୯୯ ସଂଖ୍ୟାରେ ପ୍ରକାଶିତ ଲେଖକଙ୍କ ସ୍ୱତନ୍ତ୍ର ପ୍ରବନ୍ଧ ।



# ମନ୍ଦିର ନଗରୀ ଭୁବନେଶ୍ୱର



ଓଡ଼ିଶା କାହିଁକି ଭାରତର ଏକ ପ୍ରାଚୀନ ଐତିହ୍ୟ ସମ୍ପନ୍ନ ସ୍ଥାନ ଭାବେ ଭୁବନେଶ୍ୱରର ଖ୍ୟାତି ରହିଛି । ଆଶୋକଙ୍କ କଳିଙ୍ଗ ଆକ୍ରମଣ ଅର୍ଥାତ ଖ୍ରୀ:ପୂ: ୨୬୧ ବେଳକୁ ଏହି ଅଞ୍ଚଳ ତୋଷାଳୀ ନାମରେ ପରିଚିତ ଥିଲା । ଅନ୍ୟ କେତେକ ଦୁର୍ଗ ମଧ୍ୟରେ ବର୍ତ୍ତମାନର ଶିଶୁପାଳଗଡ଼ ଥିଲା ତୋଷାଳୀର ମୁଖ୍ୟ ଦୁର୍ଗ ଓ ପ୍ରାଣକେନ୍ଦ୍ର । ଏହାର ସମୃଦ୍ଧି ଓ ଖ୍ୟାତି ଯୋଗୁ, ଏହାକୁ ଯୁଦ୍ଧରେ ପରାସ୍ତ କରି ନିଜ ଶାସନାଧୀନ କରିବା ନିମନ୍ତେ ମୌର୍ଯ୍ୟ ସମ୍ରାଟ ଅଶୋକ ଇଚ୍ଛା କରିଥିବା ସ୍ୱାଭାବିକ । ଐତିହାସିକମାନେ ଅନୁମାନ କରନ୍ତି ଯେ ଶିଶୁପାଳଗଡ଼ର ଅନତି ଦୂରରେ ଧଉଳି ପାହାଡ଼ ପାଦଦେଶ ଓ ଦୟାନଦୀ କୂଳରେ କଳିଙ୍ଗ ଯୁଦ୍ଧ ହୋଇଥିଲା । ତେବେ ଶିଶୁପାଳଗଡ଼ର ଇତିହାସ ଅସ୍ପଷ୍ଟ ।

ଲିଙ୍ଗରାଜ ମନ୍ଦିରର ଦକ୍ଷିଣ-ପୂର୍ବ କୋଣରେ ଧଉଳି ପାହାଡ଼ ତଥା ଦୟା ନଦୀର ଅନତି ଦୂରରେ ଅବସ୍ଥିତ ଶିଶୁପାଳଗଡ଼ ଏକ ବର୍ଗାକାର କ୍ଷେତ୍ର ଅଟେ । ଏହାର ପ୍ରାଚୀର ଗୁଡ଼ିକ ମୁଖ୍ୟତଃ ମାଟିରେ ନିର୍ମିତ ହୋଇଥିଲେହେଁ ପ୍ରବେଶ ଦ୍ୱାର ଗୁଡ଼ିକ ମାଙ୍କଡ଼ା ପଥରରେ ନିର୍ମିତ ଓ ଅଳ୍ପ କେତେକ ସ୍ଥଳେ ଇଟାର ବ୍ୟବହାର ମଧ୍ୟ ଦେଖାଯାଏ । ପ୍ରତ୍ୟେକ ପାଖ ପ୍ରାଚୀରର ଲମ୍ବ ପ୍ରାୟ ଦେଢ଼ କିଲୋମିଟର ହୋଇଥିବା ବେଳେ, ପ୍ରତ୍ୟେକ ପାଖରେ ସମାନ ଦୂରତ୍ୱରେ ଦୁଇଟିକରି ପ୍ରବେଶ ପଥ ଥିବାରୁ ଦୁର୍ଗ ମଧ୍ୟକୁ ଚାରିପାଖ ପ୍ରାଚୀରରେ ସମୁଦାୟ ଆଠଗୋଟି ଦ୍ୱାର ଥିବା ସୂଚନା ମିଳେ । ଏହି ପ୍ରାଚୀର ଗୁଡ଼ିକର ଉଚ୍ଚତା ପ୍ରାୟ ୮ ମିଟର ଓ ପ୍ରସ୍ଥ ପ୍ରାୟ ୩୦-୩୨ ମିଟର ଥିବା ଦେଖାଯାଏ । ଗଡ଼ର ତିନି ପାର୍ଶ୍ୱକୁ ବେଷ୍ଟିତ କରି ପ୍ରବାହିତ ହେଉଥିବା ପ୍ରାଚୀନ ଗନ୍ଧବତୀ ବା ଗଙ୍ଗୁଆ ନଦୀ ସୁରକ୍ଷା ନିମିତ୍ତ ଗଡ଼ଖାଇର କାର୍ଯ୍ୟ କରୁଥିଲା । ୧୯୪୮ ମସିହାରେ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଗଡ଼ର ପଶ୍ଚିମପାର୍ଶ୍ୱ ପ୍ରାଚୀରର ଏକ ଅଂଶ, ଏକ ପ୍ରବେଶ

ଦ୍ୱାର ଓ ଗଡ଼ ମଧ୍ୟରେ ଥିବା ପ୍ରାଚୀନ ବସତିର କେତେକ ଧ୍ୱଂସାବଶେଷ ଖୋଦିତ ହୋଇଥିଲା । ଖନନରୁ ଆବିଷ୍କୃତ ନିର୍ମାଣ ଗୁଡ଼ିକୁ ଅନୁଧ୍ୟାନ କରି ପ୍ରତ୍ନତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି ଯେ ଗଡ଼ଟି ସୁଚିନ୍ତିତ ବୈଷୟିକ ଜ୍ଞାନକୌଶଳରେ ନିର୍ମିତ । ଏଠାରୁ ପ୍ରାପ୍ତ ବିଭିନ୍ନ ପ୍ରକାର ମୃଣ୍ମୟ ପାତ୍ରଖଣ୍ଡ, ଅଳଙ୍କାର, ଲୌହ ସାମଗ୍ରୀ, ଅସ୍ତ୍ରଶସ୍ତ୍ର, ମୁଦ୍ରା ଇତ୍ୟାଦି ପରୀକ୍ଷା ନିରୀକ୍ଷା କରିବା ଦ୍ୱାରା ଜଣାଯାଏ ଯେ ଏହି ଦୁର୍ଗ ଖ୍ରୀ:ପୂ: ୪ର୍ଥ ଶତାବ୍ଦୀରୁ ପ୍ରାୟ ଖ୍ରୀ: ୩ୟ ଶତାବ୍ଦୀ ପର୍ଯ୍ୟନ୍ତ ଦେଶ ବିଦେଶ ସହିତ ସମ୍ପର୍କ ରକ୍ଷା କରି ଚଳ ଚଞ୍ଚଳ ଥିଲା । ସେ ସମୟରେ ବାସଗୃହ, ଦୁର୍ଗ ପରିଖା ଇତ୍ୟାଦି ନିର୍ମାଣର ବିକାଶ ଘଟିଥିଲେ ହେଁ ଏହା ମଧ୍ୟରେ କୌଣସି ଦେବାଳୟର ପ୍ରତ୍ନାବଶେଷ ଦୃଷ୍ଟିଗୋଚର ହୁଏ ନାହିଁ । ତେବେ ପ୍ରାଚୀନ ଭାରତୀୟ ଧର୍ମଧାରଣା ତଥା ପରମ୍ପରା ଅନୁଯାୟୀ ତୋଷାଳୀ ଅଞ୍ଚଳର ସୁରକ୍ଷା ନିମିତ୍ତ ଲୋକେ ଯକ୍ଷ, ନାଗ, ନାଗୀଙ୍କ ଭଳି କେତେକ ଲୋକଦେବତାଙ୍କୁ ପୂଜାର୍ଚ୍ଚନା କରୁଥିଲେ । ଏହି ରୁକ୍ଷ ପଥର ମୂର୍ତ୍ତିଗୁଡ଼ିକ ସାଧାରଣତଃ ଜନବସତିର ଉପକଣ୍ଠରେ, ବୃକ୍ଷମୂଳେ କିମ୍ୱା ମୁକ୍ତାକାଶ ତଳେ ସ୍ଥାପିତ ହୋଇଥିଲା । ଏହି ଯକ୍ଷ ମୂର୍ତ୍ତି ଭୁବନେଶ୍ୱର ନିକଟ ପାଞ୍ଚଗାଁ ଓ, ବଡ଼ଗଡ଼ ଗ୍ରାମର ଏକ ପୋଖରୀ କୂଳରେ ଅଦ୍ୟାବଧି ପୂଜା ପାଉଥିବା ବେଳେ ଅନ୍ୟ କେତୋଟି ଖଣ୍ଡବିଖଣ୍ଡିତ ମୂର୍ତ୍ତି ନିକଟବର୍ତ୍ତୀ ଅଞ୍ଚଳରୁ ସଂଗ୍ରହ କରାଯାଇ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଭୁବନେଶ୍ୱର ନିକଟ ସୁନ୍ଦରପଦା ଗ୍ରାମରେ ସେ ସମୟର ଏକ ପ୍ରାଚୀନ ନାଗ-ନାଗୀ ଯୁଗଳମୂର୍ତ୍ତି ଗ୍ରାମ ଦେବତା ଭାବେ ପୂଜିତ ହେଉଛନ୍ତି ।

ଏହାର ପରବର୍ତ୍ତୀ ସମୟରେ ଅର୍ଥାତ୍ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀ ଓ ଖ୍ରୀ: ୧ମ ଶତାବ୍ଦୀ ମଧ୍ୟରେ କଳିଙ୍ଗର ଯଶସ୍ୱୀ ସମ୍ରାଟ, ଚେଦୀ ବଂଶୋଦ୍‌ଭବ, ମହାମେଘବାହନ ଖାରବେଳ କଳିଙ୍ଗ ତଥା ଭାରତ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରନ୍ତି । ସେ ତାଙ୍କ ସମୟରେ ଜୈନ ଧର୍ମର ପ୍ରଚାର ପ୍ରସାର ତଥା ଜୈନ ଅର୍ହତ ବା ଶ୍ରମଣମାନଙ୍କ ଆଶ୍ରୟ ନିମନ୍ତେ ଭୁବନେଶ୍ୱର ନିକଟସ୍ଥ କୁମାର ଓ କୁମାରୀ ପର୍ବତରେ ମୂର୍ତ୍ତି ଓ କାରୁକଳାଯୁକ୍ତ ଗୁମ୍ଫାମାନ ଖୋଦିତ କରାଇଥିଲେ । ବର୍ତ୍ତମାନର ଖଣ୍ଡଗିରି ଉଦୟଗିରିର ଏହି ଗୁମ୍ଫାଗୁଡ଼ିକ ଦେଖିଲେନିଃସନ୍ଦେହରେଯେ କେହି କହିବ ଯେ କଳିଙ୍ଗର ତତ୍‌କାଳୀନ ସ୍ଥପତି ଓ ଶିଳ୍ପୀମାନେ ପଥର ଖୋଦନରେ ପାରଙ୍ଗମ ଥିଲେ । ଉଦୟଗିରି ପାହାଡ଼ରେ ଥିବା ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ତାଙ୍କ ରାଜତ୍ୱ ସମୟର ବହୁ ଉଲ୍ଲେଖ ଯୋଗ୍ୟ ଘଟଣା ଓ କାର୍ଯ୍ୟ ଧାରାବାହିକ ଭାବେ ଲିପିବଦ୍ଧ ହୋଇଛି । ଏହି ଶିଳାଲେଖର ବିବରଣୀରୁ ଜଣାଯାଏ ଯେ ଖାରବେଳ ଜୈନ ଥିଲେହେଁ ଅନ୍ୟ ଧର୍ମ ଓ ବ୍ରାହ୍ମଣମାନଙ୍କ ପ୍ରତି ତାଙ୍କର ଭକ୍ତି ଓ ଶ୍ରଦ୍ଧା ଥିଲା । ସେ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ବହୁ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ସହିତ କେତେକ ଶିଖର ବା ଦେବ ମନ୍ଦିର ନିର୍ମାଣ କରାଇଥିଲେ । ପୁନଶ୍ଚ ଶିଳାଲେଖର ଶେଷ ଭାଗରେ ସେ ମନ୍ଦିରମାନଙ୍କ ସଂସ୍କାର ବା ମରାମତି କରିଥିବା ବିଷୟ ମଧ୍ୟ ଉଲ୍ଲେଖ ଅଛି । ତେବେ ସେ ସମୟରେ ଅପରିପକ୍ୱ ନିର୍ମାଣ କୌଶଳରେ ନିର୍ମିତ ମନ୍ଦିରଗୁଡ଼ିକ ଅଳ୍ପକାଳ ମଧ୍ୟରେ ଭାଙ୍ଗିପଡ଼ିଥିବା ସମ୍ଭବ । ଭୁବନେଶ୍ୱର ଉପକଣ୍ଠ ପଟିଆ ନିକଟରେ ବିଭିନ୍ନ ଆକାରର ଅସମାନ କଟା ପଥରକୁ ନେଇ ନିର୍ମିତ ଶିଖରଚଣ୍ଡୀଙ୍କ ଛୋଟ ମନ୍ଦିରଟି ଖାରବେଳଙ୍କ ସମୟର କୃତି ହୋଇଥିବା ସମ୍ଭବ । ଖଣ୍ଡଗିରି ଉଦୟଗିରି ନିକଟ ବୁଆଳିଗଡ଼ର ଜଙ୍ଗଲ ମଧ୍ୟରେ ଅପରିପକ୍ୱ ଶୈଳୀର କେତେକ ଛୋଟ ଛୋଟ ଭଗ୍ନ ମନ୍ଦିର ଦେଖାଯାଏ । ଏହା ବ୍ୟତୀତ ଭୁବନେଶ୍ୱରରେ କେତେକ ପ୍ରାଚୀନ ମନ୍ଦିରରେ ପୂର୍ବ ନିର୍ମିତ

କେତେକ ମନ୍ଦିରର ଖଣ୍ଡ ବିଖଣ୍ଡିତ ଅଂଶ ବ୍ୟବହାର ହୋଇଥିବା ଲକ୍ଷ୍ୟକରାଯାଏ । ଏଣୁ ଖାରବେଳଙ୍କ କିଛିତ ପୂର୍ବରୁ ଅର୍ଥାତ୍ ଅଶୋକଙ୍କ ଶାସନ ଅନ୍ତେ ଭୁବନେଶ୍ୱରରେ ମନ୍ଦିର ନିର୍ମାଣ ପ୍ରକ୍ରିୟା ଆରମ୍ଭ ହୋଇଥିବା ସୂଚନା ମିଳେ ।

ଖାରବେଳଙ୍କ ଅନ୍ତେ ତାଙ୍କର କୌଣସି ଉତ୍ତରାଧିକାରୀଙ୍କ ଉଲ୍ଲେଖଯୋଗ୍ୟ କାର୍ଯ୍ୟକଳାପର ସୂଚନା ମିଳେ ନାହିଁ । ଏପରିକି ଖ୍ରୀ: ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ ଇତିହାସ ଅନ୍ଧକାର ଓ ଅସ୍ପଷ୍ଟ । ତେବେ ଏହି ସମୟରେ ଭୁବନେଶ୍ୱର ଅଞ୍ଚଳରେ ବୌଦ୍ଧ ଓ ଜୈନ ଧର୍ମ ରାଜକୀୟ ପୃଷ୍ଠପୋଷକତା ବିନା ଦୁର୍ବଳ ହୋଇପଡ଼ିଥିବା ବେଳେ ପାଶୁପତ ଗୋଷ୍ଠୀର ଶୈବ ସନ୍ୟାସୀମାନେ ଶୈବ ତତ୍ତ୍ୱର ପ୍ରଚାର ଓ ପ୍ରସାର ନିମନ୍ତେ ସକ୍ରିୟ ହୋଇଥିବା ସ୍ୱାଭାବିକ । ଏମାନଙ୍କ ପ୍ରଚେଷ୍ଟାରେ ଭୁବନେଶ୍ୱରର କେନ୍ଦ୍ରବିନ୍ଦୁ, ବିନ୍ଦୁସାଗର ଚତୁଃପାର୍ଶ୍ୱରେ, ମୁକ୍ତାକାଶ ତଳେ କିମ୍ବା ବିଭିନ୍ନ ବୃକ୍ଷମୂଳେ ଶିବଲିଙ୍ଗମାନ ସ୍ଥାପନ କରାଯାଇଥିଲା । କେତେକ ଶିବ ଲିଙ୍ଗ ଓ ଶିବଙ୍କ ଆବକ୍ଷ ପ୍ରତିମାଗୁଡ଼ିକୁ ଛାୟା ପ୍ରଦାନ ନିମନ୍ତେ ଛୋଟ ଛୋଟ ମନ୍ଦିର ମଧ ନିର୍ମିତ ହୋଇଥିଲା । ଏଥି ମଧ୍ୟରୁ କେତେକର ବିଭିନ୍ନ ଅଂଶ ପରବର୍ତ୍ତୀ ସମୟର ନିର୍ମିତ କେତେକ ମନ୍ଦିରରେ ବ୍ୟବହାର ହୋଇଥିବା ବେଳେ ଅନ୍ୟ କେତେକ ପ୍ରତ୍ନାବଶେଷ ଭୁବନେଶ୍ୱରର ବିଭିନ୍ନ ସ୍ଥାନରେ ଅବହେଳିତ ଅବସ୍ଥାରେ ଦେଖିବାକୁ ମିଳେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ କ୍ଷେତ୍ରର ମୁଖ୍ୟ ଶିବଲିଙ୍ଗ ଏକ ଆମ୍ରବୃକ୍ଷମୂଳେ ସ୍ଥାପିତ ହୋଇଥିବାରୁ ଭୁବନେଶ୍ୱରର ତତ୍କାଳୀନ ନାମ ଥିଲା 'ଏକାମ୍ରକ୍ଷେତ୍ର' ।

ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀ ବେଳକୁ ମନ୍ଦିର ସ୍ଥାପତ୍ୟର ବିକାଶ ଘଟି ମଧ୍ୟମ ଉଚ୍ଚତା ବିଶିଷ୍ଟ, କାରୁକଳା ଓ ମୂର୍ତ୍ତିକଳା ଯୁକ୍ତ କେତେକ ମନ୍ଦିର ନିର୍ମିତ ହୋଇଥିଲା । ଏହି ସମୟରେ କଳିଙ୍ଗର ମଧ୍ୟଭାଗ 'କଙ୍ଗୋଦ ମଣ୍ଡଳ' ନାମରେ ପରିଚିତ ଥିଲା । ଏହା ଦକ୍ଷିଣରେ ଋଷିକୁଲ୍ୟା ନଦୀଠାରୁ ଉତ୍ତରରେ ମହାନଦୀ କିମ୍ବା ବୈତରଣୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିବା ବେଳେ ଏହାର ତତ୍କାଳୀନ ଶାସକ ଥିଲେ ପ୍ରଖ୍ୟାତ ଶୈଳୋଦ୍ଭବ ରାଜବଂଶ । ଏମାନଙ୍କ ଦ୍ୱାରା ପ୍ରଦତ୍ତ ପ୍ରାୟ ୨୦ ଗୋଟି ତାମ୍ରପତ୍ରଲେଖ ଦାନପତ୍ରରୁ ସୂଚନା ମିଳେ ଯେ ଏମାନେ ପ୍ରାୟ ଖ୍ରୀ: ୬ଷ୍ଠ ଶତାବ୍ଦୀ ଠାରୁ ଖ୍ରୀ: ୭୫୦ ସାଲ ପର୍ଯ୍ୟନ୍ତ ଶାସନ କରିଥିଲେ ଏବଂ ଶୈବଧର୍ମ ପ୍ରତି ଅନୁରକ୍ତ ଥିଲେ । ଏମାନଙ୍କ ରାଜଧାନୀ ପୁରୀ ଓ ଗଞ୍ଜାମ ଜିଲ୍ଲାର ମଧ୍ୟବର୍ତ୍ତୀ, ଶାଳିମା ନଦୀକୂଳର ବଙ୍କାଡ଼ ଅଞ୍ଚଳ ଥିବା ଜଣାଯାଏ । ଏହି ସ୍ଥାନରେ ଜନବସତି ତଥା ଇଟା ଓ ପଥରରେ ନିର୍ମିତ କେତେକ ଶିବ ମନ୍ଦିରର ପ୍ରତ୍ନାବଶେଷ ବର୍ତ୍ତମାନ ସୁଦ୍ଧା ଦେଖାଯାଏ । ପ୍ରଖ୍ୟାତ୍ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ, ଭାରତ ଭ୍ରମଣରେ ଆସି ପ୍ରାୟ ଖ୍ରୀ:୬୩୮ ସାଲରେ କଙ୍ଗୋଦ୍ ଅଞ୍ଚଳରେ ପହଞ୍ଚି ଥିଲେ । ସେତେବେଳେ ସେ ଏହି ଅଞ୍ଚଳରେ ଏକଶହ ହିନ୍ଦୁ ମନ୍ଦିର, ଦଶହଜାର ଜୈନ ଧର୍ମାବଲମ୍ବୀଙ୍କୁ ଦେଖିଥିବା ବେଳେ କୌଣସି ବୌଦ୍ଧ କୀର୍ତ୍ତି ଦେଖିନଥିବା ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କରିଛନ୍ତି । ତେବେ ଏଥିମଧ୍ୟରୁ କେତେକ ମନ୍ଦିର ଶୈଳୋଦ୍ଭବ ରାଜବଂଶ ରାଜତ୍ୱ ସମୟରେ ହୋଇଥିବା ବେଳେ ଅନ୍ୟ କେତେକ ଏହାର ପୂର୍ବବର୍ତ୍ତୀ ସମୟରେ ନିର୍ମିତ ହୋଇଥିବା ଅବଶ୍ୟମ୍ଭାବୀ । ତେବେ ଶୈଳୋଦ୍ଭବ ରାଜତ୍ୱ ସମୟର ଭୁବନେଶ୍ୱରରେ ଥିବା କେତୋଟି ଉଲ୍ଲେଖଯୋଗ୍ୟ ମନ୍ଦିରର ନାମ ଓ ତା'ର ନିର୍ମାଣ ସମୟ ନିମ୍ନରେ ଦିଆଗଲା ।

| ମନ୍ଦିରର ନାମ | | ସମୟ |
|---|---|---|
| ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ | - | ଆନୁମାନିକ : ୫୭୫ ଖ୍ରୀଷ୍ଟାବ୍ଦ |
| ସ୍ୱର୍ଣ୍ଣଜଳେଶ୍ୱର ମନ୍ଦିର | - | ଆନୁମାନିକ : ୬୦୦ ଖ୍ରୀଷ୍ଟାବ୍ଦ |
| ପରଶୁରାମେଶ୍ୱର ମନ୍ଦିର | - | ଆନୁମାନିକ : ୬୫୦ ଖ୍ରୀଷ୍ଟାବ୍ଦ |
| ପଶ୍ଚିମେଶ୍ୱର ମନ୍ଦିର | - | ଆନୁମାନିକ : ୬୫୦ ଖ୍ରୀଷ୍ଟାବ୍ଦ |
| ଉତ୍ତରେଶ୍ୱର ମନ୍ଦିର | - | ଆନୁମାନିକ : ୭୦୦ ଖ୍ରୀଷ୍ଟାବ୍ଦ |
| ମୋହିନୀ ମନ୍ଦିର | - | ଆନୁମାନିକ : ୭୦୦ ଖ୍ରୀଷ୍ଟାବ୍ଦ |
| ତାଳେଶ୍ୱର ମନ୍ଦିର | - | ଆନୁମାନିକ : ୭୦୦ ଖ୍ରୀଷ୍ଟାବ୍ଦ |

ଶୈଳୋଦ୍‌ଭବ ରାଜତ୍ୱର ଅନ୍ତିମ ସମୟର ଅଳ୍ପକାଳ ପୂର୍ବରୁ ଅର୍ଥାତ୍ ଖ୍ରୀ: ୭୩୬ ସାଲ ବେଳକୁ ଭୌମକର ରାଜବଂଶ ସକ୍ରିୟ ହୋଇ ଉଠିଥିଲେ । ସେମାନେ ଶୈଳୋଦ୍‌ଭବ ବଂଶୀୟ ଧର୍ମରାଜଙ୍କୁ ପରାସ୍ତ କରି ଖ୍ରୀ: ୭୫୦ ସାଲରେ ଉତ୍ତରାଜ୍ୟର ଶାସନ ଭାର ଗ୍ରହଣ କଲେ । ଯାଜପୁର ଏମାନଙ୍କ ରାଜଧାନୀ ଥିଲା । ଏହା ଏହି ଅଞ୍ଚଳରୁ ପ୍ରାପ୍ତ ସେମାନଙ୍କ ଦାନପତ୍ରମାନଙ୍କରୁ ସୂଚନା ମିଳେ । ଭୌମ ରାଜବଂଶ ପ୍ରଥମେ ବୌଦ୍ଧ ଥିବାବେଳେ ପରବର୍ତ୍ତୀ ସମୟର କେତେକ ରାଜା ଓ ରାଣୀ ଶୈବ ଓ ଶାକ୍ତ ଧର୍ମଧାରା ପ୍ରତି ଅନୁରକ୍ତ ହୋଇଥିଲେ । ଫଳ ସ୍ୱରୂପ ଏମାନଙ୍କ ଏକଶହ ବର୍ଷ ଶାସନ କାଳ ମଧ୍ୟରେ ଯାଜପୁର ଓ ଭୁବନେଶ୍ୱର ସମେତ ଅନ୍ୟ କେତେକ ଅଞ୍ଚଳରେ ବୌଦ୍ଧ ବିହାର, ଶିବ ଓ ଶକ୍ତି ମନ୍ଦିର ଗଢ଼ି ଉଠିଥିଲା । ଏହା ମଧ୍ୟରେ ଯାଜପୁରର ହଂସେଶ୍ୱର ମନ୍ଦିର ଓ ଉଦୟଗିରି, ଲଳିତଗିରି ଓ ରତ୍ନଗିରିର ବୌଦ୍ଧ ବିହାର ଗୁଡ଼ିକ ଅନ୍ୟତମ । ଭୁବନେଶ୍ୱରରେ ଗଢ଼ି ଉଠିଥିବା ଏ ସମୟର କେତେକ କାରୁକଳା ଓ ମୂର୍ତ୍ତିକଳା ପୂର୍ଣ୍ଣ ଶିବାଳୟ ଓ ଶକ୍ତି ମନ୍ଦିରର ନାମ ନିମ୍ନରେ ଦିଆଗଲା ।

| | |
|---|---|
| ମାର୍କଣ୍ଡେଶ୍ୱର ମନ୍ଦିର | ଆନୁମାନିକ, ୭୫୦ ଖ୍ରୀଷ୍ଟାବ୍ଦ |
| ଶିଶିରେଶ୍ୱର ମନ୍ଦିର | ଆନୁମାନିକ, ୭୫୦ ଖ୍ରୀଷ୍ଟାବ୍ଦ |
| ବୋଇତାଳ ଦେଉଳ | ଆନୁମାନିକ, ୭୫୦ ଖ୍ରୀଷ୍ଟାବ୍ଦ |
| ବ୍ୟୋମକେଶ୍ୱର ମନ୍ଦିର | ଆନୁମାନିକ, ୯୦୦ ଖ୍ରୀଷ୍ଟାବ୍ଦ |
| ତୀର୍ଥେଶ୍ୱର ମନ୍ଦିର | ଆନୁମାନିକ, ୯୫୦ ଖ୍ରୀଷ୍ଟାବ୍ଦ |

ସୋମବଂଶୀମାନେ ପ୍ରଥମେ ଖ୍ରୀ: ୭ମ-୮ମ ଶତାବ୍ଦୀରେ ତାଙ୍କ ସ୍ୱସ୍ଥାନ କୋଶଳ ବା ଓଡ଼ିଶାର ପଶ୍ଚିମାଞ୍ଚଳରେ ରାଜ୍ୟ ସ୍ଥାପନ କରିଥିଲେ । ଏହି ବଂଶର ପ୍ରଥମ ରାଜା ମହାଭବଗୁପ୍ତ ଜନ୍ମେଜୟ ଓ ଅନ୍ୟ କେତେକ ଶାସକଙ୍କ ରାଜଧାନୀ ଥିଲା ବିନିଥପୁର ବା ବର୍ତ୍ତମାନର ସୋନପୁର ନିକଟ ବିନିକା ଗ୍ରାମ । ଏହାର ପରବର୍ତ୍ତୀ ସମୟ ଅର୍ଥାତ ପ୍ରାୟ ଖ୍ରୀ:୧୦ମ ଶତାବ୍ଦୀ ବେଳକୁ ଏମାନେ ରାଜ୍ୟ ବିସ୍ତାର କରି ଓଡ଼ିଶାର ପୂର୍ବାଞ୍ଚଳର ଶାସନ ଭାର ଗ୍ରହଣ କଲେ । ଏଠାରେ ସେମାନେ କେଶରୀ ବଂଶ ଭାବେ ଅଧିକ ପରିଚିତ ହୋଇଥିବା ବେଳେ ବର୍ତ୍ତମାନର ଚୌଦ୍ୱାର ଓ ଯାଜପୁର ଏମାନଙ୍କ ରାଜଧାନୀ ଥିଲା । ଏହି ରାଜବଂଶ ସମୟରେ ଓଡ଼ିଶାର ପଶ୍ଚିମାଞ୍ଚଳରେ ମଧ୍ୟଭାରତୀୟ ଶୈଳୀ ଦ୍ୱାରା ପ୍ରଭାବିତ କେତେକ

ମନ୍ଦିର ନିର୍ମିତ ହୋଇଥିବା ବେଳେ ଉପକୂଳ ଅଞ୍ଚଳରେ କଳିଙ୍ଗ ସ୍ଥାପତ୍ୟ ଶୈଳୀର ଉଲ୍ଲେଖଯୋଗ୍ୟ ବିକାଶ ଘଟିଥିଲା । ତେବେ ପଶ୍ଚିମାଞ୍ଚଳରେ ମଧ୍ୟ କଳିଙ୍ଗ ଶୈଳୀର କେତେକ ମନ୍ଦିର ଦେଖାଯାଏ । ଏମାନଙ୍କ ରାଜତ୍ୱ ସମୟ ଅର୍ଥାତ୍ ଖ୍ରୀ:୧୧୧୦ ମସିହା ମଧ୍ୟରେ ଭୁବନେଶ୍ୱରରେ ଗଢ଼ିଉଠିଥିବା କେତୋଟି କୀର୍ତ୍ତି ମଧ୍ୟରେ ଉଦ୍ୟୋତ କେଶରୀଙ୍କ ମାତା କୋଳାବତୀ ଦେବୀଙ୍କ ଦ୍ୱାରା ନିର୍ମିତ ବ୍ରହ୍ମେଶ୍ୱର ମନ୍ଦିର ଓ ଯଯାତି କେଶରୀ ଓ ତାଙ୍କ ପୁତ୍ର ଲଲାଟେନ୍ଦୁ କେଶରୀଙ୍କ ଦ୍ୱାରା ନିର୍ମିତ ଲିଙ୍ଗରାଜ ମନ୍ଦିର ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ଭୁବନେଶ୍ୱରର ଅନ୍ୟ କେତୋଟି ସୋମବଂଶୀ କୀର୍ତ୍ତି ହେଉଛି :-

| | |
|---|---|
| ମୁକ୍ତେଶ୍ୱର ମନ୍ଦିର, | ଆନୁମାନିକ : ୯୫୦ ଖ୍ରୀଷ୍ଟାବ୍ଦ |
| ଗୌରୀ ମନ୍ଦିର, | ଆନୁମାନିକ : ୯୫୦ ଖ୍ରୀଷ୍ଟାବ୍ଦ |
| ଡ଼ାକରା ଭୀମେଶ୍ୱର, | ଆନୁମାନିକ : ୧୦୦୦ ଖ୍ରୀଷ୍ଟାବ୍ଦ |
| ରାଜାରାଣୀ ମନ୍ଦିର, | ଆନୁମାନିକ : ୧୦୦୦ ଖ୍ରୀଷ୍ଟାବ୍ଦ |
| ଏକାମ୍ରେଶ୍ୱର ମନ୍ଦିର, | ଆନୁମାନିକ : ୧୦୦୦ ଖ୍ରୀଷ୍ଟାବ୍ଦ |
| ମଣିଭଦ୍ରେଶ୍ୱର ମନ୍ଦିର, | ଆନୁମାନିକ : ୧୦୦୦ ଖ୍ରୀଷ୍ଟାବ୍ଦ |
| ବ୍ରହ୍ମେଶ୍ୱର ମନ୍ଦିର, | ଆନୁମାନିକ :୧୦୬୦ ଖ୍ରୀଷ୍ଟାବ୍ଦ |
| କୋଟିତୀର୍ଥେଶ୍ୱର ମନ୍ଦିର | ଆନୁମାନିକ :୧୧୦୦ ଖ୍ରୀଷ୍ଟାବ୍ଦ |
| ସିଦ୍ଧେଶ୍ୱର ମନ୍ଦିର | ଆନୁମାନିକ :୧୧୦୦ ଖ୍ରୀଷ୍ଟାବ୍ଦ |
| ଲିଙ୍ଗରାଜ ମନ୍ଦିର, | ଆନୁମାନିକ :୧୧୬୦ଖ୍ରୀଷ୍ଟାବ୍ଦ |
| ବାଲୁକେଶ୍ୱର ମନ୍ଦିର, | ଆନୁମାନିକ :୧୧୭୦ ଖ୍ରୀଷ୍ଟାବ୍ଦ |

ପୂର୍ବେ ଦକ୍ଷିଣର ଗୋଦାବରୀ ନଦୀ ଠାରୁ ଋଷିକୂଲ୍ୟା ନଦୀ ପର୍ଯ୍ୟନ୍ତ ଅଞ୍ଚଳ ମୁଖ୍ୟତଃ କଳିଙ୍ଗ ନାମରେ ପରିଚିତ ଥିଲା । ପୂର୍ବ-ଗଙ୍ଗବଂଶୀ ରାଜାମାନେ ଖ୍ରୀ: ୫ମ ଶତାବ୍ଦୀରୁ ଏହି ଅଞ୍ଚଳରେ ରାଜତ୍ୱ କରୁଥିବା ସୂଚନା ମିଳେ । ସେତେବେଳେ ଏମାନଙ୍କ ରାଜଧାନୀ ଥିଲା ମୁଖଲିଙ୍ଗମ୍ ଓ ପାରଳାଖେମୁଣ୍ଡି ନିକଟ କଳିଙ୍ଗନଗର । ପରବର୍ତ୍ତୀ ସମୟ ଅର୍ଥାତ୍ ଖ୍ରୀ : ୧୨ଶ ଶତାବ୍ଦୀର ପ୍ରାରମ୍ଭରେ ବୋଧହୁଏ ଏମାନଙ୍କ ବଂଶଧରମାନେ ସୋମବଂଶୀମାନଙ୍କୁ ପରାସ୍ତକରି ଉତ୍କଳଦେଶର ଶାସନ ଭାର ଗ୍ରହଣ କରିଥିବା ବେଳେ ଏମାନଙ୍କ ମୁଖ୍ୟ ରାଜଧାନୀ ଥିଲା କଟକ । ଏମାନଙ୍କ ରାଜତ୍ୱ ସମୟ ପ୍ରାୟ ୩୫୦ ବର୍ଷ (ଖ୍ରୀ: ୧୧୧୭-୧୪୩୫ସାଲ) ମଧ୍ୟରେ ଓଡ଼ିଶାର ଧର୍ମ, କଳା ଓ ସଂସ୍କୃତିର ଚରମ ବିକାଶ ଘଟିଥିବା ଲକ୍ଷ୍ୟ କରାଯାଏ । ଗଙ୍ଗମାନେ ମୁଖ୍ୟତଃ ବୈଷ୍ଣବ ଥିଲେହେଁ ଶୈବ ଓ ସୌର ପୂଜା ପ୍ରତି ଅନୁରକ୍ତ ଥିଲେ । ଏହାର ଫଳ ସ୍ୱରୂପ ଓ ଅନନ୍ତବର୍ମନ୍ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର ଓ ଲକ୍ଷ୍ମୀ ମନ୍ଦିର, ନରସିଂହଦେବ-୧ମଙ୍କ ଦ୍ୱାରା କୋଣାର୍କର ସୂର୍ଯ୍ୟ ମନ୍ଦିର ଓ ଅନଙ୍ଗଭୀମ ଦେବ-୩ୟଙ୍କ କନ୍ୟା ଚନ୍ଦ୍ରାଦେବୀଙ୍କ ଦ୍ୱାରା ଖ୍ରୀ: ୧୨୭୮ ସାଲରେ ଭୁବନେଶ୍ୱରର ଅନନ୍ତ-ବାସୁଦେବ ମନ୍ଦିର ଗଢ଼ି ଉଠିଥିଲା। ଏହି ପ୍ରଖ୍ୟାତ ମନ୍ଦିର ଗୁଡ଼ିକ ବ୍ୟତୀତ ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେକ ଶିବ ଓ ବିଷ୍ଣୁ ମନ୍ଦିର ମଧ୍ୟ ଦେଖାଯାଏ । ତେବେ ଗଙ୍ଗବଂଶ ରାଜତ୍ୱକାଳୀନ ଭୁବନେଶ୍ୱରର ଅନ୍ୟ କେତେକ ମନ୍ଦିର ହେଲା :-

| | |
|---|---|
| ପାର୍ବତୀ ମନ୍ଦିର | ଆନୁମାନିକ, ୧୧୩୦ ଖ୍ରୀଷ୍ଟାବ୍ଦ |
| କେଦାରେଶ୍ୱର ମନ୍ଦିର, | ଆନୁମାନିକ, ୧୧୭୫ ଖ୍ରୀଷ୍ଟାବ୍ଦ |
| ରାମେଶ୍ୱର ମନ୍ଦିର | ଆନୁମାନିକ, ୧୧୭୫ ଖ୍ରୀଷ୍ଟାବ୍ଦ |
| ଭାସ୍କରେଶ୍ୱର ମନ୍ଦିର | ଆନୁମାନିକ, ୧୧୭୫ ଖ୍ରୀଷ୍ଟାବ୍ଦ |
| ଯମେଶ୍ୱର ଚିତ୍ରକାରିଣୀ, | |
| ବରୁଣେଶ୍ୱର, ବକ୍ରେଶ୍ୱର, | ଆନୁମାନିକ, ୧୨୭୫ ଖ୍ରୀଷ୍ଟାବ୍ଦ |
| ମେଘେଶ୍ୱର ମନ୍ଦିର | ଆନୁମାନିକ, ୧୧୯୫ ଖ୍ରୀଷ୍ଟାବ୍ଦ |
| ମିତ୍ରେଶ୍ୱର, ମକରେଶ୍ୱର | ଅନୁମାନିକ, ୧୩୩୫ ଖ୍ରୀଷ୍ଟାବ୍ଦ |

ଗଙ୍ଗ ରାଜତ୍ୱର ଅନ୍ତିମଚରଣ ବେଳକୁ ମୋଗଲମାନେ ଓଡ଼ିଶା ଆକ୍ରମଣ ଆରମ୍ଭ କରି ସାରିଥିଲେ । ଏହି ସମୟରେ ଗଜପତି ରାଜବଂଶ ଶାସନ ଭାର ଗ୍ରହଣ କଲେ । ଏହି ବଂଶର ପ୍ରଥମ ରାଜା କପିଳେନ୍ଦ୍ର ଦେବ ଜଣେ ପ୍ରତାପୀ ରାଜା ଥିଲେହେଁ ବହି ଆକ୍ରମଣର ଅଶାନ୍ତ ପରିସ୍ଥିତି ଯୋଗୁ ମନ୍ଦିର ନିର୍ମାଣ, କଳା ଓ ସଂସ୍କୃତିର ବିଶେଷ ଉନ୍ନତି ସାଧନ କରିପାରି ନ ଥିଲେ । ତେବେ ଏହାଙ୍କ ରାଜତ୍ୱ ସମୟ (୧୪୩୫-୧୪୬୭ ଖ୍ରୀଷ୍ଟାବ୍ଦ) ମଧ୍ୟରେ ଭୁବନେଶ୍ୱରରେ ପାପନାଶିନୀ ମନ୍ଦିର ଓ ଭୁବନେଶ୍ୱର ନିକଟ କପିଳେଶ୍ୱର ଗ୍ରାମରେ କପିଳେଶ୍ୱର ଶିବ ମନ୍ଦିର ନିର୍ମିତ ହୋଇଥିବା ଜଣାଯାଏ । ଏହାଙ୍କ ପୁତ୍ର ଗଜପତି ପୁରୁଷୋତ୍ତମ ଦେବ ଖ୍ରୀ:୧୪୬୭ରୁ ଖ୍ରୀ:୧୪୯୭ ଶତାବ୍ଦୀ ପର୍ଯ୍ୟନ୍ତ ଶାସନ କରି ଭୁବନେଶ୍ୱର ବାହାରେ କେତେକ ମନ୍ଦିର ନିର୍ମାଣ କରିଥିଲେ । ଗଜପତିମାନଙ୍କ ପରବର୍ତ୍ତୀ ସମୟରେ ଭୁବନେଶ୍ୱରରେ କୌଣସି ଉଲ୍ଲେଖଯୋଗ୍ୟ ମନ୍ଦିର ନିର୍ମିତ ହୋଇଥିବା ସୂଚନା ମିଳେ ନାହିଁ ।

ଉପରୋକ୍ତ ମୁଖ୍ୟ ମନ୍ଦିରଗୁଡ଼ିକ ବ୍ୟତୀତ ଭୁବନେଶ୍ୱରରେ ଶତାଧିକ ଛୋଟ ଓ ମଧ୍ୟମ ଆକାରର ମନ୍ଦିର ରହିଛି । ଏଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ବ୍ୟକ୍ତିବିଶେଷ ଓ ସଙ୍ଘ,ଗୋଷ୍ଠୀଦ୍ୱାରା ନିର୍ମିତ । ତେବେ ଉପରୋକ୍ତ ତଥ୍ୟମାନଙ୍କରୁ ଜଣାଯାଏ ଯେ କଳିଙ୍ଗରେ ମନ୍ଦିର ସ୍ଥାପତ୍ୟର ପ୍ରାରମ୍ଭର ପରବର୍ତ୍ତୀ ସମୟ, ଅର୍ଥାତ୍ ଖ୍ରୀ: ୬ଷ୍ଠ ଶତାବ୍ଦୀ ଠାରୁ ଖ୍ରୀ: ୧୫୦୦ ଶତାବ୍ଦୀ ପର୍ଯ୍ୟନ୍ତ, ପ୍ରାୟ ଏକ ହଜାର ବର୍ଷକାଳ ଭୁବନେଶ୍ୱରରେ ଧାରାବାହିକ ଭାବେ ବିଭିନ୍ନ ଆକାର ପ୍ରକାରର ବହୁ ମନ୍ଦିର ନିର୍ମିତ ହୋଇଛି । ଯାହାକି କଳିଙ୍ଗ ମନ୍ଦିର ସ୍ଥାପତ୍ୟର କ୍ରମବିକାଶର ସୂଚନା ଦିଏ । ଏଣୁ ଏହି ସ୍ଥାନ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ତଥା କଳାବିତ୍‌ମାନଙ୍କ ଅଧ୍ୟୟନ ନିମନ୍ତେ ଭୂସ୍ୱର୍ଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।



# କଳିଙ୍ଗର ଅନ୍ୟ ଐତିହାସିକ ଅଞ୍ଚଳ ଓ ତା'ର ମନ୍ଦିର

ପୂର୍ବୋକ୍ତ ମୁଖ୍ୟ ରାଜବଂଶ ଗୁଡ଼ିକ ବ୍ୟତୀତ କଳିଙ୍ଗର ବିଭିନ୍ନ ପ୍ରାନ୍ତରେ କେତେକ କ୍ଷୁଦ୍ର ରାଜବଂଶ ଶାସନ କରୁଥିଲେ । ପ୍ରାଚୀନ କାଳରେ ଏଥିରୁ କେତେକ ଅଞ୍ଚଳ 'ମଣ୍ଡଳ ରାଜ୍ୟ' ଭାବେ ସୂଚିତ ହେଉଥିଲା । ପରିସ୍ଥିତି ଅନୁସାରେ ଏହାର ଶାସକମାନେ କରଦ କିମ୍ବା ସ୍ୱାଧୀନ ଭାବେ ରାଜ୍ୟ ଶାସନ କରୁଥିବା ବେଳେ ରାଜ୍ୟର ସୀମା ମଧ୍ୟ ସଙ୍କୁଚିତ କିମ୍ବା ବିସ୍ତାରିତ ହେଉଥିଲା । ଏଣୁ ଏସବୁ ରାଜ୍ୟର ସଠିକ ସୀମା ନିର୍ଦ୍ଧାରଣ କଷ୍ଟସାଧ୍ୟ ବ୍ୟାପାର । ଏହିପରି କେତେକ ମଣ୍ଡଳରାଜ୍ୟର ସୂଚନା ମଧ୍ୟଭାରତର ଇତିହାସରେ ମଧ୍ୟ ଦେଖିବାକୁ ମିଳେ । ତେବେ ଓଡ଼ିଶାର ଏହି ରାଜ୍ୟମାନଙ୍କରେ ଗଢ଼ି ଉଠିଥିବା କେତେକ ମୁଖ୍ୟ ମନ୍ଦିର କିମ୍ବା ମନ୍ଦିରର ପ୍ରତ୍ନାବଶେଷ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦିଆଗଲା ।

**କଙ୍ଗୋଦ ମଣ୍ଡଳ :** ଏହା ଶୈଳୋଦ୍ଭବ ରାଜବଂଶ ଦ୍ୱାରା ଖ୍ରୀ: ୫-୬ଷ୍ଠ ଶତାବ୍ଦୀରେ ସୃଷ୍ଟି ହୋଇଥିବା ଅନୁମାନ କରାଯାଏ । ଏହି ମଣ୍ଡଳ ଦକ୍ଷିଣରେ ମହେନ୍ଦ୍ରଗିରି ଠାରୁ ଉତ୍ତରରେ ମହାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ହୁଏନ୍-ସାଂଙ୍କ ବିବରଣୀରେ ଉଲ୍ଲେଖ ଅଛି ଯେ ମୁଖ୍ୟତଃ ଏକ ପାର୍ବତ୍ୟ ଅଞ୍ଚଳ ହେଲେହେଁ ଏହାର ପୂର୍ବରେ ଦୀର୍ଘ ସମୁଦ୍ର ଓ ଚିଲିକାର ତଟ ରହିଛି । ବାଣପୁର ନିକଟ ଶାଳିଆ ନଦୀ କୂଳ କଙ୍ଗୋଦ୍ ଏହାର ରାଜଧାନୀ ଥିବା ବେଳେ ଏଠାରୁ ଏକ ପ୍ରାଚୀନ ଶିବ ମନ୍ଦିରର ଭଗ୍ନାବଶେଷ ସମେତ ବହୁ ମୂର୍ତ୍ତି ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଉଦ୍ଧାର କରାଯାଇଛି । ପୁଞ୍ଜିଆମାରେ ମଧ୍ୟ ଏକ ପ୍ରାଚୀନ ଇଟା ମନ୍ଦିର ସହିତ ବହୁ ମୂର୍ତ୍ତି ଦେଖିବାକୁ ମିଳେ । ବାଣପୁର ନିକଟ ଅଚ୍ୟୁତରାଜପୁରରୁ ଉଦ୍ଧାର କରାଯାଇଥିବା ବୌଦ୍ଧ ସ୍ତୂପ ଓ ବିହାରରୁ ବହୁ ଦୁର୍ଲ୍ଲଭ ବୌଦ୍ଧ ଓ ହିନ୍ଦୁ ଦେବ ଦେବୀଙ୍କ ଧାତବ, ବ୍ରୋଞ୍ଜ ପ୍ରତିମା ଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଅଟେ । ଏହି ମୂର୍ତ୍ତିଗୁଡ଼ିକ ବର୍ତ୍ତମାନ ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱରରେ ସଂରକ୍ଷିତ ହୋଇଛି । ମହେନ୍ଦ୍ରଗିରିର କେତୋଟି ପ୍ରାଚୀନ ମନ୍ଦିର ଏମାନଙ୍କ ସମୟର ହୋଇଥିବା ସମ୍ଭବ ।

**ଶ୍ୱେତକ ମଣ୍ଡଳ :** ଦକ୍ଷିଣାଞ୍ଚଳର, ପୂର୍ବ-ଗଙ୍ଗବଂଶର ଏକ ଶାଖା ଖ୍ରୀ:୮ମ ଶତାବ୍ଦୀରେ ଗଜପତି ଜିଲ୍ଲା, ମହେନ୍ଦ୍ରଗିରିର କେତେକାଞ୍ଚଳ, ସହିତ ଗଞ୍ଜାମ ଜିଲ୍ଲାର ସାନ ଖେମଣ୍ଡି, ବଡ଼ଖେମଣ୍ଡି, ଚିକିଟି ଓ କୃଷ୍ଣଗିରି ଅଞ୍ଚଳକୁ ନେଇ ଏହି ମଣ୍ଡଳ ଗଠନ କରିଥିଲେ । ଭୌମକରମାନଙ୍କ କରଦ ରାଜ୍ୟ ଥିବାବେଳେ ଖ୍ରୀ: ୧୦ମ ଶତାବ୍ଦୀରେ ଏମାନଙ୍କ ପତନ ଘଟିଲା । ଏହାର ତତ୍‌କାଳୀନ ରାଜଧାନୀ ଚିକିଟିରେ କୌଣସି ପ୍ରାଚୀନ ମନ୍ଦିର ନଥିବା ବେଳେ ଏହାର ନିକଟବର୍ତ୍ତୀ ଜୟନ୍ତୀପୁରରେ ୯ମ-୧୦ମ ଶତାବ୍ଦୀର ଭୁବନେଶ୍ୱର ଶିବ ମନ୍ଦିର ରହିଛି । ବରଗାଁର ନରସିଂହସ୍ୱାମୀ ମନ୍ଦିର । ପାଇକପଡାର ପାତାଳେଶ୍ୱର ଶିବ ମନ୍ଦିର ପରିସରର କେତେକ ମନ୍ଦିର ଏହି ସମୟର ବୋଲି ଅନୁମାନ କରାଯାଏ । ଏହା ବ୍ୟତୀତ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ ଜିଲ୍ଲାର ନାରାୟଣପୁରରେ କଳିଙ୍ଗ ଶୈଳୀର ଏକ ଶିବ ମନ୍ଦିର ରହିଛି ।

**କୋଦାଳକ ମଣ୍ଡଳ:** ଏହା ଶୁଲ୍କୀମାନଙ୍କ ଦ୍ୱାରା ଖ୍ରୀ: ୭ମ-୮ମ ଶତାବ୍ଦୀରେ ସ୍ଥାପିତ ହୋଇଥିବା ଜଣାଯାଏ । କେତେକ ପ୍ରାଚୀନ ରଚନା ଅନୁଯାୟୀ ଏମାନେ କୁଶାଣ, ପାର୍ଥୀଆନ, ହୁଣ୍ ମାନଙ୍କ ଭଳି ଏକ ବିଦେଶାଗତ ଜନଜାତି । ଢେଙ୍କାନାଳ ଜିଲ୍ଲା କଟକ ଓ ନୟାଗଡ଼ର କେତେକାଞ୍ଚଳ ଏହି ମଣ୍ଡଳର ଅନ୍ତର୍ଭୁକ୍ତ ଥିବାବେଳେ ତାଳଚେର ନିକଟ କୁଆଲୋ ଗ୍ରାମ ଏମାନଙ୍କ ରାଜଧାନୀ ଥିଲା । କୁଆଲୋର କନକେଶ୍ୱର ମନ୍ଦିର, ଗଙ୍ଗାଧର ପ୍ରସାଦର ପଶ୍ଚିମେଶ୍ୱର ମନ୍ଦିର, ନାଦରା-ରାମଚଣ୍ଡୀ ଓ ଏସମୟର ଅନ୍ୟ

କେତେକ ଶକ୍ତି ମନ୍ଦିର ଶୁଙ୍କାମାନେ ଶୈବ ଓ ଶାକ୍ତ ଧର୍ମ ପ୍ରତି ଅନୁରକ୍ତ ଥିବା ସୂଚନା ଦିଏ । ମହାନଦୀ କୂଳର ବୈଦ୍ୟେଶ୍ୱର, ସିଂହନାଥ, ଚମ୍ପେଶ୍ୱର, କନ୍ଦରପୁର ନିକଟ ମହାନଦୀ, ଅମଙ୍ଗେଇ କୂଦର ପଞ୍ଚିମେଶ୍ୱର ମନ୍ଦିର ଇତ୍ୟାଦି ଏହି ମଣ୍ଡଳର ଉଲ୍ଲେଖଯୋଗ୍ୟ କୀର୍ତ୍ତି । କିଛି କାଳ ସ୍ୱାଧୀନ ଭାବେ ରାଜ୍ୟ ଶାସନ କରିଥିଲେହେଁ ମୁଖ୍ୟତଃ ଏମାନେ ଭୌମକରମାନଙ୍କ କରଦ ରାଜା ଥିଲେ । ଏମାନଙ୍କ ବିଦ୍ରୋହ ମନୋଭାବ ଯୋଗୁ ଭୌମକରମାନେ ମହାନଦୀକୁ ବିଭାଜନ ରେଖାକରି ଏହି ମଣ୍ଡଳକୁ ଯମଗର୍ତ୍ତମଣ୍ଡଳ ଓ ଐରାବତମଣ୍ଡଳ ନାମରେ, ଦୁଇ ଭାଗରେ ବିଭକ୍ତ କରିଥିଲେ ।

**ଯମଗର୍ତ୍ତ ମଣ୍ଡଳ:** ପୂର୍ବୋକ୍ତ କୋଦାଳକ ମଣ୍ଡଳର ଏକ ଅଂଶ, ଯାହା ଢେଙ୍କାନାଳ ଜିଲ୍ଲାର ଉତ୍ତରାଞ୍ଚଳ ଓ କେଉଁଝର ଜିଲ୍ଲାର କେତେକ ସ୍ଥାନକୁ ନେଇ ଖ୍ରୀ: ୮ମ ଶତାବ୍ଦୀରେ ଗଠିତ । ଭୌମକରମାନେ ତୁଙ୍ଗବଂଶୀ ରାଜାଙ୍କୁ ଏଠାର ଶାସକ ଭାବେ ନିଯୁକ୍ତି ଦେଇଥିଲେ । ବ୍ରାହ୍ମଣୀ ନଦୀର ଏକ ଶାଖା ମନ୍ଦାକିନୀ ବା ବର୍ତ୍ତମାନର ମନକେରା ନଦୀ କୂଳରେ ଏମାନଙ୍କ ରାଜଧାନୀ ଥିଲା ଯମଗର୍ତ୍ତ । ବର୍ତ୍ତମାନର ଜାମରା ଗ୍ରାମ ଏହିସ୍ଥାନ ବୋଲି ଅନୁମାନ କରାଯାଏ ।

**ଐରାବତ ମଣ୍ଡଳ:** କଟକ ଜିଲ୍ଲାର ପଶ୍ଚିମ ଭାଗ ଢେଙ୍କାନାଳ ଜିଲ୍ଲାର ଦକ୍ଷିଣାଞ୍ଚଳ ଓ ନୟାଗଡ଼ର କେତେକ ସ୍ଥାନକୁ ନେଇ ଗଠିତ ଏହି ରାଜ୍ୟକୁ ନନ୍ଦୋଦ୍ଭବ ବଂଶ ଶାସନ କରୁଥିଲେ । ଢେଙ୍କାନାଳର ଦକ୍ଷିଣରେ ଥିବା ଜୟପୁର ଗ୍ରାମ ଥିଲା ଏହାର ରାଜଧାନୀ । ନନ୍ଦୋଦ୍ଭବମାନେ ପ୍ରଥମେ ଭୌମକର ଓ ପରେ ସୋମବଂଶୀମାନଙ୍କ କରଦ ଥିଲେ । ମହାନଦୀ କୂଳ ଚମ୍ପେଶ୍ୱର ଓ ବୈଦ୍ୟେଶ୍ୱରର କେତେକ କୃତି ଏମାନଙ୍କ ସମୟର ଅଟେ ।

**ଖିଞ୍ଜିଳି ମଣ୍ଡଳ:** ସୋନପୁର, ବଉଦ ଓ ଫୁଲବାଣୀ ଜିଲ୍ଲାର କେତେକ ଅଞ୍ଚଳକୁ ନେଇ ଖ୍ରୀ: ୮ମ ଶତାବ୍ଦୀରେ ଭଞ୍ଜ ରାଜବଂଶ ଦ୍ୱାରା ଏହି ମଣ୍ଡଳ ଗଠିତ ହୋଇଥିଲା । ଏମାନଙ୍କ ଦ୍ୱାରା ପ୍ରଦତ୍ତ ତାମ୍ରପତ୍ର ସନନ୍ଦମାନଙ୍କରୁ ଧୃତିପୁର ବା ବର୍ତ୍ତମାନର ବଉଦ ସହର ଏହାର ରାଜଧାନୀ ଥିବା ସୂଚନା ମିଳେ । ଏ ସମୟର କେତେକ ପ୍ରାଚୀନ କୀର୍ତ୍ତି ମଧ୍ୟରେ ଗନ୍ଧରାଡ଼ିର ସିଦ୍ଧେଶ୍ୱର ଓ ନୀଳମାଧବ ଯୁଗ୍ମ ମନ୍ଦିର, ବଉଦରେ ପଶ୍ଚିମ ସୋମନାଥ, ଭୁବନେଶ୍ୱର ଓ କପିଳେଶ୍ୱର ମନ୍ଦିର ଅନ୍ୟତମ ।

ଭଞ୍ଜବଂଶୀମାନେ କରଦ ରାଜା ଥିବାବେଳେ ସୋମବଂଶୀଙ୍କ ସହିତ ଯୁଦ୍ଧରେ ପରାସ୍ତ ହୋଇ ଥିଲେ । ଏହାର ଫଳ ସ୍ୱରୂପ ଏମାନଙ୍କର ଗୋଟିଏ ଗୋଷ୍ଠୀ ପୁରୀ ଜିଲ୍ଲାର ଦଶପଲ୍ଲା ଓ ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ଅଞ୍ଚଳକୁ ଯାଇ ସେଠାର ଶାସନ ଭାର ଗ୍ରହଣ କରିଥିଲେ । ସେ ସମୟରେ ଏମାନଙ୍କ ରାଜଧାନୀ ଭଞ୍ଜଉଲାକା ବା ବର୍ତ୍ତମାନର ବ୍ରହ୍ମପୁର ନିକଟ ହିଞ୍ଜଳିକାଟୁ ଥିବା ଅନୁମାନ କରାଯାଏ । ଏହି ଅଞ୍ଚଳର କେତେକ ପ୍ରଖ୍ୟାତ ମନ୍ଦିର ମଧ୍ୟରେ ଋଷିକୁଲ୍ୟା ନଦୀ କୂଳ ପିତେଳ ଗ୍ରାମର ଭରରେଶ୍ୱର ମନ୍ଦିର ବୁଗୁଡା ନିକଟ ଜଉମର କୁବେରେଶ୍ୱରମନ୍ଦିର ଓ ବୁଦ୍ଧଖୋଲର ଶୈବ ଓ ବୌଦ୍ଧ କୀର୍ତ୍ତିଗୁଡ଼ିକ ଅନ୍ୟତମ ।

**ଖିଜିଙ୍ଗ ମଣ୍ଡଳ:** ସୋମବଂଶୀଙ୍କ ଦ୍ୱାରା ଧୃତିପୁରରୁ ବିତାଡ଼ିତ ହୋଇଥିବା ଭଞ୍ଜବଂଶର ଅନ୍ୟ ଏକ ଶାଖା କେଉଁଝର ଓ ମୟୂରଭଞ୍ଜର କେତେକାଞ୍ଚଳ ଅଧିକାର କରି ନିଜ ରାଜ୍ୟ ସ୍ଥାପନ କଲେ । ସେତେବେଳେ ଏମାନଙ୍କ ରାଜଧାନୀ ଥିଲା ଖିଜିଙ୍ଗକୋଟା ବା ବର୍ତ୍ତମାନର କେଉଁଝର ଓ ବାରିପଦାର

ମଧ୍ୟବର୍ତ୍ତୀ ସ୍ଥଳ 'ଖିଚୀଙ୍ଗ୍' । ଖ୍ରୀ: ୧୦ମ ରୁ ୧୨ଶତାବ୍ଦୀ ମଧ୍ୟରେ ଭଞ୍ଜମାନେ ଏହି ଅଞ୍ଚଳରେ ନିର୍ମିତ କରିଥିବା କେତେକ ପ୍ରଖ୍ୟାତ ମନ୍ଦିର ମଧ୍ୟରେ ଖିଚିଙ୍ଗର କୀଚକେଶ୍ୱରୀ ମନ୍ଦିର ଓ କୁଟେଇତୁଣ୍ଡିର ମୃତ୍ୟୁଞ୍ଜୟ ଶିବ ମନ୍ଦିର ସମେତ ସେରଗଡ଼ ଓ ବେଣୁସାଗରର ଶିବ ଓ ଶକ୍ତି ମନ୍ଦିର ଗୁଡ଼ିକ ଉଲ୍ଲେଖଯୋଗ୍ୟ । ଏହାର ପରବର୍ତ୍ତୀ ସମୟରେ ଏମାନେ 'କାଳଚୁରି ଓ ମରହଟ୍ଟାମାନଙ୍କ ଦ୍ୱାରା ଯୁଦ୍ଧରେ କ୍ଷତିଗ୍ରସ୍ତ ହୋଇ ନିଜ ରାଜଧାନୀ ଯଥାକ୍ରମେ ହରିପୁର ଓ ବାରିପଦାକୁ ସ୍ଥାନାନ୍ତରିତ କରିଥିଲେ । ହରିପୁରରେ ଏମାନଙ୍କ ଦ୍ୱାରା ନିର୍ମିତ ବଙ୍ଗୀୟ ଚାଳ ଶୈଳୀର ରସିକରାଜ ମନ୍ଦିର ଏବଂ ପରବର୍ତ୍ତୀ ସମୟରେ ନିର୍ମିତ ବାରିପଦାର ଶୈବ, ବୈଷ୍ଣବ ଓ ଶାକ୍ତ ମନ୍ଦିରଗୁଡ଼ିକ ଅନ୍ୟତମ ।

**ଦଣ୍ଡଭୁକ୍ତି ମଣ୍ଡଳ:** କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କଙ୍କ ଦ୍ୱାରା ତତ୍‌କାଳୀନ ଓଡ଼ିଶାର ମେଦିନୀପୁର ଓ ବାଲେଶ୍ୱର ଅଞ୍ଚଳକୁ ନେଇ ଏହି ମଣ୍ଡଳ ଗଠିତ ହୋଇଥିଲା । ହର୍ଷବର୍ଦ୍ଧନଙ୍କ ସମୟରେ ଉତ୍କଳ ଓ ଦଣ୍ଡଭୁକ୍ତି ମଣ୍ଡଳକୁ ଏକତ୍ର କରି 'ଉଡ୍ରବିଷୟ' ନାମକରଣ କରାଯାଇଥିଲା । ଖ୍ରୀ: ୧୦ମ ଶତାବ୍ଦୀରେ ଏହି ସମସ୍ତ ଅଞ୍ଚଳ ଭଞ୍ଜମାନଙ୍କ ଶାସନାଧୀନ ହୋଇଥିବା ଜଣାଯାଏ । ଏହାର ପରବର୍ତ୍ତୀ ସମୟରେ କିଛି କାଳ ପାଇଁ ଏହି ରାଜ୍ୟ ପାଳବଂଶ ଦ୍ୱାରା ଅଧିକୃତ ହୋଇଥିଲେ ହେଁ ପରେ ଚୋଡ଼ଗଙ୍ଗଦେବ ଏହାକୁ ଶାସନାଧୀନ କରିବା ସହିତ ନିଜରାଜ୍ୟ ଗଙ୍ଗା ମୁହାଣ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ମେଦିନୀପୁର ଓ ବିଷ୍ଣୁପୁର ଅଞ୍ଚଳରେ କଳିଙ୍ଗ ଶୈଳୀର କେତେକ ମନ୍ଦିରର ଭଗ୍ନାବଶେଷ ରହିଥିବା ବେଳେ ବାଲେଶ୍ୱର ଓ ମୟୂରଭଞ୍ଜ ଅଞ୍ଚଳରେ ବଙ୍ଗୀୟ ଶୈଳୀର କେତେକ ଇଟା ମନ୍ଦିର ଦେଖିବାକୁ ମିଳେ ।

**କୋଶଳ ରାଜ୍ୟ:** ଅନେକ ପୁରାଣରେ କୋଶଳର ନାମ ବିଭିନ୍ନ ଭାବରେ ଉଲ୍ଲେଖ ଥିବା ବେଳେ ଦଶରଥଙ୍କ ରାଣୀ କୌଶଲ୍ୟା ଏହି ରାଜ୍ୟର ରାଜଜେମା ଥିବା ଜଣାଯାଏ । ଆହ୍ଲାବାଦ୍ ସ୍ତମ୍ଭ-ଅଭିଲେଖ ଅନୁଯାୟୀ ଖ୍ରୀ: ୩୫୦ ସାଲରେ ସମୁଦ୍ରଗୁପ୍ତ କୋଶଳ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ସେତେବେଳେ ମହାକୋଶଳ ନାମରେ ପରିଚିତ ଏହିରାଜ୍ୟ ମୁଖ୍ୟତଃ ମଧ୍ୟପ୍ରଦେଶର ରାୟପୁର ବିଳାସପୁର, ସର୍ଗୋଜା ଜିଲ୍ଲା ଏବଂ ଓଡ଼ିଶାର କଳାହାଣ୍ଡି, ସମ୍ବଲପୁର, ବଲାଙ୍ଗିର ଓ ସୁନ୍ଦରଗଡ଼ ଜିଲ୍ଲାକୁ ବୁଝାଉ ଥିଲା । ତେବେ ପରବର୍ତ୍ତୀ ସମୟରେ ଓଡ଼ିଶାର ଏହି ଅଞ୍ଚଳ ଦକ୍ଷିଣ-କୋଶଳ ଭାବେ ପରିଚିତ ହେଲା । ଖ୍ରୀ:୬ଷ୍ଠ-୭ମ ଶତାବ୍ଦୀରେ ସରଭପୁରୀଆ ରାଜବଂଶ ମଧ୍ୟପ୍ରଦେଶର ଶ୍ରୀପୁରକୁ ନିଜର ରାଜଧାନୀ କରି ଏହି ଅଞ୍ଚଳ ଶାସନ କରୁଥିବା ବିଷୟ ହୁଏନ-ସାଂଙ୍କ ବିବରଣୀରେ ଉଲ୍ଲେଖ ଅଛି । ଖ୍ରୀ: ୮ମ-୯ମ ଶତାବ୍ଦୀରେ, ସୋମବଂଶୀମାନେ ଏହି ରାଜ୍ୟକୁ ନିଜ ଶାସନାଧୀନ କରିଥିଲେହେଁ ଖ୍ରୀ: ୯ମ ଶତାବ୍ଦୀରେ ମଧ୍ୟଭାରତ , ଡ଼ାହଲର କାଳ ଚୁରି ରାଜା ଏମାନଙ୍କୁ ପରାସ୍ତକରି କୋଶଳକୁ ଶାସନ କଲେ । ଏହା ବ୍ୟତୀତ 'କାଳଚୁରିମାନେ ଖିଞ୍ଜିଳି ମଣ୍ଡଳକୁ ମଧ୍ୟ ଅଧିକାର କରିଥିଲେ । ପୁନଶ୍ଚ ସୋମବଂଶୀମାନେ ଶକ୍ତିଶାଳୀ ହୋଇ ଖ୍ରୀ: ୧୧ଶ ଶତାବ୍ଦୀର ଦକ୍ଷିଣକୋଶଳ ସମେତ ଉତ୍କଳ ବା ଓଡ଼ିଶାର ଉତ୍ତର-ପୂର୍ବାଞ୍ଚଳକୁ ନିଜ ଶାସନକୁ ଆଣିଥିଲେ । ଏହାର ପରବର୍ତ୍ତୀ ସମୟରେ ତେଲୁଗୁ ଚୋଳମାନେ ଅଳ୍ପ କାଳ ପାଇଁ ଏହି ରାଜ୍ୟ ଶାସନ କରିଥିବା ବେଳେ ଖ୍ରୀ: ୧୨ଶ ଶତାବ୍ଦୀର ପ୍ରାରମ୍ଭରେ ଗଙ୍ଗବଂଶ ଏଠାରେ ଆଧିପତ୍ୟ ବିସ୍ତାର କରିଥିବା ଜଣାଯାଏ । ପୁନଶ୍ଚ ଖ୍ରୀ: ୧୩ଶ ଶତାବ୍ଦୀରୁ ଖ୍ରୀ:୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ, ଏକଶତ ବର୍ଷ ଏହି ରାଜ୍ୟ କାଳାଚୁରିମାନଙ୍କ ଶାସନାଧୀନ ହେବା ପରେ ଚୌହାନମାନେ ଏହି ରାଜ୍ୟ ଅଧିକାର କରିଥିଲେ ।

ଦକ୍ଷିଣ କୋଶଳର ଏହି ରାଜନୈତିକ ଅସ୍ଥିରତା ମଧ୍ୟରେ ଏଠାରେ କଳିଙ୍ଗ ଶୈଳୀର କେତେକ ମନ୍ଦିର ସମେତ ମଧ୍ୟଭାରତୀୟ ଶୈଳୀ ଓ ତାର ପ୍ରଭାବରେ ନିର୍ମିତ ବହୁ ମନ୍ଦିର ଦେଖିବାକୁ ମିଳେ । ରାଜ୍ୟ ଦେବତା କୋଶଳେଶ୍ୱରଙ୍କ ନାମରେ ବିଭିନ୍ନ ସ୍ଥାନରେ ଏକାଧିକ ଶିବ ମନ୍ଦିର ରହିଛି । ନୂଆପଡ଼ା ଜିଲ୍ଲା, ମାରାଗୁଡ଼ାର ପ୍ରତ୍ନତାତ୍ତ୍ୱିକ ଖନନରୁ ଗୋଟିଏ ପଥର ମନ୍ଦିର ସମେତ ବହୁ ଇଟା ମନ୍ଦିରର ଭଗ୍ନାବଶେଷ ଲୋକଲୋଚନକୁ ଆସିଛି । ରାଣୀପୁର-ଝରିଆଲ ଠାରେ ବହୁ ଶିବ ଓ ଶକ୍ତି ମନ୍ଦିର ଦେଖିବାକୁ ମିଳେ । ମହାନଦୀର ଉପର ଅବବାହିକାରେ ଅବସ୍ଥିତ କୋଶଳର କେତେକ ମୁଖ୍ୟ ମନ୍ଦିରର ସମୟାନୁକ୍ରମ ତାଲିକା ପରିଶିଷ୍ଟ ଅଧ୍ୟାୟରେ ଦିଆ ଯାଇଛି ।

**ବଣେଇ ରାଜ୍ୟ:** ପ୍ରାଚୀନ ମୌର୍ଯ୍ୟ ବଂଶର ଏକ ଶାଖା ଖ୍ରୀ: ୧୦ମ ଶତାବ୍ଦୀରେ ବର୍ତ୍ତମାନ ସୁନ୍ଦରଗଡ଼ ଜିଲ୍ଲାର ଏକ ବିସ୍ତୃତ ଅଞ୍ଚଳକୁ ନେଇ ଏହି ରାଜ୍ୟ ଗଠନ କରିଥିଲେ । ଏହାର ରାଜଧାନୀ ତତ୍‌କାଳୀନ 'ବୋକେଲା' କୁ ଐତିହାସିକମାନେ ବର୍ତ୍ତମାନର ରାଉରକେଲାକୁ ଚିହ୍ନିତ କରନ୍ତି । ପଡ଼ୋଶୀ ଭଞ୍ଜରାଜ୍ୟ ସହିତ ଏମାନଙ୍କ ସୁସମ୍ପର୍କ ଥିବା ଜଣାଯାଏ । କେତେକ ଐତିହାସିକଙ୍କ ମତରେ ପରବର୍ତ୍ତୀ ସମୟରେ ଏ ଦୁଇ ରାଜ୍ୟକୁ ଏକତ୍ର 'ମୟୂରଭଞ୍ଜ' କୁହାଗଲା । ବଣେଇର ବାଣେଶ୍ୱର ଶିବ ମନ୍ଦିର ଏହି ଅଞ୍ଚଳର ଏକ ପ୍ରାଚୀନ କୀର୍ତ୍ତି ।

**ମହାକାନ୍ତାର ଓ ନିଷାଦ ରାଜ୍ୟ:** ବର୍ତ୍ତମାନର କଳାହାଣ୍ଡି, ବଲାଙ୍ଗିର ଜିଲ୍ଲାର କେତେକାଞ୍ଚଳ ଓ ମଧ୍ୟପ୍ରଦେଶର ବିଳାସପୁର ଅଞ୍ଚଳକୁ ପୂର୍ବେ ମହାକାନ୍ତାର କୁହାଯାଉଥିବା ବେଳେ କୋରାପୁଟ ଓ ଏହାର ସଂଲଗ୍ନ ଆନ୍ଧ୍ରରେ ନିଷାଦମାନେ ବସବାସ କରୁଥିବା ବନଅଞ୍ଚଳକୁ 'ନିଷାଦ ରାଜ୍ୟ' କୁହାଯାଉଥିଲା । ନଳବଂଶୀ ରାଜାମାନେ ଏହି ରାଜ୍ୟକୁ ଖ୍ରୀ: ୩ୟ ଶତାବ୍ଦୀରୁ ଖ୍ରୀ: ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଜଣାଯାଏ । ଏମାନଙ୍କ ତତ୍‌କାଳୀନ ରାଜଧାନୀ ପୁଷ୍କରିକୁ ଐତିହାସିକମାନେ ବର୍ତ୍ତମାନ କୋରାପୁଟ ଜିଲ୍ଲାର ପୋଡ଼ାଗଡ଼ ସହିତ ଚିହ୍ନିତ କରନ୍ତି । ପୋଡ଼ାଗଡ଼ ନିକଟ ପାହାଡରେ କେତେକ ପ୍ରାଚୀନ ମନ୍ଦିରର ପ୍ରତ୍ନାବଶେଷ ରହିଥିବା ବେଳେ ଏହି ଜିଲ୍ଲାର ଚିତ୍ରକୋଣ୍ଡା ଓ ବାଲିମେଳା ଅଞ୍ଚଳରୁ କେତେକ ଶୈବ ମୂର୍ତ୍ତି ପ୍ରାପ୍ତ ହୋଇଥିଲା । ବାଲିମେଳା ଅଞ୍ଚଳର 'କୋଣ୍ଡାକାମେରୁ' ନାମକ ସ୍ଥାନରୁ ଦକ୍ଷିଣଭାରତୀୟ ଶୈଳୀର ଏକ ଶିବ ମନ୍ଦିର ଜଳ-ବିଦ୍ୟୁତ ଯୋଜନାର ଜଳାଶୟ ମଧ୍ୟରେ ରହିଯାଇଛି । ବଲାଙ୍ଗିରର ଦେଓଗାଁ ଓ ବେଲଖଣ୍ଡିର ଶୈବ ଓ ଶାକ୍ତ ମନ୍ଦିର ଓ ମୂର୍ତ୍ତିଗୁଡ଼ିକ ନଳମାନଙ୍କ କୃତି ବୋଲି ଅନୁମାନ କରାଯାଏ ।



# କଳିଙ୍ଗ ମନ୍ଦିର ସ୍ଥାପତ୍ୟର ଯୁଗାନୁକ୍ରମ

କଳିଙ୍ଗ ମନ୍ଦିର ସ୍ଥାପତ୍ୟର ବିକାଶ ଧାରାର ସମୟାନୁକ୍ରମକୁ ମୁଖ୍ୟତଃ ତିନି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଏହାର ପ୍ରାରମ୍ଭ ଅର୍ଥାତ ଖ୍ରୀ:ପୂ: ୨ୟରୁ-ଖ୍ରୀ: ୫ମ ଶତାବ୍ଦୀ ମଧ୍ୟର କ୍ଷୁଦ୍ର ନିର୍ମାଣ ଗୁଡ଼ିକ ବ୍ୟତୀତ ଖ୍ରୀ: ୬ଷ୍ଠରୁ-୯ମ ଶତାବ୍ଦୀର ସୀମିତ ଶୈଳୀରେ ନିର୍ମିତ ମନ୍ଦିର ଗୁଡ଼ିକୁ ପ୍ରାଚୀନଯୁଗୀୟ, ଏହାର ପରବର୍ତ୍ତୀ ସମୟ ଅର୍ଥାତ ଖ୍ରୀ: ୧୦ମରୁ ଖ୍ରୀ: ୧୩ଶ ଶତାବ୍ଦୀ ମଧ୍ୟର ନିର୍ମାଣ ଗୁଡ଼ିକୁ 'ମଧ୍ୟଯୁଗୀୟ' ଭାବେ ବିବେଚନା କରାଯାଇପାରେ । ମଧ୍ୟଯୁଗୀୟ ମନ୍ଦିରଗୁଡ଼ିକର, ପ୍ରଥମାର୍ଦ୍ଧରେ ମନ୍ଦିର କଳା ଓ ସ୍ଥାପତ୍ୟରେ ବହୁ ନୂତନ ପରିକଳ୍ପନା, ତା'ର ପ୍ରୟୋଗ ଓ ପରୀକ୍ଷା ନିରୀକ୍ଷାର ପର୍ଯ୍ୟାପ୍ତ ସୂଚନା ମିଳୁଥିବା ବେଳେ ଦ୍ୱିତୀୟାର୍ଦ୍ଧରେ କଳିଙ୍ଗ ମନ୍ଦିରକଳା ଓ ସ୍ଥାପତ୍ୟ ଚରମ ଉତ୍କର୍ଷ ଲାଭ କରିଛି । ଏହା ପର ଚାରିଶହ ବର୍ଷକୁ 'ପରବର୍ତ୍ତୀ' ସମୟ କୁହାଯିବା ସମୀଚୀନ ହେବ । ଏହି ସମୟରେ ନିର୍ମାଣର ସଂଖ୍ୟା ହ୍ରାସ ପାଇଥିବା ବେଳେ ଶୈଳୀରେ ମୁଖ୍ୟତଃ ପୂର୍ବର ନିର୍ଦ୍ଦିଷ୍ଟ ବିକଶିତ ଧାରାକୁ ଅନୁସରଣ କରା ଯାଇଥିବା ଲକ୍ଷ୍ୟ କରାଯାଏ ।

ଉପରୋକ୍ତ ତିନି ଯୁଗ ବା ପର୍ଯ୍ୟାୟରେ କଳିଙ୍ଗ ମନ୍ଦିରସ୍ଥାପତ୍ୟର ପରମ୍ପରା ଅକ୍ଷୁର୍ଣ୍ଣ ରହିଥିବା ବେଳେ ଖ୍ରୀ: ୧୬-୧୮ଶ ଶତାବ୍ଦୀ ଠାରୁ ଗଡ଼ଜାତର ରାଜା ଓ ଜମିଦାରି ସମୟରେ ନିର୍ମିତ ଅନେକ ମନ୍ଦିରରେ ଅନ୍ୟ ପ୍ରାନ୍ତର ପ୍ରଭାବ ଓ ତତ୍କାଳୀନ ସ୍ଥପତିମାନଙ୍କ ନୂତନ ପରିକଳ୍ପନା ଓଡ଼ିଶାର ମନ୍ଦିର ସ୍ଥାପତ୍ୟରେ ଏକ ଭିନ୍ନ ମୋଡ଼ ସୃଷ୍ଟି କରିଛି କହିଲେ ଭୁଲ ହେବନାହିଁ । ତେବେ ଏହି ପୁସ୍ତକରେ ଉପରୋକ୍ତ ସମୟରେ କଳିଙ୍ଗ ମନ୍ଦିରସ୍ଥାପତ୍ୟର ମୌଳିକ ବିକାଶ ଧାରା ଓ ଶୈଳୀର ସମ୍ୟକ ସୂଚନା ଦିଆଯାଇଛି ।

'ଏର୍ଲି ଷ୍ଟୋନ୍ ଟେମ୍ପଲସ୍ ଅଫ ଓଡ଼ିଶା' ବହିର ଲେଖିକା ଶ୍ରୀମତୀ ବିଦ୍ୟା ଦହିଆ, ଓଡ଼ିଶାର ପ୍ରାଚୀନ ଅର୍ଥାତ୍ ଖ୍ରୀ: ୬ଷ୍ଠ-୯ମ. ଶତାବ୍ଦୀ ମଧ୍ୟରେ ନିର୍ମିତ ମନ୍ଦିରଗୁଡ଼ିକର ନିର୍ମାଣଧାରା ଅଧ୍ୟୟନ କରି ତିନି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି । ତାଙ୍କ ମତରେ ଖ୍ରୀ: ୬୦୦ରୁ -ଖ୍ରୀ: ୭୫୦ ମଧ୍ୟର ନିର୍ମାଣଗୁଡ଼ିକ ପ୍ରାରମ୍ଭ ପର୍ଯ୍ୟାୟର ଅଟେ । ଖ୍ରୀ: ୭୫୦ ରୁ -ଖ୍ରୀ: ୮୫୦ ମଧ୍ୟର ନିର୍ମାଣଗୁଡ଼ିକ ବିକାଶ ପର୍ଯ୍ୟାୟର ହୋଇଥିବା ବେଳେ ଖ୍ରୀ: ୮୫୦ରୁ -ଖ୍ରୀ:୯୫୦ ମଧ୍ୟର ମନ୍ଦିରଗୁଡ଼ିକ ବିକଶିତ ପର୍ଯ୍ୟାୟର ଅଟେ ।

ତେବେ ଏହି ପୁସ୍ତକରେ ଉପରୋକ୍ତ ସମୟକୁ ପ୍ରାଚୀନଯୁଗ ଭାବେ ସୂଚିତ କରାଯାଇଥିବା ବେଳେ ଏହାର ପରବର୍ତ୍ତୀ, ସମୟ ଅର୍ଥାତ୍ ଖ୍ରୀ: ୯ମ ରୁ -ଖ୍ରୀ:୧୧ଶ ଶତାବ୍ଦୀ ମଧ୍ୟରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟର ଆକାର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ମନ୍ଦିର ଅଙ୍ଗ ପ୍ରତ୍ୟଙ୍ଗ ଓ ଅନ୍ୟାନ୍ୟ ନିର୍ମାଣରେ ବହୁ ବିକାଶ ଘଟିଛି । ମଧ୍ୟଯୁଗର ଏହି ପ୍ରକ୍ରିୟା ପରବର୍ତ୍ତୀ ସମୟରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟକୁ ଶୀର୍ଷ ସ୍ଥାନରେ ପହଞ୍ଚାଇ ପାରିଛି ।



# ମନ୍ଦିର ତତ୍ତ୍ୱ

ବେଦରେ ବସତିର ଦେବତା ବାସ୍ତୋଷ୍ପତିଙ୍କୁ ସ୍ତୁତି କରାଯାଇଥିବା ବେଳେ ପୁରାଣ ଯୁଗରେ ସେ 'ବାସ୍ତୁପୁରୁଷ' ନାମରେ ପରିଚିତ ହେଲେ । ବିଶ୍ୱାସ କରାଯାଏ ଯେ ଏହାଙ୍କ ଶରୀର ପୃଥିବୀର ସର୍ବତ୍ର ବିସ୍ତାରିତ ହୋଇ ରହିଛି ଓ ଏହାଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ଦେବତାମାନେ ନିଜ ନିଜ ଆସ୍ଥାନ ଗ୍ରହଣ କରିଛନ୍ତି । ଏଣୁ ବସତି ସ୍ଥାପନର ଯେକୌଣସି ନିର୍ମାଣର ପ୍ରାରମ୍ଭରେ ବାସ୍ତୁ ପୁରୁଷଙ୍କୁ ପୂଜା କରିବା ବିଧେୟ ବୋଲି କୁହା ଯାଇଛି । ଏହି ମର୍ମରେ ମନ୍ଦିରକୁ 'ପରମ ପୁରୁଷ' ଭାବେ ପରିକଳ୍ପନା କରାଯିବା ସହିତ ତା'ର ଦେହରେ ପାର୍ଶ୍ୱ ଓ ଆବରଣ ଦେବତା ଭାବେ ବିଭିନ୍ନ ଦେବାଦେବୀଙ୍କୁ ସ୍ଥାନିତ କରାଯାଇଥାଏ । ମନୁଷ୍ୟ ଶରୀରର କେତେକ ଅଂଗ ଭଳି ମନ୍ଦିରର ମୁଖ୍ୟ ଅଂଶ ଗୁଡ଼ିକୁ ନାମକରଣ କରାଯାଇ ମନୁଷ୍ୟ ଦେହରେ ଆତ୍ମା ସ୍ୱରୂପ ମନ୍ଦିର ଗର୍ଭଗୃହରେ ପରମାତ୍ମା ବା ଭଗବାନଙ୍କ ମୂର୍ତ୍ତି ସ୍ଥାନିତ ହୋଇଥାଏ । ଏହା ବ୍ୟତୀତ ମନୁଷ୍ୟ ଜୀବନର ବିଭିନ୍ନ ଧର୍ମ, କର୍ମର ଚିତ୍ର ମନ୍ଦିର ଗାତ୍ରରେ ରୂପାୟିତ ହୋଇଥିବା ଦେଖାଯାଏ । ଅନ୍ୟ ଭାବରେ ମନ୍ଦିର ସମଗ୍ର ବିଶ୍ୱର ପ୍ରତୀକ ମଧ୍ୟ ।

ଉପରୋକ୍ତ ମତେ ଦଣ୍ଡାୟମାନ ମନ୍ଦିରଗୁଡ଼ିକ 'ପୁରୁଷତତ୍ତ୍ୱ' ଉପରେ ଆଧାରିତ ହୋଇଥିବା ବେଳେ ମନ୍ଦିରର ଭୂନକ୍ସାଗୁଡ଼ିକ ସାଧାରଣତଃ ବୈଦିକ ମଣ୍ଡଳ ଓ ତନ୍ତ୍ରଶାସ୍ତ୍ରର କେତେକ ଯନ୍ତ୍ର ଉପରେ ଆଧାରିତ ହୋଇଥାଏ । ଏହି ମଣ୍ଡଳ ଓ ଯନ୍ତ୍ରଗୁଡ଼ିକ ବିଭିନ୍ନ ଦେବଦେବୀଙ୍କ ପ୍ରତୀକ ଯାହାକି ଜ୍ୟାମିତିକ ଶୈଳୀର ରେଖା ଚିତ୍ର । ଏଗୁଡ଼ିକରେ ଦେବଦେବୀଙ୍କ ମୂଳ ଶକ୍ତି ଓ ସ୍ୱରୂପ ନିହିତ ବୋଲି ବିଶ୍ୱାସ କରାଯାଏ । ଭାରତର ବିଭିନ୍ନ ପ୍ରାନ୍ତର ମନ୍ଦିରମାନଙ୍କ ଆକାର ପ୍ରକାର ଭିନ୍ନ ଭିନ୍ନ ହେଲେ ହେଁ ଏଗୁଡ଼ିକର ପରିକଳ୍ପନା ଏକ ମୌଳିକ ତତ୍ତ୍ୱ ଉପରେ ଆଧାରିତ ।





ପୁରୁଷ ଓ ମନ୍ଦିର

# କ୍ଷେତ୍ର ପରିଚୟ

ଶିଳ୍ପଶାସ୍ତ୍ରମାନଙ୍କରେ ମନ୍ଦିର ନିମନ୍ତେ ଉଦ୍ଦିଷ୍ଟ ଭୂମିର ଆକାରକୁ ନେଇ ଶୁଭାଶୁଭ ଫଳ ଅର୍ଥାତ୍ କେଉଁ ଆକାରର କ୍ଷେତ୍ର ମନ୍ଦିର ନିମନ୍ତେ ଉପଯୁକ୍ତ ତାହା ଉଲ୍ଲେଖ ଅଛି । ଏଠାରେ ଏହିପରି କେତେକ କ୍ଷେତ୍ରର ନାମ ଓ ମନ୍ଦିର ତଥା କର୍ତ୍ତା ଉପରେ ତାର ପ୍ରଭାବ ସମ୍ପର୍କରେ ସମ୍ୟକ ସୂଚନା ଦିଆଗଲା ।

ଆୟତ କ୍ଷେତ୍ର=ଏହା ଆୟତାକାର ଅର୍ଥାତ୍ ଦୁଇ ବିପରୀତ ବାହୁ ସମାନ । ଚତୁରଶ୍ର=ଏହା ବର୍ଗାକାର କ୍ଷେତ୍ର । ଭଦ୍ରାସନ= ଏହା ସୁନ୍ଦର ସ୍ଥାନ । ଚକ୍ର ଏହା ଚକ୍ରାକାର ସ୍ଥାନ । ତ୍ରିକୋଣ= ଏହା ତ୍ରିକୋଣ କ୍ଷେତ୍ର । ଶକଟ= ଏହା ଶଗଡ଼ ସଦୃଶ ଗୋଟିଏ ପାଖ ସଂକୀର୍ଣ୍ଣ ଓ ଅନ୍ୟପାଖ ପ୍ରଶସ୍ତ ବା ସରଳ । କୂର୍ମ=ଏହା କଇଁଚ ପିଠି ସଦୃଶ ଢ଼ାଲୁଆ ସ୍ଥାନ । ଧନୁ = ଏହାର ଗୋଟିଏ ପାଖ ସଳଖ ଓ ଅନ୍ୟ ପାଖ ଧନୁ ଭଳି ଅର୍ଦ୍ଧ ଚକ୍ରାକାର । ସୂର୍ଯ୍ୟ=ଏହାର ମଧ୍ୟ ଭାଗ ଚକ୍ରାକାର ହେଲେ ହେଁ ଧାରଗୁଡ଼ିକ ଅସମାନ । ଦଣ୍ଡ= ଏହା ଦଣ୍ଡ ସଦୃଶ ଏକ ଲମ୍ବସ୍ଥାନ । ପ୍ରଲମ୍ବ=ଏହା ଏକ ଅସମାନ ଲମ୍ବ ସ୍ଥାନ । ବ୍ୟଜନ= ଏହି କ୍ଷେତ୍ର ଦେଖିବାକୁ ପଙ୍ଖା ଭଳି । ଛତ୍ର= ଛତ୍ର ସଦୃଶ ସ୍ଥାନ । ବିସମ ବାହୁ = ଏହି କ୍ଷେତ୍ରର ଚାରିଦିଗ ବାହୁ ଅସମାନ । ବୃହତ୍ ମୁଖ= ମଧ୍ୟରେ ମୁଖ ଗୌହ୍ୱର ସଦୃଶ ଗର୍ତ୍ତ ଥିବା ସ୍ଥାନ । ଏହା ବ୍ୟତୀତ ମୁଚ୍ଛନ୍ଦକ, ସୁଚ୍ଛନ୍ଦ, ଗ୍ରିଧ, ସୃକ୍ତି, ସ୍ଥୁଡି ଓ ହର୍ମ୍ୟ ପୀଠ ଭଳି କେତେକ ଅବୋଧ୍ୟ ଶବ୍ଦ ମଧ୍ୟ ଉଲ୍ଲେଖ ଥିବା ଦେଖାଯାଏ ।

ଏହି କ୍ଷେତ୍ରମାନଙ୍କ ମଧ୍ୟରୁ ଆୟତ କ୍ଷେତ୍ର ସମସ୍ତ ବିଷୟରେ କର୍ତ୍ତାର ସମୃଦ୍ଧି ଆଣିଦିଏ । ଚତୁରଶ୍ର କ୍ଷେତ୍ର ଧନଧାନ୍ୟ ବୃଦ୍ଧିକରେ । ଭଦ୍ରାସନ ଶାନ୍ତି ଓ ସନ୍ତୋଷ ପ୍ରଦାନ କରେ । ଛତ୍ର, ମଙ୍ଗଳ କାରକ ସ୍ଥାନ । ଚକ୍ରାକାର ସ୍ଥାନ, କର୍ତ୍ତାକୁ ଦରିଦ୍ର କରାଏ ଓ ରାଜ ଭୟର କାରଣ ହୁଏ । ଶକଟ କ୍ଷେତ୍ର, ଧନ ହାନି କରେ । ଦଣ୍ଡ କ୍ଷେତ୍ର, ଦ୍ୱାରା ଗୋ ସମ୍ପଦ ନଷ୍ଟ ହୁଏ । ପ୍ରଲମ୍ବ, ବୃହଦ୍‌ମୁଖ, ବ୍ୟଜନ, ବିସମବାହୁ ଇତ୍ୟାଦି କ୍ଷେତ୍ର ଗୁଡ଼ିକ ମଧ୍ୟ ବିଭିନ୍ନ ପ୍ରକାର ଅମଙ୍ଗଳ ଓ ଅନିଷ୍ଟକାରକ ବୋଲି ଜଣାଯାଏ ।




କେତେକ ପ୍ରକାର କ୍ଷେତ୍ର

# ମନ୍ଦିରର ମୁଖ୍ୟ ବସ୍ତୁ, ପଥର

ମନ୍ଦିର ନିର୍ମାଣ ନିମନ୍ତେ ମୁଖ୍ୟ ବସ୍ତୁ ହେଉଛି ପଥର । ପଥର ନିର୍ମିତ ମନ୍ଦିର ଦୀର୍ଘସ୍ଥାୟୀ ହୋଇ ପାରୁଥିବାରୁ, ଏହା ଶ୍ରେଷ୍ଠ ବୋଲି ଶିଳ୍ପଶାସ୍ତ୍ରମାନଙ୍କରେ କୁହାଯାଇଛି । ମନୁଷ୍ୟ ସମାଜର ଜାତି ବିଭାଗ ଭଳି ଶିଳ୍ପଶାସ୍ତ୍ରରେ ପଥରମାନଙ୍କର ଜାତି ବା ଶ୍ରେଣୀ ନିର୍ଣ୍ଣୟ କରାଯାଇଛି । ମୟମତ ଶିଳ୍ପଶାସ୍ତ୍ରର ବର୍ଣ୍ଣନା ଅନୁଯାୟୀ ଶ୍ୱେତବର୍ଣ୍ଣ ପଥର ବ୍ରାହ୍ମଣ ଶ୍ରେଣୀୟ, ରକ୍ତ ବର୍ଣ୍ଣ ପଥର କ୍ଷତ୍ରିୟ ଶ୍ରେଣୀୟ, ପୀତବର୍ଣ୍ଣ ପଥର ବୈଶ୍ୟ ଓ କୃଷ୍ଣବର୍ଣ୍ଣ ପଥର ଶୂଦ୍ର ଶ୍ରେଣୀୟ ଅଟେ । ଏଣୁ ମନ୍ଦିର ନିର୍ମାଣ ବେଳେ କର୍ତ୍ତା ସ୍ୱଜାତୀୟ ପଥର ବ୍ୟବହାର କରିବା ଉଚିତ୍ । ଏହା ଦ୍ୱାରା ତାଙ୍କର ମଙ୍ଗଳ ହୁଏ ଏବଂ କୀର୍ତ୍ତି ଦୀର୍ଘସ୍ଥାୟୀ ହୋଇ ଯଶ ପ୍ରାପ୍ତି କରାଏ ।

ମନ୍ଦିର ନିର୍ମାଣ ସ୍ଥଳରେ କିମ୍ବା ଏହା ନିକଟରେ ଉପଯୁକ୍ତ ମାନର ପଥର ମିଳି ପାରିଲେ କର୍ତ୍ତା ତଥା ଶିଳ୍ପୀମାନଙ୍କ ନିମନ୍ତେ ନିର୍ମାଣ କାର୍ଯ୍ୟ ସହଜସାଧ୍ୟ ହୋଇଥାଏ । ଏହି ପରିପ୍ରେକ୍ଷୀରେ ଓଡ଼ିଶା ତଥା ଭାରତର ପ୍ରଖ୍ୟାତ ମନ୍ଦିର ନଗରୀ ଭୁବନେଶ୍ୱର କଥା ଚିନ୍ତା କରାଯାଉ । ଏହାର ଶାନ୍ତ, ଶୀତଳ, ଆଧ୍ୟାତ୍ମିକ ଭାବସମ୍ପନ୍ନ ପରିବେଶ ବ୍ୟତୀତ ମନ୍ଦିର ନିର୍ମାଣ ନିମନ୍ତେ ଉପଯୁକ୍ତ ପଥରର ପର୍ଯ୍ୟାପ୍ତ ପ୍ରାପ୍ତି ଯୋଗୁଁ ପ୍ରାୟ ଖ୍ରୀ: ୫ମ ଶତାବ୍ଦୀରୁ ଖ୍ରୀ: ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଏକ ହଜାର ବର୍ଷ ମଧ୍ୟରେ ବିଭିନ୍ନ ଶୈଳୀର କାରୁକଳା ପୂର୍ଣ୍ଣ, ଉଚ୍ଚକୋଟୀର ମନ୍ଦିରମାନ ଏଠାରେ ନିର୍ମାଣ ହୋଇ ପାରିଛି । ସେହିପରି କେନ୍ଦ୍ରାପଡ଼ା ଜିଲ୍ଲାର ରତ୍ନଗିରି, ଲଳିତଗିରି ଓ ଉଦୟଗିରି ଠାରେ ଥିବା ନିର୍ମାଣ ଉପଯୋଗୀ ପଥର ପାହାଡ଼ଗୁଡ଼ିକ ପ୍ରାଚୀନ ବୌଦ୍ଧ ବିହାରମାନଙ୍କର ନିର୍ମାଣରେ ସହାୟକ ହୋଇଛି । ପ୍ରାଚୀନ କାଳରୁ ଅଦ୍ୟାବଧି ଲଳିତଗିରି ପ୍ରସ୍ତର କାରୁକଳାର ଏକ କେନ୍ଦ୍ର ଭାବେ ପରିଗଣିତ ହୋଇ ଆସିଛି । ପଶ୍ଚିମଓଡ଼ିଶାର ରାଣୀପୁର-ଝରିଆଲ ଏକ ପଥୁରିଆ ସ୍ଥାନ ହୋଇ ଥିଲେ ହେଁ, ଏହି ପଥରଗୁଡ଼ିକ ସୂକ୍ଷ୍ମ କାରୁକାର୍ଯ୍ୟ ନିମନ୍ତେ ଅନୁପଯୁକ୍ତ ହୋଇ ଥିବାରୁ ଏଠାରେ ଅନେକ କାରୁକଳା ବିହୀନ, ନିରାଡ଼ମ୍ବର ମନ୍ଦିର ଦେଖାଯାଏ । ଏହା ବ୍ୟତୀତ ଏଠାରେ କେତୋଟି ଇଟା ମନ୍ଦିର ମଧ୍ୟ ରହିଛି । ଓଡ଼ିଶାର ଉତ୍ତରପଶ୍ଚିମାଞ୍ଚଳ, ମୟୂରଭଞ୍ଜ ଜିଲ୍ଲାର ଖିଚିଂ ଅଞ୍ଚଳରେ ପ୍ରାପ୍ତ ହେଉଥିବା ଈଷତ୍ ନୀଳ ରଙ୍ଗର 'କେନ୍ଦୁମୁଣ୍ଡି' ପଥରରେ ନିର୍ମିତ କାରୁକଳା ପୂର୍ଣ୍ଣ କୀଚକେଶ୍ୱରୀ ତଥା ଅନ୍ୟ କେତେକ ମନ୍ଦିର ସମେତ ସେଠାକାର ହିନ୍ଦୁ ଓ ବୌଦ୍ଧ ଦେବ ଦେବୀଙ୍କ ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ ।

କୋଣାର୍କର ବିଶାଳ ସୂର୍ଯ୍ୟ ମନ୍ଦିର ନିକଟରେ କୌଣସି ପଥର ପାହାଡ଼ କିମ୍ବା ପଥର ଖଣି ନାହିଁ । ମନ୍ଦିର ନିର୍ମାଣ ନିମନ୍ତେ ଏହି ସ୍ଥାନକୁ ବହୁ ପରିମାଣର ବିଶାଳ ପଥର ଖଣ୍ଡମାନ କେଉଁଠାରୁ କିପରି ଅଣା ଯାଇପାରିଲା, ତାହା ଚିନ୍ତା କଲେ ବିସ୍ମିତ ହେବାକୁ ପଡ଼େ । ମନ୍ଦିର ନିର୍ମାଣ ପରେ ବଳି ପଡ଼ିଥିବା ବହୁ ବିଶାଳ ପଥର ଖଣ୍ଡ ଅଦ୍ୟାବଧି ମନ୍ଦିର ବେଢ଼ାର ଚତୁଃପାର୍ଶ୍ୱରେ ବିକ୍ଷିପ୍ତ ଭାବେ ପଡ଼ିରହିଥିବା ଦେଖାଯାଏ । କୋଣାର୍କର ଚାରିପାଖ ନଦୀ, ନାଳ ଓ ସମୁଦ୍ର ଦ୍ୱାରା ପରିବେଷ୍ଟିତ । ସେ ସମୟରେ ଯାତାୟତ ତଥା ପରିବହନ ନିମନ୍ତେ ଉପଯୁକ୍ତ ରାସ୍ତା ଓ ପରିବହନ ବ୍ୟବସ୍ଥା ନଥିଲା । ଐତିହାସିକମାନେ ଅନୁମାନ କରନ୍ତି

ଯେ, ମହାନଦୀ ଓ ତାର ଅନ୍ୟ ଶାଖା, ପ୍ରଶାଖା ନଦୀପଥଦେଇ ନରାଜ ଓ ମହାନଦୀ କୂଳ ଓ ଅନ୍ୟ ସ୍ଥାନମାନଙ୍କରୁ କାଠ ଗଣ୍ଡିରେ ତିଆରି ଶଗଡ଼ିମାନଙ୍କରେ ପଥର ଲଦି ତାହାକୁ ହାତୀ ସାହାଯ୍ୟରେ ନଦୀ କୂଳକୁ ଆଣିବା ପରେ ସେଠାରୁ ବଡ଼ ବଡ଼ କାଠ ଗଣ୍ଡିରେ ନିର୍ମିତ ଭେଳା ସାହାଯ୍ୟରେ, ଜଳ ପଥରେ କୋଣାର୍କ ପର୍ଯ୍ୟନ୍ତ ଅଣା ଯାଉଥିଲା ।କୋଣାର୍କ ନିକଟରେ ପଥରଭସା ନାମକ ଏକ ଶୁଷ୍କ ନଦୀର ସ୍ଥିତି ବର୍ତ୍ତମାନ ମଧ୍ୟ ରହିଛି । କୋଣାର୍କର କାରୁକାର୍ଯ୍ୟରେ କାଠ ଗଡ଼ର ଏକ ମଞ୍ଚ ସଦୃଶ ଶଗଡ଼ି ଉପରେ ବିଶାଳ ପଥର ଖଣ୍ଡମାନ ଲଦାହୋଇ ଥିବା ବେଳେ ମଞ୍ଚର ତଳ ଭାଗରେ ଗଡ଼ିବା ଭଳି କେତେକ କାଠ ଗଣ୍ଡିକୁ ବ୍ୟବହାର କରାଯାଇଥିବା ଏବଂ ଏହି ପରିବହନ ବ୍ୟବସ୍ଥାରେ ବହୁ ବ୍ୟକ୍ତି ନିଯୁକ୍ତ ହୋଇଥିବା ଦେଖାଯାଏ । ଏହି କଷ୍ଟସାଧ କାର୍ଯ୍ୟରେ ସଂପୃକ୍ତ ଥିବା ତତ୍କାଳୀନ ବ୍ୟକ୍ତିଙ୍କ ବୁଦ୍ଧି, ବଳ ଓ କୌଶଳ ନିଶ୍ଚିତ ଭାବେ ପ୍ରଶଂସନୀୟ ।

ଶିଳ୍ପଚନ୍ଦ୍ରିକା ନାମକ ଏକ ଶିଳ୍ପ ପୋଥିରେ ସାତ ପ୍ରକାର ମନ୍ଦିର ଉପଯୋଗୀ ପଥରର ନାମ ଉଲ୍ଲେଖ ଅଛି । ସେଗୁଡ଼ିକ ହେଲା - ସାହାଣ, ଛିଟଶାହାଣ, ବଡ଼ପଗଡ଼, ଧୋବକୁଣ୍ଡା, ରସଛିଣ୍ଡା , ଅକର୍ମଶିଳା ଓ ନୀଳକୃଷାଣ । ପୁନଶ୍ଚ କେଉଁ ପଥର କେଉଁ ପ୍ରକାର ନିର୍ମାଣ ପାଇଁ ଉପଯୁକ୍ତ, ତାହା ମଧ୍ୟ କୁହା ଯାଇଛି । ସାହାଣ ପଥରରେ ମୂଳଦୁଆ ବା ପୋତା, କୁଣ୍ଡା ବା କନ୍ଦା ପଥରରେ ବାଡ଼, ବିଗ୍ରହଗୁଡ଼ିକ ଅକର୍ମଶିଳାରେ ଏବଂ ବେକି, ମୁଦ ଇତ୍ୟାଦି ଛିଟସାହାଣ, ଏହି ଚାରି ଶ୍ରେଣୀର ପଥରରେ କରିବା ବିଧେୟ ବୋଲି କୁହାଯାଇଛି । ତେବେ, ଓଡ଼ିଶାର ପ୍ରାକୃତିକ ଗଠନକୁ ନେଇ କେତେକ ସ୍ଥାନରେ ନିର୍ମାଣ ଉପଯୋଗୀ ବିଭିନ୍ନ ପ୍ରକାର ପଥର ରହିଛି । ଭୁବନେଶ୍ୱର ଓ ତା'ର ଆଖପାଖ ଅଞ୍ଚଳରେ ମିଳୁଥିବା ମନ୍ଦିର ଉପଯୋଗୀ କେତେକ ପଥରର ସଂକ୍ଷିପ୍ତ ସୂଚନା ନିମ୍ନରେ ଦିଆଗଲା ।

**ବାଲିପଥର :** ବିଭିନ୍ନ ପ୍ରକାର ବାଲିପଥର ମିଳେ । ଏଗୁଡ଼ିକୁ ଶିଳ୍ପୀମାନେ ବାଲିଆକନ୍ଦା ମଧ୍ୟ କହିଥାଆନ୍ତି । ଖୋର୍ଦ୍ଧା, ଭୁବନେଶ୍ୱର, କଟକ, ଲଳିତଗିରି ଇତ୍ୟାଦି ଅଞ୍ଚଳରେ ଏହି ପ୍ରକାର ପଥର ପର୍ଯ୍ୟାପ୍ତ ଭାବରେ ରହିଛି । ମନ୍ଦିର ଓ ମୂର୍ତ୍ତି ନିର୍ମାଣ ଉପଯୋଗୀ କେତେକ କନ୍ଦା ପଥର ସୂଚନା ନିମ୍ନରେ ଦିଆଗଲା ।

**ବାଲି-ବଗଡ଼ାକନ୍ଦା :** ଏହି ପଥରର ଦାନାଗୁଡ଼ିକ ସାମାନ୍ୟ ବଡ଼, ରଙ୍ଗ ଫିକା ଧଳା କିମ୍ବା ଈଷଦ୍ ହଳଦିଆ । ଏହି ଜାତୀୟ ପଥର ଭୁବନେଶ୍ୱରର ଖଣ୍ଡଗିରି ଅଞ୍ଚଳରେ ଦେଖାଯାଏ । ମହାନଦୀ କୂଳର ନରାଜ ପାହାଡ଼ରେ ଥିବା ଏହି ପ୍ରକାର ପଥର ହଳଦୀ ରଙ୍ଗର ଏବଂ ଏଗୁଡ଼ିକ ଶକ୍ତ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ସମେତ ଯମେଶ୍ୱର, ବ୍ରହ୍ମେଶ୍ୱର, ସିଦ୍ଧେଶ୍ୱର ମନ୍ଦିରମାନଙ୍କରେ ଏହି ପଥର ଅଧିକ ବ୍ୟବହୃତ ହୋଇଛି ।

**ରାଜାରାଣିଆ ପଥର :** ଏହି ପ୍ରକାର ପଥରର ଦାନା ଗୁଡ଼ିକ ସୂକ୍ଷ୍ମ । ଏହା ବିଭିନ୍ନ ଆକର୍ଷଣୀୟ ରଙ୍ଗରେ ଦେଖାଯାଏ । ଉଭୟ ମନ୍ଦିର ଓ ମୂର୍ତ୍ତି ଗଠନ ନିମନ୍ତେ ଏହା ଉପଯୁକ୍ତ । ବିଭିନ୍ନ ରଙ୍ଗର ରାଜାରାଣିଆ କନ୍ଦାପଥର ବିଷୟରେ ନିମ୍ନରେ ସୂଚନା ଦିଆଗଲା ।

**ଲାଲ-ରାଜାରାଣିଆ** : ଏଗୁଡ଼ିକର ରଙ୍ଗ ଈଷଦ୍ ଲାଲ୍ କିମ୍ବା ଫିକା ଗେରୁଆ । ଭୁବନେଶ୍ୱର ରାଜାରାଣୀ, ମୁକ୍ତେଶ୍ୱର ଓ ଗୌରୀ ମନ୍ଦିର ମୁଖ୍ୟତଃ ଏହି ପଥରରେ ନିର୍ମିତ ।

**ହଳଦୀ-ରାଜାରାଣିଆ** : ଏହି ପଥର ଲାଲ ରାଜାରାଣିଆ ଅପେକ୍ଷା ନରମ ଏବଂ ଏହାର ରଙ୍ଗ ଈଷଦ୍ ହଳଦିଆ । ଉପରୋକ୍ତ ମନ୍ଦିରମାନଙ୍କର କେତେକ ସ୍ଥାନରେ ଏହି ପଥର ବ୍ୟବହାର କରାଯାଇଛି ।

**ଧଳାମିଶା ରାଜାରାଣିଆ** : ଏହି ପଥରର ଦାନା ସୂକ୍ଷ୍ମ ହୋଇଥିବା ସତ୍ତ୍ୱେ ଏହା ପୂର୍ବୋକ୍ତ ଦୁଇ ପ୍ରକାର ପଥର ଅପେକ୍ଷା କଠିନ । ଏଣୁ ସ୍ଥପତିମାନେ ଖମ୍ବ, ନବଗ୍ରହପାଟ, ଦ୍ୱାରବନ୍ଧ ଇତ୍ୟାଦି ସ୍ଥାନରେ ଏହି ପଥର ବ୍ୟବହାର କରିବା ପାଇଁ ଉପଯୁକ୍ତ ମନେ କରନ୍ତି । କିଆ- ରାଜାରାଣିଆ ନାମକ ଏହି ପ୍ରକାର ଅନ୍ୟ ଏକ ପଥର ଈଷଦ୍ ଗହମ ରଙ୍ଗର ଦେଖାଯାଏ ।

**ଛିଟକନ୍ଦା** : ଏହା ଏକ ସ୍ୱତନ୍ତ୍ର ଶ୍ରେଣୀର ପଥର ନରମ ଓ କଠିନ ଉଭୟ ପ୍ରକାର ପ୍ରାପ୍ତ ହୋଇଥାଏ । ଏହି କାରଣରୁ ମନ୍ଦିର, ମୂର୍ତ୍ତିକଳା ତଥା ଅନ୍ୟାନ୍ୟ ସ୍ଥାୟୀ ନିର୍ମାଣ ନିମନ୍ତେ ଏହି ପଥରଗୁଡ଼ିକ ଉପଯୁକ୍ତ । ଏଥିରେ ଦୁଇ ତିନି ପ୍ରକାର ରଙ୍ଗ ସମେତ ମିଶ୍ରିତ ରଙ୍ଗରେ ଛିଟ ପଥର ମଧ୍ୟ ଦେଖାଯାଏ ।

**ଖଡ଼ିଆକନ୍ଦା** : ଏହି କିସମ ପଥରର ରଙ୍ଗ ସାଧାରଣତଃ ଧଳା କିମ୍ବା ଧୂସରିଆ । ଏହାର ଏକ କୋମଳ ପଥରକୁ 'ଖଡ଼ିପଥର' ମଧ୍ୟ କୁହାଯାଏ । ଏହା ଅଧିକ ପରିମାଣରେ ପରଶୁରାମେଶ୍ୱର ଓ ବୋଇତାଳ ଦେଉଳରେ ବ୍ୟବହାର କରାଯାଇଛି ।

**ଫୁଲ-ଖଡ଼ିଆକନ୍ଦା** : ଏହା ଅପେକ୍ଷାକୃତ ନରମ ହୋଇ ଥିବାରୁ ମୂର୍ତ୍ତି ତଥା ମଣ୍ଡନକୃତି ଖୋଦନ ନିମନ୍ତେ ଅଧିକ ଉପଯୋଗୀ । ଭୁବନେଶ୍ୱରର ଶାରୀ ଦେଉଳ ଏବଂ ଅନନ୍ତ ବାସୁଦେବ ମନ୍ଦିରରେ ଏହି ପ୍ରକାର ପଥର ଅଧିକ ବ୍ୟବହାର କରାଯାଇଛି ।

**ବାଲି-ଖଡ଼ିଆକନ୍ଦା** : ଏହି ପଥରରେ ବାଲିଦାନା ଗୁଡ଼ିକ ସ୍ପଷ୍ଟ । ଏଣୁ ସୂକ୍ଷ୍ମ କାରୁକାର୍ଯ୍ୟ କିମ୍ବା ମୂର୍ତ୍ତି ଖୋଦନ ନିମନ୍ତେ ଅନୁପଯୁକ୍ତ । ଏଣୁ ଏଗୁଡ଼ିକ ମନ୍ଦିରର ସାଧା ବାଡ଼, ପାହାଚ ଚଟାଣ ଇତ୍ୟାଦିରେ ଅଧିକ ବ୍ୟବାହାର କରାଯାଇଥାଏ ।

**ଡାଳିମା** : ଅନ୍ୟ ଏକ ପ୍ରକାର କନ୍ଦା ପଥର । ଏଥିରେ ଲୌହ ଅଂଶ ଅଧିକ ଥିବାରୁ ଅଧିକ ଶକ୍ତ ତଥା ରକ୍ତ ବର୍ଣ୍ଣ । ଏହା କମ୍ ପରିମାଣରେ ଉପଲବ୍ଧ ହୋଇ ଥାଏ । ରଙ୍ଗର ପାର୍ଥକ୍ୟକୁ ନେଇ ଶିଳ୍ପୀମାନେ ଏହାକୁ ତିନି ଶ୍ରେଣୀରେ ବିଭକ୍ତ କରନ୍ତି; ଯଥା : ୧. ମାଟିଆ-ରଙ୍ଗଡ଼ାଳିମା, ୨-ସଫା-ରଙ୍ଗଡାଳିମା, ୩- ରଙ୍ଗଡାଳିମା ମିଶ୍ରିତ ଖଡ଼ିଆକନ୍ଦା ।

ଅନ୍ୟ ଏକ ପ୍ରକାର ଖଡ଼ିଆ କନ୍ଦା ପଥର ଦେଖାଯାଏ । ଏହା ଅତି ଶକ୍ତ, ଏପରିକି ସଠିକ ଭାବେ କାଟି ହୁଏ ନାହିଁ । ଏଣୁ ଏହି ପଥରର ଅସମାନ ଖଣ୍ଡ ଗୁଡ଼ିକ ମୂଳଦୁଆର ଗର୍ତ୍ତ ପୂରଣ ନିମନ୍ତେ କିମ୍ବା ଚଟାଣର ତଳେ ବ୍ୟବହାର କରାଯାଏ ।

**ମାଙ୍କଡ଼ା ପଥର :** ଏହା ଏକ ନିମ୍ନ ମାନର ପଥର । ବଡ଼ ବଡ଼ ଛିଦ୍ର ଓ ଗୋଡ଼ିଗୁଡ଼ିକ ଯୋଗୁ ଏହା କୌଣସି ମସୃଣ କାର୍ଯ୍ୟ ନିମନ୍ତେ ଅନୁପଯୁକ୍ତ । ଦେଉଳର ବାହାର ପାଚେରୀ ଇତ୍ୟାଦି ନିର୍ମାଣ ତଥା ବାସଗୃହ ନିମନ୍ତେ ଏହା ଅଧିକ ବ୍ୟବହାର ହୋଇଥାଏ । କେତେକ ସ୍ଥାନରେ ଏହି ପ୍ରକାର ପଥରରେ ଅଳ୍ପ କେତେକ ରୁକ୍ଷ ମନ୍ଦିର ନିର୍ମିତ ହୋଇଥିବା ଦେଖାଯାଏ ।

**କେନ୍ଦୁମୁଣ୍ଡି ପଥର :** ଭୁବନେଶ୍ୱରର ଅନେକ ମନ୍ଦିରର ପାର୍ଶ୍ୱଦେବତା ଓ ଅନ୍ୟ କେତେକ ମୂର୍ତ୍ତି ଏହି ପ୍ରକାର ନୀଳ ରଙ୍ଗର ପଥରରେ ନିର୍ମିତ । ଏହି ପଥର ମୁଖ୍ୟତଃ ବାଲେଶ୍ୱର ଜିଲ୍ଲାର ନୀଳଗିରି ଓ ମୟୂରଭଞ୍ଜ ଜିଲ୍ଲାର ଖିଚିଂ ଅଞ୍ଚଳରେ ପ୍ରାପ୍ତ ହୋଇଥାଏ । ଏଥିରେ କଠିନ ଓ କୋମଳ ଉଭୟ ପ୍ରକାର ପଥର ଦେଖାଯାଉ ଥିବାରୁ ଶିଳ୍ପୀମାନେ ମୂର୍ତ୍ତି ଖୋଦନ ନିମନ୍ତେ ଏହାକୁ ଅଧିକ ପସନ୍ଦ କରି ଥାଆନ୍ତି । ଏଗୁଡ଼ିକ 'କେନ୍ଦୁମୁଣ୍ଡି' ନାମରେ ପରିଚିତ ।

**ମୁଗୁନି ପଥର :** ଏହା ଈଷଦ୍ ନୀଳ, ଧୂସରିଆ କଠିନ ତଥା, ଅପେକ୍ଷାକୃତ କୋମଳ ଗୁଣ ସଂପନ୍ନ ପଥର ଅଟେ । ଦ୍ୱିତୀୟ ପ୍ରକାର ଉଚ୍ଚକୋଟୀର ପଥରଗୁଡ଼ିକ ପ୍ରତିମା ନିର୍ମାଣ ନିମନ୍ତେ ଉପଯୁକ୍ତ । କେତେକ ସ୍ଥଳେ ଶିବଲିଙ୍ଗ ଏହି ପଥରରେ ନିର୍ମିତ ହୋଇଥିବା ଦେଖାଯାଏ । ମନ୍ଦିର ସ୍ଥାପତ୍ୟର କେତେକ ମୁଖ୍ୟ ସ୍ଥାନରେ ଦୃଢ଼ତା ଓ 'ସ୍ଥାୟିତ୍ୱ ନିମନ୍ତେ କଠିନ କିସମର ମୁଗୁନି ପଥର ବ୍ୟବହାର ହୋଇଥାଏ ।

## ଲେପ ଓ ବାନ୍ଧେଣି

ପଥରକୁ ପଥର ସହିତ ଯୋଡ଼ିବା ନିମନ୍ତେ ଯେଉଁ ଅଠାଳିଆ ପଦାର୍ଥ ପ୍ରସ୍ତୁତ କରାଯାଉଥିଲା ତାହାକୁ କେତେକ ଶିଳ୍ପପୋଥିରେ 'ଲେପ' କୁହାଯାଇଛି । ଏଗୁଡ଼ିକ ବୃକ୍ଷଜାତ ପଦାର୍ଥମାନଙ୍କୁ ନେଇ ନିର୍ଦ୍ଦିଷ୍ଟ ଭାଗ ମାପରେ ପ୍ରସ୍ତୁତ କରା ଯାଉଥିଲା । ଗବ, କଇଥ, ଶିମୂଳି ଫୁଲ, ବର ଓ ଅନ୍ୟ କେତେକ ବୃକ୍ଷର ଛାଲି ସହିତ ଅର୍କ, ସଉପ, ଝୁଣା, କେନ୍ଦୁ ଓ ଦେବଦାରୁ ରସରୁ 'ବଜ୍ରଲେପ' ନାମକ ଏକ ମିଶ୍ରଣ ପ୍ରସ୍ତୁତ ହେଉଥିଲା । 'ସୁଧାଲେପ' ନାମକ ଅଠାଳିଆ ପଦାର୍ଥରେ ଲାକ୍ଷା, ବେଲ ଫଳର ଅଠା ଓ ଶଣ ବ୍ୟବାହାର ହେଉଥିଲା । ମୂର୍ତ୍ତି ଓ କାରୁକଳା ଖୋଦନ ପରେ ଏହି ଲେପର ପତଳା ଆସ୍ତରଣ ବ୍ୟବହାର କରିବା ଦ୍ୱାରା ସେଗୁଡ଼ିକ ଖରା, ବର୍ଷାର ପ୍ରଭାବରୁ ବହୁ ମାତ୍ରାରେ ରକ୍ଷା ପାଇ ଦୀର୍ଘ ସ୍ଥାୟୀ ହେଉ ଥିଲା । ମୂର୍ତ୍ତିକୁ ଅଧିକ ମସୃଣ ଓ ଚିକ୍କଣ କରିବା ନିମନ୍ତେ ଅନ୍ୟ ଏକ ପ୍ରକାର ପ୍ରଲେପ ପ୍ରସ୍ତୁତ ହେଉଥିଲା । ଏହା 'ରାଳ' ବା 'କରାଳ' ନାମରେ ପରିଚିତ । ଏଥିରେ ନୂଆ ଲୁଗା ଗୁଣ୍ଡ, ଝୁଣା ଓ ଘଣା ତେଲ ବ୍ୟବହୃତ ହେଉଥିବା ଜଣାଯାଏ ।

'ଶିଳ୍ପଚନ୍ଦ୍ରିକା' ପୋଥିରେ ପଥର ଯୋଡ଼େଇ ନିମନ୍ତେ ଅନ୍ୟ ଏକ ମିଶ୍ରଣ ବିଷୟ ଉଲ୍ଲେଖ ଅଛି । ଏହା ମଧ୍ୟ 'କରାଳ' ନାମରେ ପରିଚିତ । ସାତ ପଳ ଝୁଣା ସହିତ ତିରିଶ ମାଣ ବଟା ବିରିକୁ ମିଶାଇ ଅଗ୍ନି ପାକ ଦ୍ୱାରା ଏହା ପ୍ରସ୍ତୁତ କରାଯାଏ । ପଥରକୁ ପଥର ଘଷାଯାଇ ଛିଦ୍ର ବା ଫାଙ୍କ ଗୁଡ଼ିକ ସମ୍ପୂର୍ଣ୍ଣ କ୍ଷୟ ହେବା ପରେ କରାଳ ଦ୍ୱାରା ଯୋଡ଼େଇ କଲେ ତାହା ଶକ୍ତ ଓ ସ୍ଥାୟୀ ହୋଇଥାଏ ।

ଶକ୍ତ ପଥରରେ ମୂର୍ତ୍ତି ଓ କାରୁକଳା ଖୋଦନ ବେଳେ ଅସୁବିଧା ହୁଏ । ଏହି ପରିସ୍ଥିତିରେ କେତେକ ପ୍ରାକୃତିକ ପଦାର୍ଥର ମିଶ୍ରଣରେ ପ୍ରସ୍ତୁତ ଲେପ ଦ୍ୱାରା ପଥରକୁ କୋମଳ କରାଯାଉଥିବା ବିଷୟ 'ଶିଳ୍ପଚନ୍ଦ୍ରିକା' ପୋଥିରେ ଦେଖିବାକୁ ମିଳେ । ଏହି ମୌଳିକ ପଦାର୍ଥଗୁଡ଼ିକ ହେଲା ବର, ଅଁଳା, ପାରାଗୁଣ୍ଡ, କୋଇଲେଖା, ବିଡ଼ଙ୍ଗ ପତ୍ର ରସ, ଶିବଲିଙ୍ଗ ଫଳ ଓ କଞ୍ଚା ଶାମୁକା ।

**ବାନ୍ଧେଣି :**

ପଥରକୁ ପଥର ସହିତ ସଂଯୋଗକରି ରଖିବା ନିମନ୍ତେ କେତେକ ପ୍ରକାର କୌଶଳ ଅବଲମ୍ବନ କରାଯାଉଥିଲା । ଦୁଇଟି ପଥରର ସଂଯୋଗ ରେଖାକୁ କେନ୍ଦ୍ରକରି ଏକ ଡମ୍ବରୁ ସଦୃଶ ଗର୍ତ୍ତ ଖୋଦିତ ହେଉଥିଲା । ଏହା ଦ୍ୱାରା ପ୍ରତ୍ୟେକ ପଥରରେ ଡମ୍ବରୁର ଅର୍ଦ୍ଧଭାଗର ଏକ ଗର୍ତ୍ତ ରହୁଥିଲା । ଏହା ପରେ ଅନ୍ୟ ଗୋଟିଏ ପଥରରେ ଉଭୟ ପଥରର ଗର୍ତ୍ତକୁ ଖାପ ଖାଇବା ଭଳି ସଂପୂର୍ଣ୍ଣ ଡମ୍ବରୁ ସଦୃଶ ପଥରଟିଏ କଟାଯାଇ, ଗର୍ତ୍ତ ମଧରେ ସଠିକ ଭାବେ ଖପାଇ ଦିଆ ଯାଉଥିଲା । ଏହା ଦ୍ୱାରା ଡ଼ମ୍ବରୁ ପଥରଟି ଦୁଇ ପଥର ଘୁଞ୍ଚିନଯିବା ଭଳି ବାନ୍ଧି ରଖୁଥିଲା । ପ୍ରାଚୀନ ମନ୍ଦିରମାନଙ୍କରେ ଏହି ପ୍ରକାର ବାନ୍ଧେଣି ଦେଖାଯାଉଥିବା ବେଳେ ମଧ୍ୟଯୁଗୀୟ ମନ୍ଦିର ମାନଙ୍କରେ ଦୁଇ ପଥରକୁ ବାନ୍ଧି ରଖିବା ନିମନ୍ତେ ବିଭିନ୍ନ ପ୍ରକାରର ଲୁହା ଆଙ୍କୁଡ଼ା ବ୍ୟବହାର କରାଯାଇଛି । ସ୍ଥାପତ୍ୟର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ଆବଶ୍ୟକତା ଅନୁଯାୟୀ ଏହି ବାନ୍ଧଣିଗୁଡ଼ିକ ବ୍ୟବହାର କରାଯାଇଥିବା ବେଳେ ବଡ଼ ବଡ଼ ମୂର୍ତ୍ତିର ଅଙ୍ଗ ପ୍ରତ୍ୟଙ୍ଗ ସଂଯୋଗ ନିମନ୍ତେ ମଧ ବିଭିନ୍ନ ପ୍ରକାର ପଥର ଓ ଲୁହାର ବାନ୍ଧେଣି ବ୍ୟବହାର ହୋଇଥିବା ଦେଖାଯାଏ ।


ପଥର ବାନ୍ଧେଣି


ଲୁହା ବାନ୍ଧେଣି

**ପ୍ରାଚୀନ ମାପ ପଦ୍ଧତି**

| | | | |
|---|---|---|---|
| ସ୍ଥୂଳ ମାପ : | ୧୬ ସୁତା | = | ୧ ଆଙ୍ଗୁଳ |
| | ୧୬ ଆଙ୍ଗୁଳ | = | ୧ ହାତ |
| ସୂକ୍ଷ୍ମ ମାପ : | ୪ ବାଳାଗ୍ର | = | ୧ କନିକା |
| | ୪ କନିକା | = | ୧ ଦରଭ ବା କୁଶାଗ୍ର |
| | ୪ କୁଶାଗ୍ର | = | ୧ ୟର୍କ |
| | ୪ ୟର୍କ | = | ୧ ପାଆ |
| | ୪ ପାଆ | = | ୧ ଆଙ୍ଗୁଳ । |

**କୋଣ କ୍ଷେତ୍ର**

| | | |
|---|---|---|
| ବ୍ରହ୍ମ କାଣ୍ଡ | = | ଚ଼ତୁଷ୍କୋଣ |
| ଶିବ କାଣ୍ଡ | = | ପଞ୍ଚକୋଣ କ୍ଷେତ୍ର |
| ସ୍କନ୍ଦ କାଣ୍ଡ | = | ଷଡ଼ଭୁଜ କ୍ଷେତ୍ର |
| ବିଷ୍ଣୁ କାଣ୍ଡ | = | ଅଷ୍ଟକୋଣ କ୍ଷେତ୍ର |
| ରୂଦ୍ର କାଣ୍ଡ | = | ଷୋଡ଼ଶକୋଣ କ୍ଷେତ୍ର |

# କଳିଙ୍ଗ ମନ୍ଦିରର ନିର୍ମାଣ ଧାରା

ମନ୍ଦିର ନିର୍ମାଣ କାର୍ଯ୍ୟ ନିମନ୍ତେ ଜଣେ, ଦୁଇ ଜଣ ଦକ୍ଷ ସ୍ଥପତିଙ୍କ ବ୍ୟତୀତ ବିଭିନ୍ନ ଶ୍ରେଣୀର ସହଯୋଗି ଶିଳ୍ପୀ ଆବଶ୍ୟକ ହୋଇଥାଆନ୍ତି । 'ମନୁସ୍ମୃତି' ଗ୍ରନ୍ଥରେ ପ୍ରାଚୀନ ଭାରତର ଶିଳ୍ପୀ ବ୍ୟବସ୍ଥା ସମ୍ପର୍କରେ ଏକ ସୁନ୍ଦର ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରେ ଉଲ୍ଲେଖ ଅଛି ଯେ, ମୁଖ୍ୟ ସ୍ଥପତିଙ୍କ ନିର୍ଦ୍ଦେଶରେ ଯେଉଁ ବ୍ୟକ୍ତି ଦଣ୍ଡ ଓ ସୂତ୍ର ଧାରଣ କରି ନିର୍ମାଣର ମାପଚୁପ ଓ ଅନୁପାତ ନିର୍ଦ୍ଧାରଣ କରନ୍ତି ସେ 'ସୂତ୍ରଗ୍ରହିଣ' ଅଟନ୍ତି । ଯେଉଁମାନେ କଟାପଥରକୁ ଯୋଡ଼େଇ କରି ନିର୍ମାଣ କାର୍ଯ୍ୟ ବୃଦ୍ଧି କରନ୍ତି ସେହି କାରିଗରମାନେ 'ବର୍ଦ୍ଧନିକ' ନାମରେ ପରିଚିତ ହେଉଥିବା ବେଳେ ମୁଖ୍ୟ ସ୍ଥପତିଙ୍କ ନିର୍ଦ୍ଦେଶରେ ଯେଉଁ ଶିଳ୍ପୀମାନେ ସ୍ଥାପତ୍ୟରେ ମଣ୍ଡନକୃତି ଏବଂ ମୂର୍ତ୍ତିକଳା ଉତ୍‌କୀର୍ଣ୍ଣ କରନ୍ତି ସେମାନଙ୍କୁ 'ତକ୍ଷକ' କୁହାଯାଏ । ଏହା ବ୍ୟତୀତ ମୁଖ୍ୟ ସ୍ଥପତିଙ୍କ ଜ୍ଞାନ ଓ ଗୁଣ ବିଷୟରେ କୁହାଯାଇଛି ଯେ, ସେ ବାସ୍ତୁଶାସ୍ତ୍ର ଏବଂ ଶିଳ୍ପଶାସ୍ତ୍ରରେ ନିପୁଣ ହୋଇଥିବା ସହିତ ପୁରାଣ, ଧର୍ମଶାସ୍ତ୍ରରେ ତାଙ୍କ ଜ୍ଞାନଥିବା ବାଞ୍ଛନୀୟ । ଗଣିତରେ ମଧ୍ୟ ସେ ଅଭିଜ୍ଞ ହୋଇଥିବେ । ସର୍ବୋପରି ସେ ଜଣେ କର୍ମଦକ୍ଷ, ସତ୍ୟବାଦୀ ନିଷ୍ଠାପର, ଉଚ୍ଚମନା ଓ ଧର୍ମପରାୟଣ ବ୍ୟକ୍ତି ହେବା ଉଚିତ୍ । ଅନ୍ୟ ଶିଳ୍ପୀମାନଙ୍କ ବିଷୟରେ ଉଲ୍ଲେଖ ଅଛି ଯେ, ସୂତ୍ରଗହିଣ ମୁଖ୍ୟ ସ୍ଥପତିଙ୍କ ପୁତ୍ର କିମ୍ବା ପୁତ୍ରସମ ବିଶ୍ୱସ୍ତ ବ୍ୟକ୍ତି ହେବା ବାଞ୍ଛନୀୟ । ସେ ସର୍ବଦା ସ୍ଥପତିଙ୍କ ଆଦେଶ ଓ ନିର୍ଦ୍ଦେଶ ଅନୁଯାୟୀ ମାପର ଅନୁପାତମାନ ସଠିକ ଭାବେ ନିର୍ଦ୍ଧାରଣ କରିବେ । ତାଙ୍କର ମାନ-ଅନୁମାନ ଜ୍ଞାନ ଉପରେ ନିର୍ମାଣର ନିଖୁଣତା ଓ ନିର୍ଭୁଲତା ନିର୍ଭର କରେ । ବର୍ଦ୍ଧନିକମାନେ 'ସୂତ୍ରଗ୍ରହିଣ'ଙ୍କ ନିର୍ଦ୍ଦେଶ ମତେ ପଥରକୁ ଯୋଡ଼େଇ କରିବା ସହିତ ତାର ଅନ୍ତିମ ନିଖୁଣତା ଆଣି ପାରୁଥିବେ । 'ତକ୍ଷକ' ବା ମୂର୍ତ୍ତିକାରମାନେ ପଥରକୁ ବିଭିନ୍ନ ବକ୍ରତାରେ କାଟିବାରେ ସିଦ୍ଧହସ୍ତ ହୋଇଥିବେ । ସେମାନେ ମୁଖ୍ୟ ସ୍ଥପତିଙ୍କ ନିର୍ଦ୍ଦେଶ ମାନି ସଦା ସତ୍‌ପଥରେ ପରିଚାଳିତ ହେବେ ଏବଂ ସର୍ବ ଶେଷରେ ମୂର୍ତ୍ତିଗୁଡ଼ିକର ମସୃଣତା ଆଣିବାରେ ସକ୍ଷମ ଥିବା ସହିତ ମୃଣ୍ମୟ ମୂର୍ତ୍ତି ଓ ଚିତ୍ରକଳାରେ ମଧ୍ୟ ସେମାନଙ୍କର ଦକ୍ଷତା ଥିବା ଆବଶ୍ୟକ ।

ଉପରୋକ୍ତ ବିଷୟରୁ ଜଣାଯାଏ ଯେ, ଏକ ସୁସଙ୍ଗଠିତ ଶିଳ୍ପୀଗୋଷ୍ଠୀ ହିଁ ମନ୍ଦିର ନିର୍ମାଣ ଦାୟିତ୍ୱ ନେଇ ପାରନ୍ତି । ଏହା ବ୍ୟତୀତ ମନ୍ଦିରର ବିଭିନ୍ନ ଶାସ୍ତ୍ରୀୟତା ସମ୍ପର୍କରେ ବିଦ୍ୱାନମାନଙ୍କ ମତାମତ ଏବଂ ଆବଶ୍ୟକୀୟ ବସ୍ତୁ ସଂଗ୍ରହ, ପରିବହନ ଏବଂ କାର୍ଯ୍ୟ କ୍ଷେତ୍ରରେ ସହଯୋଗ ନିମନ୍ତେ ସମାଜର ବିଭିନ୍ନ ଶ୍ରେଣୀର ବ୍ୟକ୍ତିଙ୍କ ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କର୍ତ୍ତାର ଇଚ୍ଛାକୁ ଦୃଷ୍ଟିରେ ରଖି ମୁଖ୍ୟ ସ୍ଥପତି ଶାସ୍ତ୍ରୀୟତା ସହିତ ନିଜର ସୃଜନଶୀଳତା ଓ ସୁଚିନ୍ତିତ ପରିକଳ୍ପନାରେ ମନ୍ଦିରର ଏକ କ୍ଷୁଦ୍ର ନମୁନାମନ୍ଦିର ବା ମଡ଼େଲ ପ୍ରସ୍ତୁତ କରନ୍ତି । ଏହାକୁ ଭିତ୍ତି କରି ପୂର୍ବ କଳ୍ପିତ ମନ୍ଦିରର ନିର୍ମାଣ କାର୍ଯ୍ୟ, ପର୍ଯ୍ୟାୟ କ୍ରମେ ଆରମ୍ଭ ହୁଏ ।



# ନିର୍ମାଣ ପ୍ରାରମ୍ଭର ଶୁଭାଶୁଭ ସଙ୍କେତ

କର୍ତ୍ତାଙ୍କ ଜନ୍ମଜାତକକୁ ନେଇ ଗଣକ ଓ ପଣ୍ଡିତମାନେ ମନ୍ଦିରର ଶୁଭାରମ୍ଭ ବେଳା ବା ମୁହୂର୍ତ୍ତ ନିର୍ଦ୍ଧାରଣ କରିଥାଆନ୍ତି । ଏହା ବ୍ୟତୀତ ବହୁ ବିଷୟବସ୍ତୁର ଶୁଭାଶୁଭକୁ ମଧ ଗୁରୁତ୍ୱ ଦିଆଯାଇଥାଏ ।

ମନ୍ଦିର ନିର୍ମାଣ ସ୍ଥାନ ବା ତା'ର ଚତୁଃପାର୍ଶ୍ୱରେ ବିଭିନ୍ନ ସ୍ୱାଦିଷ୍ଟ ରସାଳ ଫଳ ବୃକ୍ଷ, କଦମ୍ବ, ଚମ୍ପା, କେଶର, ନାଗେଶ୍ୱର, ମଲ୍ଲୀ, ମାଳତୀ ଭଳି ସୁଗନ୍ଧ ପୁଷ୍ପ ବୃକ୍ଷ, ଲତା ଇତ୍ୟାଦି ଥିଲେ ଶୁଭଫଳ ପ୍ରାପ୍ତି ହୋଇଥାଏ । କଣ୍ଟକ, କ୍ଷୀରଯୁକ୍ତ ବୃକ୍ଷ, ଅଶ୍ୱତଥ, ଲିମ୍ବ ଇତ୍ୟାଦି ବୃକ୍ଷମାନ ଅଶୁଭ ଫଳ ଦେଇଥାଏ ବୋଲି ବିଶ୍ୱାସ କରାଯାଏ ।

ମନ୍ଦିରର ଶୁଭାରମ୍ଭ ପୂଜାର୍ଚ୍ଚନା ବେଳେ କୌଣସି ବ୍ୟକ୍ତି ବା ଶିଶୁର କ୍ରନ୍ଦନ, ବିବାଦ,କଳହ, ଗୋ, ମହିଷ, ବୃଷଭ, ଶ୍ୱାନ, ଶୃଗାଳ ଇତ୍ୟାଦି ପଶୁଙ୍କ ରଡ଼ି ଅଶୁଭ ଅଟେ । ଏହି ଅଶୁଭ ଶବ୍ଦ ନିବାରଣ ତଥା ଶୁଭ ଶବ୍ଦର ସୃଷ୍ଟି ନିମନ୍ତେ କୁମାରୀ ଓ ସଧବା ରମଣୀମାନଙ୍କ ହୁଳହୁଳି, ଶଂଖ, କାହାଳି, ଘଣ୍ଟ ମୃଦଙ୍ଗ ଝାଞ୍ଜ ଇତ୍ୟାଦି ବାଦନ କରିବା ବିଧେୟ ବୋଲି ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି ।

ଶୁଭସ୍ତମ୍ଭ ସ୍ଥାପନ ନିମନ୍ତେ ଭୂମି ଖନନ ବେଳେ ଶ୍ୱେତ ମୃତ୍ତିକା କିମ୍ବା ଇଟା ବାହାରିଲେ ଶୁଭ ଏବଂ ମନୁଷ୍ୟ କିମ୍ବା ପଶୁ ପକ୍ଷୀର ଅସ୍ଥି , କେଶ, କୃଷ୍ଣ କିମ୍ବା ରକ୍ତ ବର୍ଣ୍ଣର ମୃତ୍ତିକା, ଅଙ୍ଗାର ଇତ୍ୟାଦି ବାହାରିଲେ ଅଶୁଭ ଘଟିବା ଆଶଙ୍କା କରାଯାଏ ।

ଶୁଭାରମ୍ଭ ବେଳେ ବିକଳାଙ୍ଗ, ବିଧବା, ରୋଗୀ, ଭିକାରୀଙ୍କ ଭଳି ବ୍ୟକ୍ତି, ସର୍ପ, ଶ୍ୱାନ, ମାର୍ଜ୍ଜାର, ଗୃଧ୍ର ଓ କାକ ଭଳି କେତେକ ପଶୁ ପକ୍ଷୀଙ୍କ ଉପସ୍ଥିତି ଓ ଏମାନଙ୍କ ରଡ଼ି ଅଶୁଭ ବୋଲି ବିଚାର କରାଯାଏ । ଶିଳ୍ପଶାସ୍ତ୍ରମାନଙ୍କରେ ଏହିପରି ଅନେକ ଶୁଭାଶୁଭ ବିଷୟର ସୂଚନା ସହିତ କେତେକ ଅଶୁଭ ବିଷୟର ପ୍ରତିକାର ମଧ ଉଲ୍ଲେଖ ଅଛି ।



# ବାସ୍ତୁନାଗ

ପୌରାଣିକ ଆଖ୍ୟାନମାନଙ୍କରୁ ଜଣାଯାଏ ଯେ ନାଗରାଜ ବାସୁକିଙ୍କର ବାସସ୍ଥାନ ପାତାଳପୁର । ସେ ନିଜ ମସ୍ତକରେ ପୃଥିବୀକୁ ଧାରଣ କରିଛନ୍ତି ଓ ବର୍ଷର ପ୍ରତ୍ୟେକ ନିର୍ଦ୍ଦିଷ୍ଟ ତିନି ମାସରେ ଥରେ ସେ ମସ୍ତକ ତଥା ଦେହର ସ୍ଥିତି ବଦଳାଇ ଥାଆନ୍ତି । ଶିଳ୍ପଶାସ୍ତ୍ରମାନଙ୍କରେ ଏହା 'ବାସ୍ତୁନାଗ' ଭାବେ ନାମିତ ହୋଇଥିବା ବେଳେ ଏହାର ଅଦୃଶ୍ୟ ଗତିକୁ 'ନାଗର ଚଳନ' କୁହାଯାଏ । ମନ୍ଦିର କିମ୍ବା ପ୍ରାସାଦ ନିର୍ମାଣ ପ୍ରାରମ୍ଭରେ ନାଗ ମସ୍ତକର ଶୁଭ ସ୍ଥିତି ଜ୍ୟୋତିଷ ଶାସ୍ତ୍ର ଅନୁସାରେ ନିର୍ଣ୍ଣୟ କରାଯାଏ । ଏହି ପଦ୍ଧତି ଦ୍ୱାରା ମନ୍ଦିର ମୂଳଦୁଆ ସ୍ଥାପନର ଶୁଭବେଳା ଓ ମନ୍ଦିରର ପ୍ରବେଶଦ୍ୱାରରେ ଦିଗ ସ୍ଥିର ହୋଇଥାଏ । ଅନ୍ୟ ଭାବରେ ଏହାକୁ 'ନାଗବନ୍ଧ ନିର୍ଣ୍ଣୟ' କହିଥାଆନ୍ତି ।

**ବିଭିନ୍ନ ମାସରେ ନାଗର ସ୍ଥିତି :**

ଭାଦ୍ରବ, ଆଶ୍ୱିନ ଓ କାର୍ତ୍ତିକରେ, ନାଗର ମସ୍ତକ ପୂର୍ବ ଦିଗକୁ ରହୁଥିବା ବେଳେ ବକ୍ଷଭାଗ ଉତ୍ତରକୁ, କଟିଭାଗ ଦକ୍ଷିଣକୁ ଓ ଲାଞ୍ଜଭାଗ ପଶ୍ଚିମକୁ ଥାଏ ।

ମାର୍ଗଶିର, ପୌଷ ଓ ମାଘ ମାସମାନଙ୍କରେ ନାଗର ମସ୍ତକ ଦକ୍ଷିଣକୁ, ବକ୍ଷଭାଗ ପୂର୍ବକୁ, କଟିଭାଗ ପଶ୍ଚିମକୁ ଓ ଲାଞ୍ଜଭାଗ ଉତ୍ତର ଦିଗକୁ ଥାଏ ।




ବାସ୍ତୁନାଗର ସ୍ଥିତି

ଫାଲ୍‌ଗୁନ, ଚୈତ୍ର ଓ ବୈଶାଖରେ, ନାଗର ମସ୍ତକ ପଶ୍ଚିମକୁ ରହୁଥିବା ବେଳେ ବକ୍ଷଭାଗ ଦକ୍ଷିଣକୁ, କଟିଭାଗ ଉତ୍ତରକୁ ଓ ଲାଞ୍ଜଭାଗ ପୂର୍ବକୁ ରହୁଥିବା ଜଣାଯାଏ ।

ଜ୍ୟେଷ୍ଠ, ଆଷାଢ଼ ଓ ଶ୍ରାବଣରେ, ନାଗର ମସ୍ତକ ଉତ୍ତର ଦିଗକୁ, ବକ୍ଷଭାଗ ପଶ୍ଚିମକୁ, କଟିଭାଗ ପୂର୍ବକୁ ଓ ଲାଞ୍ଜଭାଗ ଦକ୍ଷିଣକୁ ଥାଏ ।

ଅନୁଧ୍ୟାନରୁ ଜଣାଯାଏ ଯେ, ମାସ ବା ମାସଚକ୍ରର ଗତି, ନାଗ ମସ୍ତକର ସ୍ଥିତି ପରସ୍ପରର ବିପରୀତ ଦିଗରେ ଘୂରୁଥାଆନ୍ତି । ଏହା ସୂର୍ଯ୍ୟ ଚତୁଃପାର୍ଶ୍ୱରେ ପୃଥିବୀର ଘୂର୍ଣ୍ଣନ ପ୍ରକ୍ରିୟା ସମ୍ପର୍କୀୟ, ଜ୍ୟୋତିର୍ବିଜ୍ଞାନର ଏକ ଗୂଢ଼ ତତ୍ତ୍ୱ ଅଟେ ।

## ଶଙ୍କୁ ନିର୍ଣ୍ଣୟ



ଶଙ୍କୁରେଖା

ଭୂନକ୍‌ସା ସହିତ ଶଙ୍କୁ ନିର୍ଣ୍ଣୟ ମଧ୍ୟ ଏକ ମୁଖ୍ୟ କାର୍ଯ୍ୟ । ଦେଉଳ ଗର୍ଭଗୃହର କେନ୍ଦ୍ର ବିନ୍ଦୁରୁ ୯୦ ଡ଼ିଗ୍ରୀ ବା ସମକୋଣ ସୃଷ୍ଟିକରି ଉର୍ଦ୍ଧ୍ୱକୁ ଉଠିଥିବା ଅକ୍ଷ ରେଖାକୁ 'ଶଙ୍କୁ' କୁହାଯାଏ । ପୋତା ମଧ୍ୟରେ ବାସ୍ତୁନାଗ ବ୍ୟତୀତ ଅଷ୍ଟଦଳ ପଦ୍ମ ଖୋଦିତ ହୋଇଥିବା ଏକ ବର୍ଗାକାର ପଥର ସ୍ଥାପିତ ହୋଇଥାଏ । ଏହି ପରି ଅନ୍ୟ ଏକ ପଥର ମନ୍ଦିରର ସର୍ବୋଚ୍ଚ ମୁଦରେ ସ୍ଥାପନ କରାଯାଏ । ଏଠାରେ ପୋତା ମଧ୍ୟରେ ପଦ୍ମଟି ଉର୍ଦ୍ଧ୍ୱମୁଖୀ ଓ ମୁଦପଥରର ପଦ୍ମଟି ନିମ୍ନମୁଖୀ ହୋଇଥାଏ । ଏହି ପଦ୍ମର ଚାରି ପାଖୁଡ଼ା ଚାରି ଦିଗକୁ ଓ ଅନ୍ୟ ଚାରି ପାଖୁଡ଼ା ଚାରି କୋଣକୁ ରହିବା ଭଳି ସଠିକ ଭାବେ ସ୍ଥାପିତ ହୋଇଥିବା ବେଳେ ଶଙ୍କୁ ରେଖା ଦୁଇ ପଦ୍ମର କେନ୍ଦ୍ର ବିନ୍ଦୁକୁ ଯୋଗ କରୁଥାଏ । ବିଶ୍ୱାସ କରାଯାଏ ଯେ, ଦୁଇ ପଦ୍ମକୁ ସଂଯୋଗ କରୁଥିବା ଏହି ରେଖା ପାତାଳରେ ଅନନ୍ତ ଓ ଆକାଶରେ ବ୍ରହ୍ମାଙ୍କୁ ସଂକେତ କରେ । ତେବେ ବାସ୍ତବ କ୍ଷେତ୍ରରେ ଏହି ଶଙ୍କୁକୁ ନିର୍ଭର କରି ନିର୍ମାଣ ଚତୁଃପାର୍ଶ୍ୱର ସମତା, ବକ୍ରତା, ଭାରସାମ୍ୟ ଓ ସନ୍ତୁଳନ ସ୍ଥିର କରାଯାଇଥାଏ ।

# ନିର୍ମାଣର କ୍ରମ

**ପୋତା :**

ମନ୍ଦିର ମୂଳଦୁଆକୁ 'ପୋତା କିମ୍ବା ଭିତ୍ତି' କୁହାଯାଏ । କାରଣ ଏକ ଖୋଦିତ ଗର୍ତ୍ତ ମଧ୍ୟରେ ଅସମାନ ଓ ସମାନ ଆକାରର ଅନେକ ପଥର ପୋତାଯାଇ ଏହି ମୂଳଦୁଆ ପ୍ରସ୍ତୁତ ହୋଇଥାଏ । ପରିକଳ୍ପିତ ମନ୍ଦିର ନିର୍ମାଣ ନିମନ୍ତେ ଠିକ୍ ଯେତିକି ସ୍ଥାନ ଆବଶ୍ୟକ, ତାର ଚତୁଃପାର୍ଶ୍ୱରେ କିଛି ଅଧିକ ସ୍ଥାନ ନେଇ ସମୁଦାୟ ସ୍ଥାନରେ ଏକ ଗର୍ତ୍ତ ଖୋଳା ଯାଏ । ପରିକଳ୍ପିତ ମନ୍ଦିରର ଉଚ୍ଚତା ଯାହା ମୂଳଦୁଆ ଗର୍ତ୍ତର ଗଭୀରତା ତାର ଏକ ତୃତୀୟାଂଶ ହେବା ଉଚିତ୍ ବୋଲି କେତେକ ଶିଳ୍ପ ପୋଥିରେ ଉଲ୍ଲେଖ ଅଛି । ପୂଜାର୍ଚ୍ଚନା ପୂର୍ବକ 'ବାସ୍ତୁନାଗ ସ୍ଥାପନ' ପରେ, ପ୍ରଥମେ ଗର୍ତ୍ତ ମଧ୍ୟରେ ବିଭିନ୍ନ ଆକାର ପ୍ରକାରର ପଥର ପକାଇ ଏକ ଶକ୍ତ ସ୍ତର ପ୍ରସ୍ତୁତ କରାଯାଏ । ଏହା ପରେ କଟା ପଥରର ସ୍ତରମାନ ଭୂପତନ ପର୍ଯ୍ୟନ୍ତ ଉଠାଇ ତା'ର ଚତୁଃପାର୍ଶ୍ୱରେ ଥିବା ଖାଲି ସ୍ଥାନକୁ ମାଟି ଦ୍ୱାରା ପୂରଣ କରିଦିଆଯାଏ । କଟା ପଥରର ସ୍ତରଗୁଡ଼ିକ କେତୋଟି ପାହାଚ ସଦୃଶ ସଜ୍ଜିତ ହୋଇ ଥିବାରୁ ଏହାର ବିସ୍ତୃତି ଉର୍ଦ୍ଧ୍ୱକୁ କିଞ୍ଚିତ ହ୍ରାସ ପାଇଥାଏ ।



ପୋତା



ଏକ କନିପୀଠ ଉପରେ ପାଭାଗ

**ପୀଠ :**

ପ୍ରାଚୀନ ମନ୍ଦିରଗୁଡ଼ିକ ସାଧାରଣତଃ ଭୂମି ସହିତ ସମ-ଉଚ୍ଚତାରେ ଥିବା ମୂଳଦୁଆର ଚଟାଣ ଉପରେ ଦଣ୍ଡାୟମାନ ହୋଇଥିବା ବେଳେ ମଧ୍ୟଯୁଗର କେତେକ ମନ୍ଦିର ବେଦୀ ସଦୃଶ ଏକ ଉଚ୍ଚସ୍ଥାନ ଉପରେ ନିର୍ମିତ ହୋଇଥିବା ଦେଖାଯାଏ । ଏହି ବେଦୀକୁ 'ପୀଠ' କୁହାଯାଏ । ଶିଳ୍ପପୋଥିମାନଙ୍କରେ ବିଭିନ୍ନ ଶୈଳୀର 'ପୀଠ, ତା'ର ନାମ ଓ ମାପର ଭାଗାନୁପାତ ଉଲ୍ଲେଖ ଅଛି । ସେଥିମଧ୍ୟରୁ 'ଭୁବନ

ପ୍ରଦୀପ’ ଶିଳ୍ପପୋଥିରେ ବର୍ଣ୍ଣିତ ଆଠ ପ୍ରକାର ପୀଠର ନାମ ହେଲା-ପଦ୍ମପୀଠ, ସିଂହପୀଠ, ଭଦ୍ରପୀଠ, ବେଦୀପୀଠ, ଖୁରାପୀଠ, କୁମ୍ଭପୀଠ ବା କୂର୍ମପୀଠ ଓ ପରଙ୍ଗଘପୀଠ । ଏହି ନାମର ପୀଠଗୁଡ଼ିକ ମନ୍ଦିର ନିମନ୍ତେ ବୃହଦାକାରରେ ନିର୍ମିତ ହେଉଥିବା ବେଳେ ଦେଉଳ ଗର୍ଭଗୃହରେ ସ୍ଥାପିତ ଦେବଦେବୀଙ୍କ ଆସନ ନିମନ୍ତେ ସମ-ଶୈଳୀର ଛୋଟ ପୀଠ ନିର୍ମାଣ କରାଯାଇଥାଏ ।

ଭୁବନେଶ୍ୱରର ପ୍ରାଚୀନ ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ, ସୁବର୍ଣ୍ଣଜଳେଶ୍ୱର, ପରଶୁରାମେଶ୍ୱର ମନ୍ଦିର ଏବଂ ମଧ୍ୟଯୁଗର ବ୍ରହ୍ମେଶ୍ୱର ଓ ମେଘେଶ୍ୱର ମନ୍ଦିର ପୀଠ ବିହୀନ ହୋଇଥିବା ବେଳେ ମଧ୍ୟଯୁଗୀୟ ମୁକ୍ତେଶ୍ୱର, ଗୌରୀ ମନ୍ଦିର ଅନୁଚ୍ଚ ପୀଠ ଉପରେ ଅବସ୍ଥିତ । ରାଜାରାଣୀ ମନ୍ଦିର ଦୁଇଟି ପୀଠ ଉପରେ ଅବସ୍ଥିତ । ଏଠାରେ ପ୍ରଥମଟି ଅନୁଚ୍ଚ ଓ ଦ୍ୱିତୀୟଟି କମନୀୟ ଓ ସୁଉଚ୍ଚ ପୀଠ ଅଟେ । ଯମେଶ୍ୱର ଓ ଅନନ୍ତ-ବାସୁଦେବ ମନ୍ଦିରଗୁଡ଼ିକ ସୁଉଚ୍ଚ ପୀଠ ଉପରେ ନିର୍ମିତ ।

ଭୂନକ୍ସା :

ପୋତାର ଉପରଭାଗ ଅର୍ଥାତ ମୂଳଦୁଆର ସୁସମତଳ ଚଟାଣ ଉପରେ ସ୍ଥପତି ଓ ସୂତ୍ରଧର, ପରିକଳ୍ପିତ ମନ୍ଦିରର ‘ଭୂନକ୍ସା’ ବା ଗ୍ରାଉଣ୍ଡପ୍ଲାନ୍ ଏକ ତୀକ୍ଷ୍ଣ ଅସ୍ତ୍ର ସାହାଯ୍ୟରେ ଅଙ୍କନ କରନ୍ତି । ଏହାର ନିର୍ଭୁଲ ଅଙ୍କନ ନିମନ୍ତେ ସ୍ଥପତିମାନେ କେତେକ ସୂତ୍ର ବା ପଦ୍ଧତି ଅବଲମ୍ବନ କରୁଥିବା ଜଣାଯାଏ । ଭୁବନେଶ୍ୱରର ପରଶୁରାମେଶ୍ୱର ଓ ବ୍ରହ୍ମେଶ୍ୱର ଇତ୍ୟାଦି ମନ୍ଦିରମାନଙ୍କର ପାଭାଗ ଚଟାଣ ଉପରେ ଏହି ପ୍ରକାର ଅଙ୍କନର ରେଖା ଗୁଡ଼ିକ ସ୍ପଷ୍ଟ । ଯେଉଁ ମନ୍ଦିରଗୁଡ଼ିକ ପୀଠ ଉପରେ ନିର୍ମିତ, ସେହିଠାରେ ଭୂପତନ ଚଟାଣ ଉପରେ ପ୍ରଥମେ ‘ପୀଠ’ର ଭୂନକ୍ସା ଅଙ୍କନ କରାଯିବା ପରେ ଦେଉଳର ‘ଭୂନକ୍ସା’ ପୀଠ ଉପରେ ଅଙ୍କନ ହୋଇଥାଏ ।

ଶିଳ୍ପୀ ମନ୍ଦିରର ପରିକଳ୍ପନା ସରଳ କିମ୍ୱା କମନୀୟ ଭାବରେ, ଯେପରି କରୁନା କାହିଁକି, ତା’ର ଆଦ୍ୟରୂପ ଭୂନକ୍ସାରେ ହିଁ ଦେଇଥାଏ । ପ୍ରାଚୀନ ମନ୍ଦିରମାନଙ୍କ ସରଳ, ବର୍ଗାକାର ଗର୍ଭଗୃହର ବାହାରପାଖ ମଧ ତଦନୁଯାୟୀ ତ୍ରିରଥ ଶୈଳୀରେ ବର୍ଗାକାର ଦେଖାଯାଏ । କିନ୍ତୁ ସମୟାନୁକ୍ରମେ ଶିଳ୍ପୀମାନଙ୍କ କଳାତ୍ମକ ଚିନ୍ତାଧାରାର ବିକାଶ ଘଟିବା ଦ୍ୱାରା ଦେଉଳରେ ରଥକ ସଂଖ୍ୟା ବୃଦ୍ଧି, ଅନ୍ତରାପାଗମାନଙ୍କ ସୃଷ୍ଟି ଏବଂ ପ୍ରତ୍ୟେକ ପାଗକୁ ଜ୍ୟାମିତିକ ଶୈଳୀରେ ଛନ୍ଦମୟ କରାଯାଇଥିବା ପରିଲକ୍ଷିତ ହୁଏ । ଫଳ ସ୍ୱରୂପ କେତେକ ମନ୍ଦିରର ଗର୍ଭଗୃହ କିମ୍ୱା କୋଠରୀର ଭିତର ପାଖ ସରଳ ଚତୁଃଷୋଣ ହେଲେ ହେଁ ବାହାର ପାଖର ଆକାର ପ୍ରକାରରେ ଦୃଷ୍ଟିଆକର୍ଷଣୀୟ ପରିବର୍ତ୍ତନ ଘଟିଛି । ଏହା ଦ୍ୱାରା କେତେକ ମନ୍ଦିରର ବାହାର ପାଖ ତିର୍ଯ୍ୟକ ଭାବେ ଚତୁଷୋଣ , ଅଷ୍ଟକୋଣ, ଦଶକୋଣ, ଦ୍ୱାଦଶକୋଣ କିମ୍ୱା ଷୋଡ଼ଶ କୋଣ ହୋଇ ପଡ଼ିଛି । ଏହି ବହୁ-କୋଣଯୁକ୍ତ ରଥକଗୁଡ଼ିକ, କେତେକ ମନ୍ଦିରର ଗର୍ଭଗୃହକୁ ମଧ ପ୍ରଭାବିତ କରିଥିବା ଦେଖାଯାଏ ।



ଖ୍ରୀ: ୭ମ ଶତାବ୍ଦୀ



ଖ୍ରୀ: ୯ମ ଶତାବ୍ଦୀ



ଖ୍ରୀ: ୧୧ଶ ଶତାବ୍ଦୀ ।

ମନ୍ଦିର ଭୂନକ୍ସାର ବିକାଶଧାରା

ଏହି ପ୍ରକାର ଭୂନକ୍ସା ଓ ତା'ର ବିକାଶଧାରା ଦର୍ଶାଉଥିବା କେତୋଟି ମନ୍ଦିର ମଧ୍ୟରେ ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ ଏବଂ କୁଆଲୋର କନକେଶ୍ୱର ମନ୍ଦିରର ଗର୍ଭଗୃହ ଓ ତ୍ରିରଥ ଶୈଳୀର ବାହାର ପାଖ, ଉଭୟ ବର୍ଗାକାର ଦେଖାଯାଏ । ଚରଦାର କପିଳେଶ୍ୱରଙ୍କ ଦେଉଳର ଗର୍ଭଗୃହ ଦ୍ୱାଦଶକୋଣ ଓ ବାହାର ପାଖ ରଥକ ଗୁଡ଼ିକ ଦଶକୋଣ ସୃଷ୍ଟି କରେ । ଭୁବନେଶ୍ୱରର ତୀର୍ଥେଶ୍ୱର ମନ୍ଦିରର ଭିତର ଓ ବାହାର ପାଖ, ଉଭୟ ଦଶକୋଣ ବିଶିଷ୍ଟ । ରାଜାରାଣୀ ମନ୍ଦିରର ଗର୍ଭଗୃହ ଷୋଡ଼ଶକୋଣ ହୋଇଥିବା ବେଳେ ଏହାର ବାହାରପାଖ ତିର୍ଯ୍ୟକ୍ ଭାବେ ମୁଖ୍ୟତଃ ଚତୁଷ୍କୋଣ ହେଲେହେଁ ରଥକଗୁଡ଼ିକ ଷୋଡ଼ଶକୋଣ ସୃଷ୍ଟିକରେ । ସେହିପରି କେଦାରେଶ୍ୱର ମନ୍ଦିରର ବାହାର ପାଖ ତିର୍ଯ୍ୟକ ଭାବେ ଚତୁଷ୍କୋଣ ହୋଇଥିଲେ ହେଁ ରଥକଗୁଡ଼ିକ ଦଶକୋଣ ସୃଷ୍ଟି କରେ । ଏହାର ଗର୍ଭଗୃହ ସରଳ, ଚତୁଷ୍କୋଣ ବିଶିଷ୍ଟ ଅଟେ ।

## ବାଡ଼ ଓ ଗଣ୍ଡି :

ବିଭିନ୍ନ ବକ୍ରତା ଓ ସମତାରେ ପଥର କଟାଯିବା ପରେ ପର୍ଯ୍ୟାୟ କ୍ରମେ ବାଡ଼ ବା କାନ୍ଥର କାର୍ଯ୍ୟ ଆରମ୍ଭ କରାଯାଏ । ଏହାର ପାଭାଗ, ଜଂଘ ଓ ବରଣ୍ଡ ପୋତାର କିମ୍ବା ପୀଠର ଚଟାଣ ଉପରୁ ୯୦ଡ଼ିଃ କୋଣ ସୃଷ୍ଟିକରି ଅର୍ଥାତ୍ ସଳଖ ଭାବେ ଉପରକୁ ଉଠେ । ପରବର୍ତ୍ତୀ ପର୍ଯ୍ୟାୟରେ ବାଡ଼ ଉପରେ ଗଣ୍ଡିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ଗଣ୍ଡିର ଭିତର ପାଖ ସଳଖ ହେଲେହେଁ, ବାହାର ପାଖ ଭିତର ଆଡ଼କୁ କ୍ରମଶଃ ସାମାନ୍ୟ ବକ୍ର ହୋଇ, ଏକ ନିର୍ଦ୍ଦିଷ୍ଟ ଉଚ୍ଚତାରେ ଭୂମି ସହିତ ଏକ ସମାନ୍ତରାଳ ସୃଷ୍ଟି କରେ । ଏଠାରେ ମଧ୍ୟଭାଗରେ ଥିବା ଖାଲି ସ୍ଥାନଟିକୁ ପୂର୍ବ ବର୍ଣ୍ଣିତ 'ମୁଦପଥର' ଦ୍ୱାରା ଘୋଡ଼ାଇ ଦିଆଯାଏ । ଗଣ୍ଡିଉପରର ଏହି ସମତଳ ଛାତ 'ଘୋଡ଼ାଚକଡ଼ା' ନାମରେ ପରିଚିତ । କମ ଉଚ୍ଚତା ବିଶିଷ୍ଟ ଦେଉଳଗୁଡ଼ିକର ଗଣ୍ଡି ଉପରେ କେବଳ ଗୋଟିଏ ମୁଦପଥର ବ୍ୟବହାର ହେଉଥିବା ବେଳେ ସୁଉଚ୍ଚ ଦେଉଳଗୁଡ଼ିକର, ଗଣ୍ଡିର ଚାରିପାଖକୁ ସୁଦୃଢ଼ ଭାବେ ଧରି ରଖିବା ନିମନ୍ତେ ବିଭିନ୍ନ ଉଚ୍ଚତାରେ ଏକାଧିକ ମୁଦପଥର ରହିଥାଏ ।

## ମୁଦ :

ଏହା ସଂମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ଏହି ମୁଦ ସାଧାରଣତଃ ରେଖ ଦେଉଳମାନଙ୍କ ଗଣ୍ଡିର ଭିତରେ ଥାଏ । ଶିଳ୍ପପୋଥିମାନଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ସୁଉଚ୍ଚ ଦେଉଳମାନଙ୍କ ଗଣ୍ଡି ମଧ୍ୟରେ, ନିର୍ଦ୍ଦିଷ୍ଟ ବ୍ୟବଧାନରେ ଉପରକୁ ଉପର ତିନୋଟି ମଦୁ ରହିବା ଉଚିତ୍ । ନିମ୍ନର ପ୍ରଥମ ମୁଦକୁ 'ଧାନମୁଦ' କୁହାଯାଏ । ଏହା ଉପରେ କିଛି ଧାନ ରଖା ଯାଇଥାଏ । ଦ୍ୱିତୀୟ ମୁଦ 'ବାଲିମୁଦ' ନାମରେ ପରିଚିତ । ଏହା ଉପରେ କିଛି ବାଲି ରଖା ଯାଇଥାଏ । ତୃତୀୟ ବା ସର୍ବୋଚ୍ଚରେ ଥିବା ମୁଦକୁ 'ରତ୍ନମୁଦ' କୁହା ଯାଉଥିବା ବେଳେ ଏହା ଉପରେ ସୁବର୍ଣ୍ଣାଦି କିଛି ରତ୍ନ ସ୍ଥାନିତ ହୋଇ ଥାଏ । ଏହି ରତ୍ନମୁଦ ଉପରେ ଦେଉଳ ମସ୍ତକର ମୂଳଭାଗ, ଆମଳକଶିଳାର ବେକି ରହିଥାଏ । ଦୁଇ ମୁଦ ମଧ୍ୟଭାଗରେ ଥିବା ସ୍ଥାନ ବାୟୁ ରୁଦ୍ଧ ହୋଇ ମନ୍ଦିରରେ ଫାଟ ସୃଷ୍ଟି ହେବାର ସମ୍ଭାବନା ଥାଏ । ଏଣୁ ଦେଉଳ ଗଣ୍ଡିର ରାହାପାଗମାନଙ୍କରେ ଏକ ସିଂହମୁଖ କିମ୍ବା ହସ୍ତୀ ଉପରେ ଉଦ୍ୟତ ସିଂହ ମୂର୍ତ୍ତିମାନ ସ୍ଥାନିତ ହୋଇ ଥାଏ । ଏହି ସିଂହ, ହସ୍ତୀ ମୁଖରୁ କିମ୍ବା ଉଦ୍ୟତ ସିଂହର ନିମ୍ନ ଭାଗରୁ ଏକ ଛିଦ୍ର ଗଣ୍ଡିମଧ୍ୟକୁ ଥାଏ । ଚାରି ପାଖର ଏହି ଛିଦ୍ରଗୁଡ଼ିକ ଦେଇ ବାୟୁ ସଞ୍ଚାଳନ ହେବା ଦ୍ୱାରା ମନ୍ଦିର ନିରାପଦ ରହେ ।




ଗଣ୍ଡି ଉପର ଉଦ୍ୟତ ସିଂହ ଓ ମୁଦ ପଥରର ପଦ୍ମ

**ମସ୍ତକ :**

ଏହାର ଚାରି ମୁଖ୍ୟ ଅଂଶ ହେଲା- ବେକି, ଅଁଳା ବା ଆମଳକଶିଳା, ଖପୁରି ଓ କଳସ । ଚକ୍ରକାର ବେକି ଉପରେ ଆମଳକଶିଳା ସ୍ଥାପନ ହୁଏ । ଛୋଟ ଦେଉଳଗୁଡ଼ିକର ବେକି ଓ ଆମଳକଶିଳା ଗୋଟିଏ, ଗୋଟିଏ ପଥରରେ ନିର୍ମିତ ହେଉଥିବା ବେଳେ ବୃହଦାକାର ଦେଉଳର ଏହି ନିର୍ମାଣଗୁଡ଼ିକରେ ଏକାଧିକ ପଥର ଖଣ୍ଡ ସଂଯୋଗ ହୋଇଥିବା ଦେଖାଯାଏ । ଏହି ସମସ୍ତ ଭାଗ ଭିନ୍ନ ଭିନ୍ନ ନିର୍ମାଣ କରାଯାଇ ଗୋଟିଏ ଉପରେ ଗୋଟିଏ ସ୍ଥାନିତ ହୋଇଥାଏ ।

**କଳସ:**

ଖପୁରି ମଧ୍ୟରେ ଏକ ବର୍ଗାକାର ଗର୍ତ୍ତ ଥାଏ । ଏହି ଗର୍ତ୍ତକୁ ଖାପଖାଇବା ଭଳି ନିର୍ମିତ ହୋଇଥିବା କଳସର ମୂଳଭାଗକୁ ଏହା ସହିତ ସଂଯୋଗ କରାଯାଏ । ଦେଉଳର ସର୍ବୋଚ୍ଚ ସ୍ଥାନରେ ସ୍ଥାପନ କରାଯାଉଥିବା ଏହି 'କଳସ' କେତେକ ସ୍ଥଳେ ମନ୍ଦିର ପଥର ଅପେକ୍ଷା ଉନ୍ନତ ମାନର ମୁଗୁନି ପଥରରେ ନିର୍ମିତ ହୋଇଥିବା ଦେଖାଯାଏ । ଛୋଟ କଳସଗୁଡ଼ିକ ଗୋଟିଏ ପଥରରେ ନିର୍ମିତ ହୋଇଥିବା ବେଳେ ବଡ଼ କଳସଗୁଡ଼ିକରେ ଏକାଧିକ ପଥରଖଣ୍ଡ ବ୍ୟବହାର ହୋଇଥାଏ ।



କଳସ ଓ ଅଁଳା, ଖପୁରି ଉପରେ ତା'ର ସ୍ଥାନ

**ଢ଼ାର :**

ଗୋଟିଏ ସୁଉଚ୍ଚ ମନ୍ଦିର ଦେଖିବା ବେଳେ ଦର୍ଶକ ମନରେ ପ୍ରଶ୍ନ ଉଠେ ଯେ, ନିର୍ମାଣ ବେଳେ ବିଶାଳ ପଥର ଖଣ୍ଡଗୁଡ଼ିକ କିପରି ଭାବେ ମନ୍ଦିର ଉପରକୁ ଉଠୁଥିଲା ? ଏହାପରେ ଅନୁମାନ କରାଯାଏ ଯେ, ଭୂମିଉପରୁ ମନ୍ଦିରର ଯେତିକି ଅଂଶ ନିର୍ମିତ ହେଉଥିଲା, ତାହାକୁ ମାଟି ଓ ବାଲି ଦ୍ୱାରା ପୋତି ଦିଆଯାଉଥିଲା ଏବଂ ଏହି ମାଟିବାଲିର ଗଡ଼ାଣିଆ ଢୁଦ ଉପରେ ଲୋକେ ପଥରକୁ ଗଡ଼ାଇ କିମ୍ବା ଠେଲି ଠେଲି ଉପରକୁ ଉଠାଉଥିଲେ । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହି ବ୍ୟବସ୍ଥାରେ ବହୁ ଅସୁବିଧା ଥିବା ଲକ୍ଷ୍ୟ କରାଯାଏ । ମନ୍ଦିର ନିର୍ମାଣ ବେଳେ ସ୍ଥପତି ଓ ସୂତ୍ରଧର 'ଓଳମ' ସାହାଯ୍ୟରେ ବାହାର ଓ ଭିତର ପାଖ ବାଡ଼ର ସମତା ଓ ଗଣ୍ଡିର ବକ୍ରତା ନିର୍ଦ୍ଧାରଣ କରିଥାଆନ୍ତି । ଏହି ସମୟରେ ଓଳମର ଅଗ୍ରଭାଗ

ଭୂମିକୁ ସ୍ପର୍ଶ କରିବା ନିତାନ୍ତ ଆବଶ୍ୟକ, କିନ୍ତୁ ଦେଉଳର ବାହାର ପାଖ ମାଟି ଓ ବାଲି ଦ୍ୱାରା ପୋତିଦେବା ଦ୍ୱାରା ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଟିରେ ବାଧା ସୃଷ୍ଟି ହେବ । ଅନ୍ୟ ଭାବରେ ଏହି ମାଟିବାଲି ଗଦା ଚାପରେ ପଥର ଧସି ପଡ଼ିବାର ସମ୍ଭାବନା ମଧ୍ୟ ରହିଛି । ଏହା ବ୍ୟତୀତ ମନ୍ଦିର ମାଟି, ବାଲିରେ ପୋତିହୋଇ ରହିଲେ, ଶିଳ୍ପୀମାନେ ମନ୍ଦିର ନିର୍ମାଣ ବୃଦ୍ଧି ପାଉଥିବା ବେଳେ ତାହା ନିରୀକ୍ଷଣ କରି ନିର୍ମାଣର ଭୁଲ୍,ନିର୍ଭୁଲ ଜାଣି ପାରିବେ ନାହିଁ । ତେବେ ଅନୁମାନ କରାଯାଉଥିବା ଏହି ପ୍ରକାର ପୋତା ପଦ୍ଧତି ପ୍ରଚଳିତ ଥିବାର ପ୍ରମାଣ କୁତ୍ରାପି ମିଳେ ନାହିଁ ।

ପୁରୀର ସିଦ୍ଧମହାବୀର ମନ୍ଦିରରେ ଲାଗିଥିବା କୋଣାର୍କର (?) ଏକ ମୂର୍ତ୍ତିକଳାଯୁକ୍ତ ପଥର ଖଣ୍ଡରେ ଉଲ୍ଲେଖଯୋଗ୍ୟ ଦୃଶ୍ୟଟିଏ ରହିଛି । ଏଠାରେ ଅର୍ଦ୍ଧ-ନିର୍ମିତ ଏକ ଦେଉଳ ଉପରୁ କେତେ ଖଣ୍ଡ ଲମ୍ବ କାଠ ଭୂମି ଆଡ଼କୁ ଗଡ଼ାଣିଆ କରି ରଖାଯାଇଛି । ଏହି କାଠକୁ ଧରି ରଖିବା ନିମନ୍ତେ ଖୁଣ୍ଟର ବ୍ୟବସ୍ଥା ମଧ୍ୟ ଦେଖାଯାଏ । କେତେଜଣ ଶିଳ୍ପୀ ମନ୍ଦିର ଉପରେ କାର୍ଯ୍ୟରତ ଥିବା ବେଳେ ଅନ୍ୟ କେତେକ ଏକ ଆୟତାକାର ପଥର ଖଣ୍ଡକୁ କାଠର ଏହି ଉଠାଣିଆ ବ୍ୟବସ୍ଥା ଉପରେ, ଉପରକୁ ଉଠାଉଛନ୍ତି । ଏଥିରୁ ସୂଚନା ମିଳେ ଯେ, କାଠ ନିର୍ମିତ ସିଡ଼ି ସଦୃଶ ଉଠାଣିଆ, ମଞ୍ଚ ଉପରଦେଇ ପଥରଗୁଡ଼ିକୁ ଉପରକୁ ଉଠାଯାଉଥିଲା । ଏହି ପ୍ରକାର ବ୍ୟବସ୍ଥାକୁ 'ଚାର' କୁହାଯାଏ । କାଠର ଏହି ଚାର ନିର୍ମାଣ ଓ ତା'ର ବ୍ୟବହାର ବେଳେ ଅମଙ୍ଗଳ ଓ ଦୁର୍ଘଟଣାରୁ ମୁକ୍ତି ପାଇବା ନିମନ୍ତେ ଚାର ନିକଟରେ ସ୍ୱତନ୍ତ୍ର ଭାବେ ଏକ ଛୋଟ ମନ୍ଦିର ନିର୍ମାଣ କରାଯାଇ କୌଣସି ଏକ ଦେବତାଙ୍କୁ ପୂଜା କରାଯାଉଥିଲା । ଲିଙ୍ଗରାଜ ମନ୍ଦିର ନିର୍ମାଣ ବେଳେ ସ୍ଥାପିତ ଏକ ଛୋଟ ମନ୍ଦିର ମଧ୍ୟରେ ଚାର-ନାରାୟଣୀ ଅଦ୍ୟାବଧି ପୂଜା ପାଉଛନ୍ତି । ଏହି ଛୋଟ ମନ୍ଦିରଟି ଲିଙ୍ଗରାଜଙ୍କ ବେଢ଼ା ବାହାରେ, ପଶ୍ଚିମ ଦିଗରେ ରହିଛି ।



ସିଦ୍ଧମହାବୀର ମନ୍ଦିର ଗାତ୍ରରେ ମନ୍ଦିର ନିର୍ମାଣର ଏକ ଦୃଶ୍ୟ

## ମଣ୍ଡନକୃତି ଓ ମୂର୍ତ୍ତି ଖୋଦନ :

କଟା ପଥରରେ ମନ୍ଦିରର ମୁଖ୍ୟ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ପରେ, ଆରମ୍ଭ ହୁଏ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଅଳଙ୍କରଣ ଓ ମୂର୍ତ୍ତି ଖୋଦନ । ଏହି କ୍ଷେତ୍ରରେ ସ୍ଥପତି ବିଭିନ୍ନ ଦକ୍ଷତାର ଶିଳ୍ପୀଙ୍କୁ ଭିନ୍ନ ଭିନ୍ନ କାର୍ଯ୍ୟରେ ନିୟୋଜିତ କରିଥାଆନ୍ତି । କେତେକ ମଣ୍ଡନକୃତି ଓ ମୂର୍ତ୍ତି ଶାସ୍ତ୍ରୀୟମତେ ଉତ୍କୀର୍ଣ୍ଣ ହେଉଥିବା ବେଳେ ଅନ୍ୟ କେତେକ ସ୍ଥାପତ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଖୋଦିତ ହୋଇଥାଏ । ପ୍ରଥମେ ଶିଳ୍ପୀମାନେ

ପରିକଳ୍ପିତ ନକ୍‌ସାର ରେଖଚିତ୍ର, ଏକ ମୁନିଆ ଅସ୍ତ୍ର ସାହାଯ୍ୟରେ ମନ୍ଦିର ଦେହରେ ଅଙ୍କନ କରନ୍ତି । ଏହି ଅଙ୍କନକୁ ପାରମ୍ପରିକ ଶିଳ୍ପୀମାନେ 'ଗାରେଇବା' କହି ଥାଆନ୍ତି । ଏହା ପରେ ବିଭିନ୍ନ ଆକାର ପ୍ରକାରର ନିହାଣ ଓ ମୁଗୁର ଦ୍ୱାରା ମଣ୍ଡନକୃତି ଓ ମୂର୍ତ୍ତିଗୁଡ଼ିକ ଖୋଦନ କରାଯାଏ । ଏହି କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଥିବା କେତେକ ମନ୍ଦିରରେ କେବଳ ଏହାର ରେଖାଚିତ୍ର ଦେଖିବାକୁ ମିଳେ । ଏହିଭଳି କେତେକ ସ୍ପଷ୍ଟ ଉଦାହରଣ ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର, ମୋହିନୀ ମନ୍ଦିର, ବୋଇତାଳ ଦେଉଳ ସମେତ ରାଜାରାଣୀ ଭଳି କେତେକ ମନ୍ଦିର ଦେହରେ ରହିଛି ।

ପ୍ରାଚୀନ ମନ୍ଦିରମାନଙ୍କର ମଣ୍ଡନକୃତି ଓ ମୂର୍ତ୍ତିକଳାଗୁଡ଼ିକ ମନ୍ଦିର ଦେହର ପଥରରେ ଅଗଭୀର (ରିଲିଫ୍) ଭାବେ ଖୋଦିତ ହୋଇଥିବା ଦେଖାଯାଏ । ଏହି ପ୍ରକାର ଉଦାହରଣ ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ମନ୍ଦିରପୁଞ୍ଜ, ପରଶୁରାମେଶ୍ୱର ଓ ଅନ୍ୟ କେତେକ ମନ୍ଦିରରେ ଦେଖିବାକୁ ମିଳେ । ଏହାର କିଞ୍ଚିତ ପରବର୍ତ୍ତୀ ସମୟର ବୋଇତାଳ ଦେଉଳ, ଶିଶିରେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିରର କୃତିଗୁଡ଼ିକରେ ଖୋଦନର ଗଭୀରତା ବୃଦ୍ଧି ପାଇଥିବା ଲକ୍ଷ କରାଯାଏ । ଅର୍ଥାତ୍ ଏହି ପ୍ରକାର ମଣ୍ଡନକୃତି ଓ ମୂର୍ତ୍ତିଗୁଡ଼ିକର ଉତ୍କୀର୍ଣ୍ଣ ଶୈଳୀ ଅର୍ଦ୍ଧଗୋଲାକାର ।





ନିର୍ମାଣ କୌଶଳ ଦର୍ଶାଉଥିବା କାରୁକଳା ବିହୀନ
ଓ କାରୁକଳାଯୁକ୍ତ ମନ୍ଦିର

ମଧ୍ୟଯୁଗୀୟ ମନ୍ଦିରମାନଙ୍କର ମଣ୍ଡନକୃତି ଓ ମୂର୍ତ୍ତିକଳାର ଖୋଦନ ଶୈଳୀ ଉନ୍ନତ । ଏହି ମୂର୍ତ୍ତିଗୁଡ଼ିକ ପ୍ରାୟ ଗୋଲାକାର ବା ତ୍ରିପାର୍ଶ୍ୱଦୃଶ୍ୟ ସମ୍ବଳିତ । କାରୁକଳାଗୁଡ଼ିକ ଅଧିକ ଛନ୍ଦମୟ, କମନୀୟ ଓ ସୂକ୍ଷ୍ମ । ଏହି ପ୍ରକାର କୃତିର ଉଦାହାରଣ ଭୁବନେଶ୍ୱରର ମୁକ୍ତେଶ୍ୱର, ଗୌରୀ, ରାଜାରାଣୀ, ଲିଙ୍ଗରାଜ ଓ ବ୍ରହ୍ମେଶ୍ୱର ଇତ୍ୟାଦି ମନ୍ଦିରମାନଙ୍କରେ ଦେଖିବାକୁ ମିଳେ । ଏହି ସମୟର ଏକ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ଏହିକି, ପାର୍ଶ୍ୱଦେବତା ତଥା ଅନ୍ୟ କେତେକ ମୂର୍ତ୍ତିନିମନ୍ତେ ମନ୍ଦିର ଦେହରେ କେବଳ ଖୋପର ବ୍ୟବସ୍ଥା ରଖାଯାଇ , ମୂର୍ତ୍ତିଗୁଡ଼ିକ ଭିନ୍ନ ଭାବରେ ଖୋଦନ କରାଯାଇ, ପରେ ଖୋପରେ ଜମାଇ ଦିଆଯାଉ ଥିଲା । କେତେକ ସ୍ଥଳେ ମୂର୍ତ୍ତିଗୁଡ଼ିକୁ ଲୁହା ଆଙ୍କୁଡ଼ା ସାହାଯ୍ୟରେ ମନ୍ଦିର ଗାତ୍ରରେ ଅଟକାଇ ରଖାଯାଉଥିଲା । ଏହାର ଫଳ ସ୍ୱରୂପ ପରବର୍ତ୍ତୀ ସମୟରେ ମୂର୍ତ୍ତି ଚୋରମାନେ ମୂର୍ତ୍ତିଗୁଡ଼ିକୁ ସହଜରେ ଖୋପରୁ କାଢ଼ି ଅପହରଣ କରିଛନ୍ତି । ଏଣୁ ଆଜି ଭୁବନେଶ୍ୱର ତଥା ଭୁବନେଶ୍ୱର ବାହାରର ବହୁ ମନ୍ଦିର ଗାତ୍ରରୁ ଅନେକ ସୁନ୍ଦର ପ୍ରତିମା ବାହାରକୁ ଚାଲିଯିବା ଯୋଗୁଁ ସ୍ଥାନଗୁଡ଼ିକ ଶୂନ୍ୟ ପଡ଼ିଛି । ତେବେ କଳିଙ୍ଗ ମନ୍ଦିରର ମଣ୍ଡନକୃତି ଓ ମୂର୍ତ୍ତିକଳାର ଚରମ ଉତ୍କର୍ଷ କୋଣାର୍କର ସୂର୍ଯ୍ୟ ମନ୍ଦିରରେ ଦେଖିବାକୁ ମିଳେ । ଏହାର କମନୀୟ ମଣ୍ଡନକୃତିଗୁଡ଼ିକ ଚଳଚଞ୍ଚଳ ଓ ସାବଲୀଳ ହୋଇଥିବା ବେଳେ ସମ୍ପୂର୍ଣ୍ଣ ସ୍ୱାଧୀନ ଭାବେ ଦଣ୍ଡାୟମାନ ବହୁ ବିଶାଳ ମୂର୍ତ୍ତି, ମନେ ହୁଏ ସତେ ଯେପରି ଜୀବନ୍ତ ।

# ରେଖଦେଉଳ

ବର୍ଗାକାର ଗର୍ଭଗୃହ, ଏକ କୋଠରି ଯୁକ୍ତ, ଶିବଲିଙ୍ଗ ସଦୃଶ ନିର୍ମାଣ ଉପରେ ଚକ୍ରାକାର ବେକି, ଆମଳକଶିଳା ଓ କଳସ ଥିବା ମନ୍ଦିର ଗୁଡ଼ିକ 'ରେଖ' ଦେଉଳ ନାମରେ ପରିଚିତ । ସର୍ବତ୍ର ଏହା ମଧ୍ୟରେ ଦେବ ଦେବୀଙ୍କୁ ଅବସ୍ଥାପିତ କରାଯାଇ, ପ୍ରଥମ ବା ମୁଖ୍ୟ ଦେଉଳ ଭାବେ ବ୍ୟବହାର କରାଯାଏ ।ଏହି ପ୍ରକାର ନିର୍ମାଣକୁ ବିମାନ କିମ୍ୱା ଶ୍ରୀମନ୍ଦିର ମଧ୍ୟ କହନ୍ତି । ଭୂମି ଉପରେ ଦଣ୍ଡାୟମାନ ଏହାର ସର୍ବାଙ୍ଗକୁ ମୁଖ୍ୟ ତିନି ଭାଗରେ ବିଭକ୍ତ କରାଯାଉଥିବା ବେଳେ ପ୍ରତ୍ୟେକ ଅଙ୍ଗରେ କେତେକ ଉପ-ଅଙ୍ଗ ମଧ୍ୟ ରହିଥାଏ । ତେବେ ଏହି ତିନି ମୁଖ୍ୟଅଙ୍ଗ ଗୁଡ଼ିକ ହେଲା ବାଢ଼,ଗଣ୍ଡି ଓ ମସ୍ତକ ।

**ରଥକ:**

ରେଖ ଦେଉଳର ଭୂନକ୍ସା ଅନୁଧ୍ୟାନରୁ ଜଣାଯାଏ ଯେ ଏହାର ବର୍ଗାକାର ଗର୍ଭଗୃହର ଭିତର ପାଖ ଚାରି ସରଳ ରେଖା ଉପରେ ଆଧାରିତ ହୋଇଥିଲେ ହେଁ ପ୍ରତ୍ୟେକ ବାହାର ପାଖ, ଦୁଇ ବିପରୀତ ଦିଗ ସହିତ ସମତା ରକ୍ଷା କରି ଆଲମ୍ବ ଭାବେ ଭାଗ ଭାଗ ହୋଇଥାଏ । ଅର୍ଥାତ୍ ବାଢ଼ର ମଧ୍ୟଭାଗ କିଞ୍ଚିତ ଆଗକୁ ଓ ଅନ୍ୟ ଭାଗ ଗୁଡ଼ିକ କିଞ୍ଚିତ ପଛକୁ ଥାଏ । ଭୂନକ୍ସାର ଏହି ପ୍ରଭାବ ଦେଉଳର ବାଢ଼ ଓ ଗଣ୍ଡି ଉପରେ ପଡ଼ିବା ଦ୍ୱାରା ଆଲମ୍ବ ରେଖାମାନ ସୃଷ୍ଟି ହୁଏ । ଏଣୁ ଏହାକୁ 'ରେଖଦେଉଳ' କୁହାଯାଏ । ଅନ୍ୟ ଭାବରେ ଏହି ରେଖା ଗୁଡ଼ିକ ଦ୍ୱାରା ସୃଷ୍ଟି ହୋଇଥିବା ପ୍ରତ୍ୟେକ ଆଲମ୍ବ ଭାଗକୁ ରଥକ କୁହାଯାଉଥିବାରୁ ଏଗୁଡ଼ିକ 'ରଥକଦେଉଳ' ନାମରେ ମଧ୍ୟ ପରିଚିତ ।

ପ୍ରାଚୀନ ଅର୍ଥାତ୍ ପ୍ରଥମ ପର୍ଯ୍ୟାୟ ମନ୍ଦିର ଗୁଡ଼ିକର ପ୍ରତ୍ୟେକ ବାହାର ପାଖ ବାଢ଼ ଓ ଗଣ୍ଡି ତିନି ଭାଗରେ ବିଭକ୍ତ ହୋଇଥିବାରୁ ଏଗୁଡ଼ିକୁ ତ୍ରିରଥ ମନ୍ଦିର କୁହାଯାଏ । ଅନ୍ୟ ଭାବରେ ଏହି ରଥକ ଗୁଡ଼ିକୁ 'ପାଗ' ମଧ କୁହାଯାଏ, ଏଣୁ ଏହାର ମଧଭାଗ ରାହାପାଗ ଭାବେ ପରିଚିତ ହେଉଥିବା ବେଳେ ଦୁଇ ପାଖରେ କୋଣ ସୃଷ୍ଟି କରୁଥିବା ଦୁଇ ଭାଗକୁ 'କନିକପାଗ' କହନ୍ତି । ସେହିପରି ଦେଉଳର ପ୍ରତ୍ୟେକ ବାହାର ପାଖ ପାଞ୍ଚ ଭାଗରେ ବିଭକ୍ତ ହୋଇଥିଲେ, ତାହାକୁ 'ପଞ୍ଚରଥ', ସାତ ଭାଗରେ ବିଭକ୍ତ ହୋଇ ଥିଲେ 'ସପ୍ତରଥ' ଓ ନଅ ଭାଗରେ ବିଭକ୍ତ ହୋଇ ଥିଲେ, ତାହାକୁ 'ନବରଥ' ମନ୍ଦିର କୁହାଯାଏ । ରାହାପାଗ ଓ କନିକପାଗ ମଧରେ ରଥକ ଗୁଡ଼ିକ ସାଧାରଣତଃ, କ୍ରମାନୁସାରେ ଅନୁରାହା, ଅନର୍ଥ ଓ ପରିରଥ ନାମରେ ପରିଚିତ । ବିକଶିତ ରେଖ ଦେଉଳର ଦୁଇ ରଥକ ମଧରେ ସୃଷ୍ଟି ହୋଇଥିବା କନ୍ଦି ଗୁଡ଼ିକୁ ଅନ୍ତରା କୁହାଯାଉଥିବା ବେଳେ ଏହି ଅନ୍ତରା ମଧରେ ରହିଥିବା ଉପସ୍ତମ୍ଭ ସଦୃଶ ନିର୍ମାଣଗୁଡ଼ିକୁ ଅନ୍ତରାପାଗ କହନ୍ତି । ତେବେ କେତେକ ଶିଳ୍ପପୋଥି ତଥା ଶିଳ୍ପୀଙ୍କ ମତରେ ଏହି ନାମ ଗୁଡ଼ିକରେ କେତେକ ପାର୍ଥକ୍ୟ ଦେଖାଯାଏ । ଏଠାରେ ଏହାର ଏକ ଉଦାହରଣ ଦିଆଗଲା:-

Canons of Orissan Architecture : Ed. by N.K.Bose.

ଭୁବନ ପ୍ରଦୀପ ଶିଳ୍ପପୋଥିର ତଥ୍ୟ ଅନୁଯାୟୀ,

ରଥକ ବା ପାଗମାନଙ୍କ ଏକ ପାଖରେ ପରିଚୟ, ରାହାପାଗ ଠାରୁ ଡ଼ାହାଣକୁ :-

| | | |
|---|---|---|
| ତ୍ରିରଥ ଦେଉଳ | | ରାହା ଓ କନିକ । |
| ପଞ୍ଚରଥ ଦେଉଳ | : | ରାହା, ଅନୁରାହା ଓ କନିକ । |
| ସପ୍ତରଥ ଦେଉଳ | : | ରାହା, ଅନୁରାହା, ଅନର୍ଥ ଓ କନିକ । |
| ନବରଥ ଦେଉଳ | : | ରାହା, ଅନୁରାହା, ଅନର୍ଥ, ପରିରଥ ଓ କନିକ । |




ମନ୍ଦିର ଭୂନକ୍ସାରେ ରଥକଗୁଡ଼ିକର ସ୍ଥାନ

Orissa and Her Remains, By Er. M.M. Ganguly
(ପ୍ରାୟ ଖ୍ରୀ: ୧୯୧୦ ରେ ସଂଗୃହୀତ ତଥ୍ୟ ଅନୁଯାୟୀ, ଗୋଟିଏ ପାଖର ସମ୍ପୂର୍ଣ୍ଣ ବର୍ଣ୍ଣନା) :-

| | |
|---|---|
| ଏକରଥ | ଏହାର ବାହାର ଓ ଭିତର ପାଖ ସମ୍ପୂର୍ଣ୍ଣ ବର୍ଗାକାର । |
| ତ୍ରିରଥ | ଗୋଟିଏ ରାହାପାଗ ଓ ଦୁଇଟି କନିକ ପାଗ । |
| ପଞ୍ଚରଥ | ଏକ ରାହାପାଗ, ଦୁଇ ଅନର୍ଥପାଗ ଓ ଦୁଇ କନିକପାଗ । |
| ସପ୍ତରଥ | ଏକ ରାହାପାଗ, ଦୁଇ ଅନର୍ଥପାଗ, ଦୁଇ ପରିରଥପାଗ ଓ ଦୁଇ କନିକପାଗ । |
| ନବରଥ | ଏକ ରାହାପାଗ, ଚାରି ଅନର୍ଥପାଗ ଓ ଚାରି କନିକପାଗରୁ ଦୁଇ ଅନ୍ୟ କନିକକୁ ପରିକନିକପାଗ କୁହାଯାଏ । |

ସର୍ବଶେଷରେ ପୂର୍ବ ପ୍ରକାଶିତ ବହୁ ପୁସ୍ତକ ଅଧ୍ୟୟନ କରି ପ୍ରଃ ଥୋମାସ୍ ଡୋନାଲଡ୍ସନ୍, ଓଡ଼ିଶା ମନ୍ଦିରର କଳା ଓ ସ୍ଥାପତ୍ୟ ଉପରେ ଲିଖିତ ତାଙ୍କ 'ହିନ୍ଦୁ ଟେମ୍ପଲ ଆର୍ଟ ଅଫ୍ ଓଡ଼ିଶା' ପୁସ୍ତକରେ ଦେଇଥିବା ତଥ୍ୟ ଅନୁଯାୟୀ-ଗୋଟିଏ ପଞ୍ଚରଥ ମନ୍ଦିରର ଗୋଟିଏ ପାର୍ଶ୍ୱରୁ ଯଥାକ୍ରମେ ରାହା, ଅନୁରାହା, ଅନର୍ଥ ଓ କନିକପାଗ ଦର୍ଶା ଯାଇଥିବା ବେଳେ ଗୋଟିଏ ନବରଥ ମନ୍ଦିରର ଗୋଟିଏ ପାର୍ଶ୍ୱରୁ ସେହିପରି ରାହା, ଅନର୍ଥ, ପରିରଥ, ଅନର୍ଥ ଓ କନିକପାଗ ବୋଲି ଉଲ୍ଲେଖ କରିଛନ୍ତି । ଏଠାରେ ବିକଶିତ ମନ୍ଦିରର ଅନ୍ତରାପାଗଗୁଡିକୁ ସେ ଅନୁରାହା ଭାବରେ ନାମିତ କରିଥିବାରୁ ବିଷୟଟି ଅଧିକ ଜଟିଳ ହୋଇପଡିଛି ।

ଏହି ରଥକ ଗୁଡ଼ିକୁ ନେଇ ମନ୍ଦିରର ଶ୍ରେଣୀ ବା ଜାତି ନିର୍ଣ୍ଣୟ ହୋଇଥାଏ । ନବରଥ ମନ୍ଦିର ଗୁଡ଼ିକ ସର୍ବଶ୍ରେଷ୍ଠ, ଅର୍ଥାତ ବ୍ରାହ୍ମଣ ଜାତୀୟ । ସେହିପରି ସପ୍ତରଥ ମନ୍ଦିରଗୁଡ଼ିକ କ୍ଷତ୍ରିୟ, ପଞ୍ଚରଥ ମନ୍ଦିର ଗୁଡ଼ିକ ବୈଶ୍ୟ ଶ୍ରେଣୀୟ ହୋଇଥିବା ବେଳେ ତ୍ରିରଥ ମନ୍ଦିରଗୁଡ଼ିକ ଶୂଦ୍ର ଶ୍ରେଣୀୟ ବୋଲି ବିବେଚନା କରାଯାଏ ।

## ବିଭିନ୍ନ ଆକୃତିର ରେଖ ଦେଉଳ

ମନ୍ଦିରର ମୁଖ୍ୟ ନିର୍ମାଣକୁ ଆକର୍ଷଣୀୟ କରିବା ନିମନ୍ତେ ରଥକ ଗୁଡ଼ିକର ପରିକଳ୍ପନାକୁ, ସ୍ଥପତି ପ୍ରଥମେ ଭୂନକ୍ସାରେ ରୂପ ଦେଇଥାଏ । ଏହାଦ୍ୱାରା ଭୂନକ୍ସାର ପରିବର୍ତ୍ତନ ବିଷୟ ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଛି । ତେବେ ଏହା ସହିତ, ସମୟାନୁକ୍ରମେ ଦଣ୍ଡାୟମାନ ରେଖଦେଉଳ ଦେହର ପରିବର୍ତ୍ତନ ମଧ୍ୟ ଉଲ୍ଲେଖଯୋଗ୍ୟ । ବିଭିନ୍ନ ଶିଳ୍ପପୋଥିରେ, ଭିନ୍ନ ଭିନ୍ନ ଶୈଳୀ ବା ଆକାର ପ୍ରକାରର ଦେଉଳ ଗୁଡ଼ିକର ନାମକରଣରେ ବହୁ ଭିନ୍ନତା ପରିଲକ୍ଷିତ ହୁଏ । ତେବେ ମୌଳିକ ଆକାରକୁ ନେଇ

ଏଗୁଡ଼ିକୁ ମୁଖ୍ୟତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଅଧିକାଂଶ ପ୍ରାଚୀନ ରେଖଦେଉଳର ଭୂନକ୍ସା ବର୍ଗାକାର ହେଲେହେଁ, ଏହାର ବାହ୍ୟ ଗଠନ-ଅନୁଚ୍ଚ ଶିବଲିଙ୍ଗ ସଦୃଶ ଗୋଲିଆ ଦେଖାଯାଏ । ଏହାର ଉଦାହରଣ ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର , ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରର ଆକାରରେ ପରିଲକ୍ଷିତ ହୁଏ । ଏହି ପ୍ରକାର ଶୈଳୀକୁ 'ଶିଳ୍ପ ପ୍ରକାଶ'ରେ 'ପଦ୍ମଗର୍ଭା' ବୋଲି କୁହାଯାଇଛି । ମଧ୍ୟଯୁଗୀୟ ଅନେକ ମନ୍ଦିରର ରଥକ ସଂଖ୍ୟା ଓ ଉଚ୍ଚତା ବୃଦ୍ଧି ଯୋଗୁଁ ଏଗୁଡ଼ିକର ଆକାର ରଥ ସଦୃଶ ଦେଖା ଯାଉଥିବାରୁ ଏଗୁଡ଼ିକ 'ରଥଯୁକ୍ତା' ନାମରେ ପରିଚିତ । ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଭୁବନେଶ୍ୱରର ମେଘେଶ୍ୱର, ଜଟଣୀ ନିକଟ କାକୁଡ଼ିଆର ଗୋପୀନାଥ ମନ୍ଦିର ଭଳି କେତେକ ଅପେକ୍ଷାକୃତ କ୍ଷୀଣ ମନ୍ଦିର ଏହି ଶୈଳୀର ଅଟେ । ପରବର୍ତ୍ତୀ ସମୟରେ ନିର୍ମିତ କେତେକ ବିକଶିତ ସୁଉଚ୍ଚ ମନ୍ଦିରର ବାଡ଼ ସମେତ ଗଣ୍ଡିର କେତେକାଂଶ ସ୍ତମ୍ଭ ସଦୃଶ ସଳଖ ଭାବେ ଉଠିବା ପରେ, ଗଣ୍ଡି କ୍ରମଶଃ ବକ୍ର ହୋଇ ବେକି ନିମନ୍ତେ ଚକ୍ରାକାର ସମତଳ ସ୍ଥାନ ବା ଘୋଡ଼ାଚକଡ଼ା ସୃଷ୍ଟି କରିଥାଏ । ଭୁବନେଶ୍ୱରର ଲିଙ୍ଗରାଜ, ବ୍ରହ୍ମେଶ୍ୱର ଓ ଅନନ୍ତ-ବାସୁଦେବ ଭଳି କେତେକ ନିର୍ମାଣ ଏହାର ଉଦାହରଣ । ଏହି ପ୍ରକାର ଦେଉଳକୁ କେତେକ ଶିଳ୍ପୀ 'ମେରୁ' ଶୈଳୀ ବୋଲି କହିଥାଆନ୍ତି । ଏହା ବ୍ୟତୀତ ଅନ୍ୟ କେତେକ ମନ୍ଦିରର ଆକାର ପ୍ରକାର ମିଶ୍ରିତ ଶୈଳୀ ଭଳି ମନେ ହୁଏ । କାରଣ ପ୍ରତ୍ୟେକ ସ୍ଥପତି ବା ଶିଳ୍ପୀ ନିଜର ନିର୍ମାଣକୁ ନିଜସ୍ୱ ଶୈଳୀରେ ଉପସ୍ଥାପନା କରିବାକୁ ଚେଷ୍ଟା କରିଛନ୍ତି । ତେବେ ଏହି ମୁଖ୍ୟ ତିନି ଶୈଳୀର ଚିତ୍ର ନିମ୍ନରେ ଦିଆଗଲା ।



ପଦ୍ମଗର୍ଭା, ରଥଯୁକ୍ତା ଓ ମେରୁ ଶୈଳୀର ମନ୍ଦିର

# ରେଖଦେଉଳର ଅଙ୍ଗ ପ୍ରତ୍ୟଙ୍ଗ

## ବାଢ଼, ଗଣ୍ଡି ଓ ମସ୍ତକ:

ଦଣ୍ଡାୟମାନ ଏକ ରେଖ ଦେଉଳର ସର୍ବାଙ୍ଗକୁ ମୁଖ୍ୟ ତିନି ଭାଗରେ ବିଭକ୍ତ କରାଯାଇଥାଏ । ନିମ୍ନଭାଗକୁ 'ବାଢ଼', ମଧ୍ୟ ଭାଗକୁ 'ଗଣ୍ଡି' ଓ ଉର୍ଦ୍ଧ୍ୱ ଅଂଶକୁ 'ମସ୍ତକ' କୁହାଯାଏ । ବାଢ଼ରେ ଥିବା ପ୍ରତ୍ୟଙ୍ଗ ଗୁଡ଼ିକ ହେଉଛି, ପାଭାଗ, ଜଂଘ ଓ ବରଣ୍ଡ । ଗଣ୍ଡିରେ ରଥକ ବା ପାଗଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ହୋଇଥିବା ବେଳେ ଏହା ଉପରେ କେତେକ ମଣ୍ଡନକୃତି ଓ ମୂର୍ତ୍ତିକଳା ଦେଖାଯାଏ । ମସ୍ତକ ଭାଗରେ ରହିଛି ବେକି, ତ୍ରିପଟଧାର ସହିତ ଆମଳକଶିଳା, ଖପୁରି ଓ କଳସ । ଏହି କଳସ ଉପରେ ଆୟୁଧ ସହିତ ଧ୍ୱଜା ବନ୍ଧା ଯାଇଥାଏ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ସମୟରେ ବହୁ ମନ୍ଦିର ଗଢ଼ି ଉଠିଛି । ତେବେ ଏଗୁଡ଼ିକର ଅଙ୍ଗ, ପ୍ରତ୍ୟଙ୍ଗର ଅଧ୍ୟୟନ ଓ ଉଦାହରଣ ନିମନ୍ତେ ସୁବିଧା ଦୃଷ୍ଟିରୁ ଭୁବନେଶ୍ୱର ଓ ତାର ଆଖପାଖ ଅଞ୍ଚଳର କେତେକ ମନ୍ଦିରର ସୂଚନା ଦେବା ଉଚିତ୍ ମନେ କରାଯାଇଛି ।

## ପାଭାଗ:

ଏହା ଭୂମି ଉପରୁ କିମ୍ୱା ପୀଠ ଉପରୁ ଉଠିଥିବା ଦେଉଳର ପ୍ରଥମ ଅର୍ଥାତ ପାଦଭାଗ । ପ୍ରାଚୀନ ମନ୍ଦିରମାନଙ୍କ 'ପାଭାଗ'ରେ ତିନି ପ୍ରକାର କାର୍ଯ୍ୟ, ପ୍ରସ୍ଥଭାବରେ , ତିନି ଧାରରେ ରହିଥାଏ । ଏଥିରେ ଉଚ୍ଚ ଖୁରା, ଅର୍ଦ୍ଧ-ଗୋଲାକାର 'ନୋଳି' ଓ ପୁନଶ୍ଚ ଖୁରା ସଦୃଶ ନିର୍ମାଣ ଦେଖାଯାଏ । ଏହାର କିଞ୍ଚିତ ପରବର୍ତ୍ତୀ ସମୟ ଅର୍ଥାତ ଖ୍ରୀ:୯ମ-୧୦ମ ଶତାବ୍ଦୀର ମନ୍ଦିର ମାନଙ୍କରେ ଏହା ଚାରି ଧାରରେ ଦେଖା ଗଲା । କିନ୍ତୁ ମଧ୍ୟଯୁଗରେ ଏହି ପାଭାଗ ନିର୍ମାଣ ନିର୍ଦ୍ଦିଷ୍ଟ ପାଞ୍ଚ ପ୍ରକାର ଧାରରେ ସ୍ଥିର ରହିବାରୁ, ଏହା 'ପଞ୍ଚକର୍ମ' ଭାବେ ପରିଚିତ ହେଲା । ଏହି ପାଞ୍ଚ ଧାରର ନାମ, ନିମ୍ନରୁ ଉର୍ଦ୍ଧ୍ୱକୁ ଯଥାକ୍ରମେ - 'ଖୁରା', ଯାହାକି ଗୋରୁ ଖୁରାର ଅନୁକରଣ, ଦ୍ୱିତୀୟ ସ୍ତରର ନାମ 'କୁମ୍ଭ' ଏହା କଳସର ଏକ ଭାଗ ସଦୃଶ । ତୃତୀୟ ପତଳା ଧାରକୁ 'ପଟି' କୁହାଯାଏ । ଏହା ଏକ ସରଳ, ସଂକୀର୍ଣ୍ଣ ଧାର । ଚତୁର୍ଥ ଅଂଶଟି ଏକ ଧାରୁଆ କୋଣ ସୃଷ୍ଟି କରୁଥିବାରୁ ଏହାର ନାମ 'କନି' ଏବଂ ସର୍ବୋଚ୍ଚରେ ଥିବା କିଞ୍ଚିତ୍ ଚଉଡା ଧାରରେ ବସନ୍ତ ଋତୁର ପଲ୍ଲବିତ ପତ୍ର, ପୁଷ୍ପ ଇତ୍ୟାଦି ଖୋଦିତ ହେଉଥିବାରୁ ଏହାର ନାମ 'ବସନ୍ତ' ଅଟେ ।




ବିଭିନ୍ନ ପ୍ରକାର ପାଭାଗର ଚିତ୍ର

ପ୍ରାଚୀନ ପରଶୁରାମେଶ୍ୱର ଦେଉଳର ପାଭାଗରେ, ତିନି ସ୍ତରର କର୍ମରେ ଖୁରା ଓ ନୋଳି ଅଂଶରେ କୌଣସି ମଣ୍ଡନକୃତି ନଥିବା ବେଳେ ଉପର ଭାଗର ଖୁରା ସଦୃଶ ନିର୍ମାଣର ମାହୁନ୍ତିରେ କେତେକ ମଣ୍ଡନକୃତି ଦେଖିବାକୁ ମିଳେ । ବୋଇତାଳ ଦେଉଳ ଓ ଶିଶିରେଶ୍ୱର ଦେଉଳର ପାଭାଗରେ ଥିବା ଚାରିକର୍ମ ମଧ୍ୟରୁ, ନୋଳି ଓ ତା'ଉପର ଖୁରା ସଦୃଶ ନିର୍ମାଣକୁ ଆଲମ୍ବ ପତ୍ରଧାରର ମଣ୍ଡନକୃତି ସଂଯୋଗ କରୁଥିବାରୁ ଏହା ପୂର୍ଣ୍ଣଘଟର ସୂଚନା ଦିଏ । ଏହି ଘଟ ଉପରେ ଡମ୍ବରୁଭାଗ ସୃଷ୍ଟି କରୁଥିବା ଏକ କୁମ୍ଭିକ ପଟି ଦେଖାଯାଏ । ମୁକ୍ତେଶ୍ୱର ଓ ଗୌରୀ ଦେବୀଙ୍କ ଦେଉଳର ପାଭାଗରେ ଚାରି ଓ ପଞ୍ଚକର୍ମ ରହିଛି । ଏହାର କନିକ ପାଗରେ ଚାରିକର୍ମ ଓ ଅନ୍ୟ ପାଗଗୁଡ଼ିକରେ ପଞ୍ଚକର୍ମର ନିର୍ମାଣ ଏକ ଭିନ୍ନ ପରିକଳ୍ପନା । ଏଠାରେ ପୂର୍ବର ନୋଳି ଅଂଶଟି ପଦ୍ମ ପାଖୁଡ଼ା ଭଳି ଦେଖା ଯାଉଥିବା ବେଳେ ଏହା ପରବର୍ତ୍ତୀ ସମୟର କୁମ୍ଭର ପୂର୍ବାଭାସ ଦିଏ । ଏହାର ଉପରେ ଥିବା ଦୁଇ ଓ ତିନି ସ୍ତରର ପଟି ସଦୃଶ ମଣ୍ଡନକୃତି ଯୁକ୍ତ ନିର୍ମାଣ ଗୁଡ଼ିକର ମଧ୍ୟସ୍ଥଳ ଜ୍ୟାମିତିକ ଶୈଳୀରେ, ଡମ୍ବରୁର କଟି ସଦୃଶ ଆକାର ସୃଷ୍ଟି କରୁଥିବାରୁ ଏହାକୁ 'ଡ଼ମ୍ବରୁଭାଗ' ମଧ୍ୟ କୁହାଯାଏ । ଏହାର ପରବର୍ତ୍ତୀ ସମୟରେ, ଅର୍ଥାତ ମଧ୍ୟଯୁଗର ବିକଶିତ 'ପଞ୍ଚକର୍ମ' ଯୁକ୍ତ ପାଭାଗ ରାଜାରାଣୀ, ବ୍ରହ୍ମେଶ୍ୱର, ଅନନ୍ତ-ବାସୁଦେବ, ଇତ୍ୟାଦି ବହୁ ମନ୍ଦିରରେ ଦେଖିବାକୁ ମିଳେ ।

**ଜଂଘ ଓ ବନ୍ଧନୀ :**

ପାଭାଗ ଉପରେ ଥିବା ଅଂଶ ଜଂଘ ନାମରେ ପରିଚିତ । ଏହା ବାଡର ମଧ୍ୟଭାଗ । ପ୍ରାଚୀନ ମନ୍ଦିରମାନଙ୍କର ଗୋଟିକିଆ, ପ୍ରଶସ୍ତ ଜଂଘ ଉପରେ ମନ୍ଦିର ସଦୃଶ ନିର୍ମାଣ କିମ୍ବା ଉପସ୍ତମ୍ଭ ମାନଙ୍କରେ ବିଭିନ୍ନ ମଣ୍ଡନକୃତି ଓ ମୂର୍ତ୍ତି ଦେଖାଯାଏ । ପରବର୍ତ୍ତୀ ସମୟରେ ବନ୍ଧନୀ ବା 'ମଧ୍ୟବନ୍ଧନୀ' ନାମକ ଧାର ସଦୃଶ ନିର୍ମାଣ ଜଂଘକୁ ପ୍ରସ୍ତ ଭାବରେ, ଦୁଇ ଭାଗରେ ବିଭକ୍ତ କରିଥିବା ଦେଖାଯାଏ । ଦୃଢ଼ତା ନିମନ୍ତେ ଜଂଘକୁ ବାନ୍ଧି ରଖିବା ଧାରଣା ସୃଷ୍ଟି କରୁଥିବାରୁ ଏହି କୃତିର ନାମ 'ବନ୍ଧନୀ' । କେତେକ ପ୍ରାଚୀନ ମନ୍ଦିରର ଜଂଘରେ କେବଳ ଗୋଟିଏ ଧାରର ବନ୍ଧନୀ ରହିଥିବା ବେଳେ ଅନ୍ୟ କେତେକ ସ୍ଥାନରେ ଦୁଇ ଧାରର ବନ୍ଧନୀ ଦେଖାଯାଏ । ବିକଶିତ ମନ୍ଦିରମାନଙ୍କରେ ଏହାର ସଂଖ୍ୟା ବୃଦ୍ଧି ପାଇ ତିନି ଧାରରେ ନିର୍ଦ୍ଦିଷ୍ଟ ରହିଛି । ଏହି ତିନି ଧାରରେ ଦେଖା ଯାଉଥିବା ପଟି, କନି ଓ ବସନ୍ତକୁ 'ତ୍ରିକର୍ମ ବନ୍ଧନୀ' କୁହାଯାଏ ।




ବିଭିନ୍ନ ପ୍ରକାର ବନ୍ଧନୀର ଚିତ୍ର

ଖ୍ରୀ:୬ଷ-୭ମ ଠାରୁ ୯ମ-୧୦ମ ଶତାବ୍ଦୀ ମଧ୍ୟରେ ନିର୍ମିତ ଦେଉଳର ବାଡ଼ ବନ୍ଧନୀ ବିହୀନ । ଏହାର ପରବର୍ତ୍ତୀ ସମୟରେ ନିର୍ମିତ ଲିଙ୍ଗରାଜ ମନ୍ଦିର ପରିସରର ବିଶ୍ୱକର୍ମା ମନ୍ଦିର, ଲାବଣ୍ୟେଶ୍ୱର ମନ୍ଦିର ସମେତ ଭୁବନେଶ୍ୱର ନିକଟ କଳାରାହାଙ୍ଗ ଗ୍ରାମର ଜଳେଶ୍ୱର ମନ୍ଦିର ଓ ଟାଙ୍ଗି ନିକଟ ଗୋଳବାଇର ଜଳେଶ୍ୱର ମନ୍ଦିର ବାଡ଼ର ଜଂଘରେ ନୋଳି ସଦୃଶ ଗୋଟିଏ ଧାରର ବନ୍ଧନୀ ଦେଖିବାକୁ ମିଳେ । ଭୁବନେଶ୍ୱରର ତୀର୍ଥେଶ୍ୱର ଦେଉଳ ଜଂଘରେ ନୋଳି ବନ୍ଧନୀର ତଳେ ଓ ଉପରେ ପତଳା ଧାର ରହିଛି । ରାଜାରାଣୀ ମନ୍ଦିରରେ ମଣ୍ଡନକୃତି ଯୁକ୍ତ ଦୁଇ ଧାରର ବନ୍ଧନୀ ଦେଖାଯାଏ । ବ୍ରହ୍ମେଶ୍ୱର ମନ୍ଦିରର ଦେଉଳ ବାଡ଼ରେ ଭିନ୍ନ ଶୈଳୀର ମଣ୍ଡନକୃତି ଯୁକ୍ତ, ଏକ-ଧାରର ଖୁରା ବନ୍ଧନୀ ରହିଛି । ଏହାର ପରବର୍ତ୍ତୀ ସମୟର ଅଧିକାଂଶ ଦେଉଳ ଜଂଘରେ ଉପରୋକ୍ତ ପ୍ରକାରେ 'ତ୍ରିକର୍ମ' ବନ୍ଧନୀ ରହିଥିବା ବେଳେ ଜଟଣୀ ନିକଟ କାକୁଡ଼ିଆ ଗ୍ରାମର ଗୋପୀନାଥଙ୍କ ଦେଉଳ ବାଡ଼, ଗାରଡ଼ିପାଞ୍ଚଣର ବୁଦ୍ଧନାଥ ମନ୍ଦିର ବାଡ଼ ଓ କୋଣାର୍କ ସୂର୍ଯ୍ୟ ମନ୍ଦିର ବାଡ଼ରେ ପଞ୍ଚକର୍ମର ବନ୍ଧନୀ ଏକ ଭିନ୍ନ ପରିକଳ୍ପନା ।



ରାଜାରାଣୀ ମନ୍ଦିରର ବାଡ଼



ଜଂଘ, ପାର୍ବତୀ ମନ୍ଦିର, ଲିଙ୍ଗରାଜ ମନ୍ଦିର ପରିସର

**ବରଣ୍ଡ:**

ଏହା ବାଡ଼ର ସର୍ବୋଚ୍ଚ ଭାଗ, ଯାହାକି ଜଂଘ ଉପରେ ଥାଏ । ପ୍ରାଚୀନ ମନ୍ଦିର ମାନଙ୍କରେ ଏହା କିଞ୍ଚିତ ଗଭୀରରେ ଥିବା କାନ୍ଥି ସଦୃଶ ଏକ କିମ୍ବା ଦୁଇ ଧାରର ନିର୍ମାଣ । ଏହି ଗହୀରିଆ ସ୍ଥାନରେ ବିଭିନ୍ନ ପ୍ରକାର ମଣ୍ଡନକୃତି ଓ ମୂର୍ତ୍ତି ଦେଖିବାକୁ ମିଳେ । ମଧ୍ୟଯୁଗର ପ୍ରାରମ୍ଭରୁ ବରଣ୍ଡର ପରିକଳ୍ପନାରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିବା ଦ୍ୱାରା ଏହା ଜଂଘ ଉପରେ କଟିବନ୍ଧ ସଦୃଶ ମଣ୍ଡନକୃତି ଭଳି ମନେହୁଏ । ବିକଶିତ ମନ୍ଦିରମାନଙ୍କ ବରଣ୍ଡରେ, ପ୍ରସ୍ଥଭାବରେ ଥିବା ସାତରୁ ଦଶ ଧାରର ନିର୍ମାଣ ଦେଖିବାକୁ ମିଳେ । ତେବେ ଅଧିକାଂଶ ମଧମ ଆକାରର ମନ୍ଦିରମାନଙ୍କରେ ନିମ୍ନରୁ ଉର୍ଦ୍ଧ୍ୱକୁ ଦେଖା ଯାଉଥିବା ନିର୍ଦ୍ଦିଷ୍ଟ ସାତ ଧାରର କର୍ମ, ଯଥା- ଖୁରା, ପଦ୍ମ, ପଟି, କନି, ପଟି,କନି ଓ ବସନ୍ତ 'ସପ୍ତକର୍ମ' ନାମରେ ପରିଚିତ । ବାସ୍ତବରେ, ଏଥିରେ ପାଞ୍ଚ ପ୍ରକାର ମଣ୍ଡନକୃତି ସାତ ଧାରରେ ରହିଛି ।

ପ୍ରାଚୀନ ପରଶୁରାମେଶ୍ୱର ମନ୍ଦିରର ବରଣ୍ଡର ଦୁଇ ଖୁରା ସଦୃଶ ନିର୍ମାଣର ମଧରେ, କିଞ୍ଚିତ୍ ଗଭୀରରେ କାନ୍ଥିର ଧାର ଦେଖାଯାଏ । ଏହି ଖୁରାମାନଙ୍କ ମାହୁନ୍ତିରେ କେତେକ ମଣ୍ଡନକୃତି ରହିଥିବା ବେଳେ ଭିତର କାନ୍ଥିର ଆଲମ୍ବ, ଆୟତାକାର କ୍ଷେତ୍ରମାନଙ୍କରେ ଜାଲି, ଯୁଗଳ ମୂର୍ତ୍ତି ଏବଂ କୋଣମାନଙ୍କରେ ଗଜାକ୍ରାନ୍ତ ବା ଗଜସିଂହ ମୂର୍ତ୍ତିମାନ ଦେଖିବାକୁ ମିଳେ । ଖାକରା ଶୈଳୀର ବୋଇତାଳ ଦେଉଳ ଜଂଘରେ ଥିବା ଉପସ୍ତମ୍ଭ ମାନଙ୍କ ଉପରେ ବରଣ୍ଡ ରହିଛି । ଏହାର ଗଭୀର କାନ୍ଥିରେ ବିଭିନ୍ନ ଭଙ୍ଗିରେ ହସ୍ତୀ ଓ ଯୁଗଳମୂର୍ତ୍ତିମାନ ଉତ୍କୀର୍ଣ୍ଣ ହୋଇଛି । ଏହା ଉପରେ ଥିବା ଖୁରା ସଦୃଶ ମାହୁନ୍ତିରେ ଚୈତ୍ୟପଦକ ଓ ନିମ୍ନରେ ଥିବା ଉପସ୍ତମ୍ଭ ଉପରେ ସିଂହଯୁଗଳ ଦେଖାଯାଆନ୍ତି । ମୁକ୍ତେଶ୍ୱର ମନ୍ଦିରର, ଦେଉଳ ବରଣ୍ଡର ଉପର ଓ ତଳ ଖୁରା ସଦୃଶ ନିର୍ମାଣର ଧାରରେ ଡ଼ାଳିନକ୍ସା ଓ ଉପର ଖୁରା ମାହୁନ୍ତିରେ ଚୈତ୍ୟପଦକ ମଣ୍ଡନକୃତି ଏବଂ ତଳ ଖୁରାରେ କେତେକ ଛୋଟ ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । ଭୁବନେଶ୍ୱର ବାହାରର କୁଆଖୋର କନକେଶ୍ୱର, ଗଞ୍ଜାମ ଜିଲ୍ଲାର ବଡଗାଁର ଶିବ ମନ୍ଦିର ସମେତ ଅନ୍ୟ କେତେକ ପ୍ରାଚୀନ ମନ୍ଦିରରେ ଏହି ପ୍ରକାର ଦୁଇ ଧାରର ଗହୀରିଆ ବରଣ୍ଡ ଦେଖାଯାଏ ।








**ବିଭିନ୍ନ ପ୍ରକାର ବରଣ୍ଡର ଚିତ୍ର**

ମଧ୍ୟଯୁଗୀୟ ମନ୍ଦିରର ପ୍ରାରମ୍ଭରେ ବରଣ୍ଡର ପରିକଳ୍ପନା ପରିବର୍ତ୍ତନ ଦ୍ୱାରା ଗହୀରିଆ ନିର୍ମାଣ ପରିବର୍ତ୍ତେ ସାମାନ୍ୟ ସମ୍ମୁଖକୁ ବାହାରିଥିବା ଧାରମାନ ଦେଖାଗଲା । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପରିସରର ବିଶ୍ୱକର୍ମା ଓ ଲାବଣ୍ୟେଶ୍ୱର ମନ୍ଦିରର ଖୁରା ଓ କନି ସଦୃଶ ଦୁଇ ଧାରର ବରଣ୍ଡ ରହିଥିବା ବେଳେ ତୀର୍ଥେଶ୍ୱର ଓ କଳାରାହାଙ୍ଗର ଜଳେଶ୍ୱର ମନ୍ଦିରର ବାଡରେ ଚାରିଧାରର ବରଣ୍ଡ ଦେଖାଯାଏ । ଏହାର ପରବର୍ତ୍ତୀ ସମୟର ବିକଶିତ ରାଜାରାଣୀ ଓ ବ୍ରହ୍ମେଶ୍ୱରଙ୍କ ଦେଉଳରେ ବରଣ୍ଡ ଭିନ୍ନ ଭିନ୍ନ ପ୍ରକାରର । ରାଜାରାଣୀ ମନ୍ଦିରର ସପ୍ତକର୍ମ ବରଣ୍ଡର ନିମ୍ନ ଓ ଉର୍ଦ୍ଧ୍ୱର ଧାର ଦୁଇଟି ନୋଳି ସଦୃଶ ହେଲେହେଁ ଯଥାକ୍ରମେ ପତଳା ଓ ମୋଟା । ଏହା ମଧ୍ୟର ନିମ୍ନରୁ ଉର୍ଦ୍ଧ୍ୱକୁ ଥିବା ଦ୍ୱିତୀୟ ଧାରରେ ପଦ୍ମ, ତୃତୀୟରେ ପଟି, ଚତୁର୍ଥ ଓ ପଞ୍ଚମରେ ଖୁରା ଏବଂ ଷଷ୍ଠ ଧାରରେ ବସନ୍ତ ଦେଖାଯାଏ । ବ୍ରହ୍ମେଶ୍ୱର ଦେଉଳ ବରଣ୍ଡରେ ଦେଖା ଯାଉଥିବା ତ୍ରିକର୍ମରେ ଖୁରା, କନି ଓ ନୋଳି ରହିଛି । ଖୁରାର ମୂଳ ଧାରରେ ବିଭିନ୍ନ ପ୍ରକାର ଡାଳି ସହିତ ପଶୁମାନଙ୍କ କ୍ରୀଡା ଦୃଶ୍ୟ ଓ ମାହୁନ୍ତିରେ ଛୋଟ ଛୋଟ ନାରୀ ଓ ମୈଥୁନ ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । କମନୀୟ କନିରେ ଏକାଧିକ ଧାର ରହିଥିବା ବେଳେ ସର୍ବୋଚ୍ଚରେ ଥିବା ମୋଟା ପଦ୍ମ ପାଖୁଡ଼ା ନୋଳିରେ କୁଟିଳ ନକ୍ସା ପରିପୂର୍ଣ୍ଣ । ଅଧିକାଂଶ ମଧ୍ୟଯୁଗୀୟ, ମଧ୍ୟମ ଆକାରର ମନ୍ଦିର ବରଣ୍ଡରେ ପୂର୍ବ ସୂଚିତ ସପ୍ତକର୍ମ ଦେଖାଯାଉଥିବାବେଳେ ସୁଉଚ୍ଚ ଲିଙ୍ଗରାଜ ମନ୍ଦିରରେ ଦଶକର୍ମ ବରଣ୍ଡର ପରିକଳ୍ପନା କରାଯାଇଛି । ଏହାର ପ୍ରଥମ ତୃତୀୟ ଓ ପଞ୍ଚମ ଧାରରେ ବସନ୍ତର ଡ଼ାଳି ନକ୍ସା, ଦ୍ୱିତୀୟରେ ଫେଣି ନକ୍ସା, ଚତୁର୍ଥ ଧାରର ନୋଳି ମଣ୍ଡନକୃତି ବିହୀନ, ଏବଂ ନବମ ଧାରର ନୋଳିରେ ଡାଳି ନକ୍ସା ଖୋଦିତ ହୋଇଛି । ଅନନ୍ତ-ବାସୁଦେବ ସମେତ ବହୁ ସୁଉଚ୍ଚ ମନ୍ଦିରର ବରଣ୍ଡରେ ବିଭିନ୍ନ ମଣ୍ଡନକୃତି ଯୁକ୍ତ 'ଦଶକର୍ମ' ଦେଖାଯାଏ ।

### ତ୍ରିଅଙ୍ଗବାଡ଼ ଓ ପଞ୍ଚାଙ୍ଗବାଡ଼:

ଭୂମି ଉପରୁ କିମ୍ବା ପୀଠ ଉପରୁ ସଳଖ ଭାବେ ଉଠିଥିବା ଦେଉଳର କାନ୍ଥକୁ ବାଡ଼ କୁହାଯାଏ । ବାଡ଼ର ବିଭିନ୍ନ ଅଙ୍ଗ ବିଷୟରେ ଉପରେ ସୂଚନା ଦିଆଯାଇଛି । ଯେଉଁଠାରେ ପାଭାଗ, ଅବିଭକ୍ତ ଏକଭାଗ ଜଂଘ ଓ ବରଣ୍ଡ, ଏହି ତିନି ଭାଗ ଥାଏ, ତାହାକୁ 'ତ୍ରିଅଙ୍ଗ ବାଡ଼' କୁହାଯାଏ । ଯେଉଁ ଠାରେ ଜଂଘ ବନ୍ଧନୀ ଦ୍ୱାରା ଦୁଇ ଭାଗରେ ବିଭକ୍ତ ହୋଇଥାଏ ତାହା 'ପଞ୍ଚାଙ୍ଗବାଡ଼' ଭାବରେ ପରିଚିତ । ଅର୍ଥାତ୍ ଏଥିରେ ଜଂଘ ଦୁଇ ଭାଗରେ ବିଭକ୍ତ ହେବା ଦ୍ୱାରା ବାଡରେ ପାଞ୍ଚଭାଗ ଦେଖାଯାଏ, ଯଥା-ପାଭାଗ, ତଳ ଜଂଘ, ବନ୍ଧନୀ, ଉପରଜଂଘ ଓ ବରଣ୍ଡ । ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର , ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିର ଭଳି କେତେକ ପ୍ରାଚୀନ ନିର୍ମାଣରେ ତ୍ରିଅଙ୍ଗବାଡ଼ ରହିଥିବା ବେଳେ ଅଧିକାଂଶ ମଧ୍ୟଯୁଗୀୟ ମନ୍ଦିରରେ ପଞ୍ଚାଙ୍ଗବାଡ଼ ଦେଖିବାକୁ ମିଳେ ।

### ଗଣ୍ଡି (ବିଷମ, ଘୋଡ଼ାଚକଡ଼ା):

ବାଡ଼ ଉପରୁ ଉଠିଥିବା ରେଖ ଦେଉଳର ମଧ୍ୟଭାଗକୁ 'ଗଣ୍ଡି' କୁହାଯାଏ । ଏଥିରେ ପୂର୍ବରୁ ସୂଚନା ଦିଆ ଯାଇଥିବା ରାହା ଓ ରଥକ ଅର୍ଥାତ୍ ପାଗଗୁଡ଼ିକ ଅଧିକ ସ୍ପଷ୍ଟ । ଏହି ରଥକ ଗୁଡ଼ିକ କ୍ରମଶଃ ବକ୍ରହୋଇ ଉପରକୁ ଉଠି, ନିର୍ଦ୍ଦିଷ୍ଟ ସ୍ଥାନରେ ଏକ ସମତଳ ସୃଷ୍ଟି କରିଥାଏ । ଗଣ୍ଡି ଉପରର ଏହି ସମତଳକୁ 'ଘୋଡ଼ାଚକଡ଼ା' କୁହାଯାଏ । ଅର୍ଥାତ୍ ଏହା ଗଣ୍ଡିର ଉପର ଅଂଶକୁ ଘୋଡ଼ାଇ ରଖୁଥିବା ଚକ୍ରାକାର ସ୍ଥାନ ।

ଏହି ଚକ୍ରାକାର ସ୍ଥାନ ପୂର୍ବରୁ, ଯେଉଁଠାରେ ରଥକଗୁଡ଼ିକ ସମ୍ପୂର୍ଣ୍ଣ ବକ୍ର ହୋଇଥାଏ, ତାହା 'ବିଷମ'ନାମରେ ପରିଚିତ । କେତେକ ଦେଉଳର ରଥକଗୁଡ଼ିକରେ ନିର୍ଦ୍ଦିଷ୍ଟ ପ୍ରକାର ନକ୍‌ସା ପୁନଃ, ପୁନଃ ଖୋଦିତ ହୋଇ ଛାଇ-ଆଲୁଅର ଖେଳ ସୃଷ୍ଟି କରିବା ଦ୍ୱାରା ଅଧିକ ଆକର୍ଷଣୀୟ ଦେଖାଯାଏ । ଏହା ବ୍ୟତୀତ ଅନ୍ୟ କେତେକ କାରୁକଳା ବିହୀନ, ନିରାଡ଼ମ୍ବର ମନ୍ଦିର ମଧ ରହିଛି । ଗଣ୍ଡିର ଚାରିପାଖରେ ଥିବା ରାହାପାଗ ଉପରେ 'ଭୋ' ବା 'ବଜ୍ରମସ୍ତକ' ନାମକ ଆକର୍ଷଣୀୟ ମଣ୍ଡନକୃତି କିମ୍ବା କେତେକ ସ୍ଥଳେ ଅଙ୍ଗଶିଖରର ଏକ ରଚନା ଦେଖିବାକୁ ମିଳେ । କେତେକ ଦେଉଳ ଗଣ୍ଡିର ପ୍ରତ୍ୟେକ ପାଖରେ ଅଙ୍ଗଶିଖରମାନ ଯୋଗ କରାଯାଇ ଭିନ୍ନ ଏକ ଆକର୍ଷଣୀୟ ଶୈଳୀ ସୃଷ୍ଟି କରାଯାଇଥିବା ଦେଖାଯାଏ । ରାହାପାଗ ଉପର ବଜ୍ରମସ୍ତକର କିଞ୍ଚିତ ଉର୍ଦ୍ଧ୍ୱରେ ଅର୍ଥାତ୍ ଗଣ୍ଡିର ମଧଭାଗରେ 'ଉଦ୍ୟତ ସିଂହ' ବା 'ଛିଡ଼ାଉଡ଼ା' ସିଂହ ମୂର୍ତ୍ତିମାନ, ଗଣ୍ଡି ଦେହରେ ପକ୍ଷ ସଦୃଶ ଯୋଗ ହୋଇଥିବା ମଧ୍ୟଯୁଗୀୟ ମନ୍ଦିରମାନଙ୍କର ଏକ ସାଧାରଣ ଶୈଳୀ । କେତେକ ଦେଉଳର ଅନୁରାହା, ଅନର୍ଥ ଇତ୍ୟାଦି ପାଗମାନଙ୍କରେ ବିଭିନ୍ନ ପ୍ରକାର ନକ୍‌ସା ଓ ମୂର୍ତ୍ତି ଖୋଦିତ ହୋଇଥାଏ ।




ବେକି, ଅଁଳା, ତ୍ରିପଟଧାର ଓ ଖପୁରି

ବିସମ ଓ ଘୋଡ଼ାଚକଡ଼ାର ଉର୍ଦ୍ଧ୍ୱ ନକ୍‌ସା

## କନିକପାଗ (ବରଣ୍ଡି, ଭୂମି, ଭୂମିଅଁଳା):

ରେଖଦେଉଳ ଗଣ୍ଡିର ଅନ୍ୟ ଏକ ମୁଖ୍ୟ ଅଙ୍ଗ ହେଉଛି ଚାରି କୋଣରେ ଥିବା, ଚାରି 'କନିକପାଗ' । ଏଗୁଡ଼ିକରେ ବରଣ୍ଡି ନାମକ ଏକ କିମ୍ବା ଦୁଇ ପ୍ରକାର ଛୋଟ ଧାର ନିର୍ମାଣ ପ୍ରସ୍ଥ ଭାବେ, ଏକାଧିକବାର ଖୋଦିତ ହୋଇଥାଏ । ପ୍ରତ୍ୟେକ ତିନି, ଚାରି କିମ୍ବା ପାଞ୍ଚ ବରଣ୍ଡିକୁ ଏକତ୍ର 'ଭୂମି' କୁହାଯାଏ । ଆମଳକଶିଳାର ଏକ ଭାଗ ସଦୃଶ, ଅର୍ଦ୍ଧଚକ୍ରାକାର ଯେଉଁ ନିର୍ମାଣ ଭୂମି ମାନଙ୍କ ମଧ୍ୟରେ ରହି ସେଗୁଡ଼ିକୁ ଭାଗ, ଭାଗ କରିଥାଏ, ତାହା 'ଭୂମିଅଁଳା' ନାମରେ ପରିଚିତ । ପ୍ରତ୍ୟେକ ଦେଉଳର କନିକପାଗରେ ପାଞ୍ଚ କିମ୍ବା ସାତ ଭୂମି ସହିତ ଭୂମିଅଁଳା ଦେଖାଯାଏ । କେତେକ ଦେଉଳର ଗଣ୍ଡିରେ ରାହାପାଗ ବ୍ୟତୀତ ଅନ୍ୟ ପାଗମାନଙ୍କରେ ମଧ 'ଭୂମିଅଁଳା' ସଦୃଶ ନିର୍ମାଣର ପ୍ରୟୋଗ ଦୃଷ୍ଟିଗୋଚର ହୁଏ ।



କନିକପାଗ ବରଣ୍ଡି, ଭୂମି ଓ ଭୂମିଅଇଁଳା

ଭୁବନେଶ୍ୱରର ଏକ ପ୍ରାଚୀନ ନିର୍ମାଣ, ଗୌରୀ-ଶଙ୍କର ଓ ଗଣେଶ ମନ୍ଦିରର କନିକପାଗରେ ତିନି ଭୂମି ଓ ତିନି ଭୂମିଅଁଳା ରହିଛି । ଏହାର କିଞ୍ଚିତ୍ ପରବର୍ତ୍ତୀ ସମୟର ପରଶୁରାମେଶ୍ୱର ମନ୍ଦିରର କନିକପାଗରେ ଚାରି ବରଣ୍ଡିର ଭୂମି ଉପରେ ଭୂମିଅଁଳାମାନ ଦେଖାଯାଏ । ଏଠାରେ ଉପର ଦୁଇ ବରଣ୍ଡି ଅପେକ୍ଷାକୃତ ପତଳା ଓ ଚୈତ୍ୟପଦକ ଦ୍ୱାରା ସଂଯୋଗ ହୋଇଥିବା ବେଳେ ପ୍ରତ୍ୟେକ କନିକପାଗରେ ପାଞ୍ଚଭୂମି ଓ ସେହି ସଂଖ୍ୟକ ଭୂମିଅଁଳା ରହିଛି । ଖାକରା ଶୈଳୀର ବୋଇତାଳ ଦେଉଳ କନିକପାଗଗୁଡ଼ିକରେ ତିନି ବରଣ୍ଡି ବିଶିଷ୍ଟ ଦୁଇ ଭୂମି ସହିତ ଦୁଇ ଭୂମିଅଁଳା ଖୋଦିତ ହୋଇଛି । ବିକଶିତ ମୁକ୍ତେଶ୍ୱର ମନ୍ଦିରର କନିକପାଗ ମଧ ଏହି ପ୍ରକାର । ଏକାମ୍ରେଶ୍ୱର ମନ୍ଦିରର ଗଣ୍ଡିର ନିମ୍ନଭାଗ ଅଙ୍ଗଶିଖର ଦ୍ୱାରା ଆବୃତ ହୋଇ ଥିବାରୁ ଏହାର କନିକରେ ପାଞ୍ଚ ବରଣ୍ଡି ବିଶିଷ୍ଟ ଚାରି ଭୂମି ଓ ପାଞ୍ଚ ଭୂମିଅଁଳା ଦୃଶ୍ୟ ହୁଏ । ସେହିପରି ଅଙ୍ଗଶିଖର ଯୁକ୍ତ ରାଜାରାଣୀ ମନ୍ଦିରର କନିକପାଗରେ ସାତ ଭୂମି ଓ ସେହି ସଂଖ୍ୟକ ଭୂମିଅଁଳା ରହିଛି । ବୃହତ ଲିଙ୍ଗରାଜ ମନ୍ଦିରର କନିକଗୁଡ଼ିକ ଅନୁରାହା ସହିତ ସଂଯୋଗ ହୋଇଥିବା ବେଳେ ପ୍ରତ୍ୟେକ ଭୂମିରେ ପାଞ୍ଚ ବରଣ୍ଡି ଥିବା ଦଶ ଭୂମି ଓ ଦଶ ଭୂମିଅଁଳା ରହିଛି । ମଧମ ଓ ବୃହଦାକାର ମନ୍ଦିରମାନଙ୍କ କନିକପାଗର ବରଣ୍ଡିଗୁଡ଼ିକ ଅଧିକାଂଶ ସ୍ଥଳେ ବିଭିନ୍ନ ନକ୍ସା ଦ୍ୱାରା ମଣ୍ଡିତ ହୋଇଥିବା ଦେଖାଯାଏ ।

## ବେକି, ଅଁଳା, ତ୍ରିପଟଧାର, ଖପୁରି :

ଦେଉଳର ଗଣ୍ଡି ଉପରେ ଏହା ମସ୍ତକର ପ୍ରଥମ ବା ମୂଳଭାଗ, ଯାହାକି ଚକ୍ରାକାର ବେଦୀ ସଦୃଶ ନିର୍ମାଣ । ଏହା ଉପରେ 'ଆମଳକଶିଳା' ବା 'ଅଁଳାଶ୍ରୀ' ସ୍ଥାପିତ ହୋଇଥାଏ । ଏହି ଆମଳକଶିଳାର ଚତୁଃପାର୍ଶ୍ୱ ଅଁଳା କୋଳି କିମ୍ବା ଦଧିମନ୍ଥନଦଣ୍ଡର ଧାର ପରି ଦନ୍ତୁରିତ । ଶିଳ୍ପୀମାନେ ଏହି ଦନ୍ତୁରିତ ନିର୍ମାଣକୁ 'କରମଙ୍କିଆ' କହିଥାଆନ୍ତି । ବେକିର ଉପର ଓ ଆମଳକଶିଳାର ତଳେ ଚକ୍ରାକାର ଭାବେ ଘୂରିଥିବା

ତିନି ଧାରର ପତଳା ମଣ୍ଡନକୃତିକୁ 'ତ୍ରିପଟଧାର' କୁହାଯାଏ । ଆମଳକଶିଳା ଉପରେ ଥିବା କିଛିତ କମ୍ ବ୍ୟାସର, ଓଲଟା ଥାଳି ସଦୃଶ ନିର୍ମାଣ 'ଖପୁରି' ନାମରେ ପରିଚିତ । ମନୁଷ୍ୟ ମସ୍ତକକୁ ଘୋଡାଇ ରଖୁଥିବା ଖପୁରି ସଦୃଶ, ଏହା ଦେଉଳ ମସ୍ତକକୁ ଘୋଡ଼ାଇ ରଖୁଥିବାରୁ ଏହାର ନାମ 'ଖପୁରି' । ଏହା ଉପରେ ଦେଉଳର ସର୍ବୋଚ୍ଚ ଭାଗ, 'କଳସ' ସ୍ଥାନିତ ହୋଇଥାଏ ।



ପ୍ରାଚୀନ ଓ ବିକଶିତ ମନ୍ଦିରର ମସ୍ତକଭାଗ

ଅଧିକାଂଶ ପ୍ରାଚୀନ ମନ୍ଦିରମାନଙ୍କ ଆମଳକଶିଳା ଓ ଖପୁରି ଅପେକ୍ଷାକୃତ ପତଳା । ଏହିପରି ନିର୍ମାଣ ଶତ୍ରୁଘ୍ନେଶ୍ୱର, ସ୍ୱର୍ଣ୍ଣଜଳେଶ୍ୱର, ପରଶୁରାମେଶ୍ୱର ଓ ଶିଶିରେଶ୍ୱର ଭଳି ମନ୍ଦିରମାନଙ୍କ ମସ୍ତକରେ ଦେଖିବାକୁ ମିଳେ । ଏହାର ପରବର୍ତ୍ତୀ ସମୟରେ ନିର୍ମିତ ମନ୍ଦିରମାନଙ୍କ ଆମଳକଶିଳା ଓ ଖପୁରିର ଘନତ୍ୱ ସାମାନ୍ୟ ବୃଦ୍ଧି ପାଇଥିବା ଲକ୍ଷ୍ୟ କରାଯାଉଥିବା ବେଳେ ମଧ୍ୟଯୁଗର ଲିଙ୍ଗରାଜ, ବ୍ରହ୍ମେଶ୍ୱର ଇତ୍ୟାଦି ମନ୍ଦିରର ଏହି ନିର୍ମାଣ ଗୁଡ଼ିକ ବେଶ୍ ବଳିଷ୍ଠ ଓ ସନ୍ତୁଳିତ । ପୁରୀର ଶ୍ରୀଜଗନ୍ନାଥ ମନ୍ଦିରର ଘନ ଆମଳକ ଶିଳା ଉପରେ ଥିବା ସୁଉଚ୍ଚ ଖପୁରି ଉପରେ ରାମାନନ୍ଦି ତିଳକର ଚିତ୍ର ଅଙ୍କିତ ହୋଇଥିବା ଦେଖାଯାଏ ।

**କଳସ:**

ଦେଉଳର ସର୍ବୋଚ୍ଚ ଭାଗ କଳସ । ଏହା ପଥରରେ ନିର୍ମିତ ହୋଇଥିଲେହେଁ, ମୃଣ୍ମୟ କଳସର ଅନୁକରଣ ମାତ୍ର । ବିଭିନ୍ନ ସମୟର ମନ୍ଦିର ଉପରେ ବିଭିନ୍ନ ଆକାର ପ୍ରକାରର କଳସ ଦେଖା ଯାଉଥିବା ବେଳେ ଏଗୁଡ଼ିକ ନିର୍ଦ୍ଦିଷ୍ଟ ମୌଳିକତା ଉପରେ ନିର୍ମିତ । କଳସର ସର୍ବାଙ୍ଗକୁ ମୁଖ୍ୟତଃ ଆଠ ଭାଗରେ ବିଭକ୍ତ କରାଯାଇଥାଏ । ଏଗୁଡ଼ିକ ହେଲା:- ୧.କଳସ ପାଦ, ଯାହା ଖୁରା ସଦୃଶ ନିର୍ମାଣ, କଳସର ପଦଭାଗ । ୨.କଳସ ଡ଼ୋରି, ଏହା ପାଦଭାଗ ଉପରେ ଥିବା ବଳାରସି ସଦୃଶ ଏକ ପଟି । ୩. କଳସ ହାଣ୍ଡି, ଏହା କଳସର ମୁଖ୍ୟ ଅଂଶ, ଗର୍ଭ ବା ମଧଭାଗ, ଗୋଲ କିମ୍ବା ଅଣ୍ଡାକୃତି ନିର୍ମାଣ । ୪. କଳସ ପଟି, ଏହା ହାଣ୍ଡିର ମଧଭାଗରେ ଥିବା ବନ୍ଧନୀ ସଦୃଶ ଏକ ମଣ୍ଡନକୃତି, ବିଭିନ୍ନ ଶୈଳୀରେ ଖୋଦିତ ହୋଇଥାଏ । ୫. କଳସ ବେକି: ଏହା ହାଣ୍ଡି ଉପର ସଙ୍କୀର୍ଣ୍ଣ ବେକ ସଦୃଶ ଅଂଶ । ୬. ତ୍ରିପଟଧାର; ବେକି ଉପରେ ସରୁ ତିନିଧାରର ପଟି ମଣ୍ଡନକୃତି । ୭. କଳସ ଖପୁରି ଏହା କଳସ ଉପରେ ଘୋଡ଼ଣି ସଦୃଶ ନିର୍ମାଣ । ୮. କଳସ ଘଡ଼ି, ଏହା କଳସ ଉପରେ ପୁନଶ୍ଚ ଏକ ସରଳ, ଛୋଟ କଳସ ବା ଘଡ଼ି । ଏହି ଘଡ଼ି ଉପରେ ଆୟୁଧ ବା ପତାକା ସଂଯୋଗ ନିମନ୍ତେ ଛିଦ୍ର ଥାଏ ।



ଏକ ଅଷ୍ଟାଙ୍ଗକଳସର ବିଭିନ୍ନ ଭାଗ

ପ୍ରାଚୀନ ମନ୍ଦିରମାନଙ୍କ ଖପୁରି ଉପରେ କଳସ ପରିବର୍ତ୍ତେ ଶିବଲିଙ୍ଗ ସଦୃଶ ଏକ ନିର୍ମାଣ ଦେଖାଯାଏ । ଏହାକୁ ଶିଳ୍ପ ପ୍ରକାଶ ବହିରେ 'ଯୂପ' କୁହାଯାଇଥିବା ବେଳେ ଅନ୍ୟ କେତେକ ଶିଳ୍ପପୋଥି ଏବଂ ଶିଳ୍ପୀମାନେ ଏହାକୁ 'ଆକାଶଲିଙ୍ଗ' ଭାବରେ ଚିହ୍ନିତ କରିଥାଆନ୍ତି । ଅନେକ ମନ୍ଦିରରେ ଉପରୋକ୍ତ ପ୍ରକାରେ ସମ୍ପୂର୍ଣ୍ଣ ଅଷ୍ଟାଙ୍ଗ କଳସ ରହିଥିବା ବେଳେ ଅନ୍ୟ କେତେକ ମନ୍ଦିରର କଳସ ଡୋରି ଓ କଳସ ପଟି ବିହୀନ ଅର୍ଥାତ୍ ସରଳ କଳସ ଦେଖାଯାଏ । ମଧ୍ୟଯୁଗୀୟ ଓ ପରବର୍ତ୍ତୀ ସମୟର କେତେକ କଳସ ମୁଖରୁ ଚାରି ପାଖକୁ ଚମ୍ପକ ପତ୍ରର ମଣ୍ଡନକୃତି ଲମ୍ବିପଡ଼ିଥିବା ଦେଖାଯାଏ । ଅନ୍ୟ କେତେକ ସ୍ଥଳେ ଏହି ପତ୍ର ଉର୍ଦ୍ଧ୍ୱମୁଖୀ ହୋଇଥିବାରୁ ପକ୍ଷ ସଦୃଶ ମନେ ହୁଏ । କେତେକ କଳସର ହାଣ୍ଡିରେ ବନ୍ଧାଥିବା ପଟି ସହିତ ବିଭିନ୍ନ ପ୍ରକାରର ଝରା, ଝୁମ୍ପା କିମ୍ବା ଛୋଟ ଘଣ୍ଟିର ମଣ୍ଡନକୃତି ଖୋଦିତ ହୋଇଥାଏ । ଅଧିକାଂଶ ମନ୍ଦିରର କଳସ ଗୁଡ଼ିକ ଗୋଟିଏ ପଥରରେ ନିର୍ମିତ ହୋଇଥିବା ବେଳେ ବୃହତ୍ତ ଲିଙ୍ଗରାଜ ମନ୍ଦିରର ମୁଖ୍ୟ ଦେଉଳ ଓ ଜଗମୋହନ ଉପରେ ଥିବା କଳସଗୁଡ଼ିକ ଏକାଧିକ ଇଟା ସଦୃଶ ପଥରଖଣ୍ଡମାନଙ୍କୁ ନେଇ ନିର୍ମିତ । ପାଇକମାଳର ନୃସିଂହନାଥ ମନ୍ଦିର ଆକାରରେ ଛୋଟ ହେଲେହେଁ ଏହାର କଳସଟି ଏକାଧିକ ପଥର ଯୋଡ଼େଇରେ ନିର୍ମିତ ।

**ଆୟୁଧ:**

କଳସ ଉପରେ ତମ୍ବା କିମ୍ବା ପିତଳ ଧାତୁରେ ନିର୍ମିତ ଆୟୁଧ ସ୍ଥାନିତ ହୋଇଥାଏ । ଏହା ମନ୍ଦିର ମଧ୍ୟରେ ସ୍ଥାପିତ ଦେବତାଙ୍କର ମୁଖ୍ୟ ଆୟୁଧ ବା ଅସ୍ତ୍ର ଅଟେ । ଶିବ ମନ୍ଦିର ଉପରେ ଶିବଙ୍କ ତ୍ରିଶୂଳ, ବିଷ୍ଣୁ ମନ୍ଦିରଗୁଡ଼ିକରେ ନୀଳଚକ୍ର ଦେଖା ଯାଉଥିବା ବେଳେ ଭୁବନେଶ୍ୱରର ଲିଙ୍ଗରାଜଙ୍କୁ ହରିହର ଭାବେ ପୂଜା କରାଯାଉ ଥିବାରୁ ଏହାଙ୍କ ଆୟୁଧ ଶିବଙ୍କ ପିନାକ ଧନୁ ଓ ନୀଳଚକ୍ରକୁ ନେଇ ରଚିତ । ଦେବୀ ମନ୍ଦିରମାନଙ୍କରେ ଅଧିକାଂଶ ସ୍ଥଳେ ଶିବଙ୍କ ତ୍ରିଶୂଳ ଦେଖାଯାଏ । ଏହି ଆୟୁଧ ସହିତ ଧ୍ୱଜା ବା ପତାକା ବନ୍ଧା ଯାଇଥାଏ । ପରବର୍ତ୍ତୀ ସମୟର କେତେକ ବିଷ୍ଣୁ ମନ୍ଦିର ଚୂଡ଼ାରେ କମନୀୟ ଶୈଳୀରେ ନିର୍ମିତ ଓଜନଦାର ଧାତବ ନୀଳଚକ୍ର ଦେଖାଯାଏ । କେତେକ ମନ୍ଦିରର କଳସ ଉପରେ ପଥର ନିର୍ମିତ ନୀଳଚକ୍ର ସ୍ଥାନିତ ହୋଇଥିବା ସୂଚନା ମିଳେ । କିନ୍ତୁ ଏଗୁଡ଼ିକ ମସ୍ତକ ଉପରେ ସ୍ଥାୟୀ ଭାବେ ରହିନପାରି ତଳକୁ ଖସିପଡ଼ି ନଷ୍ଟ ହୋଇ ପଡ଼ିଥିବା ଦେଖାଯାଏ । ବଉଦ ନିକଟ ଗନ୍ଧରାଡ଼ିର ନୀଳମାଧବଙ୍କ ମନ୍ଦିର ଚୂଡ଼ାରେ,

କଟକ ଜିଲ୍ଲା ଗଣେଶ୍ୱରପୁରର ବିଷ୍ଣୁମନ୍ଦିର ଉପରେ ଏବଂ ଭୁବନେଶ୍ୱରର ଅନନ୍ତ-ବାସୁଦେବ ମନ୍ଦିର ଜଗମୋହନର କଳସ ଉପରେ ପଥର ନିର୍ମିତ ନୀଳଚକ୍ର ଅଦ୍ୟାବଧି ଦେଖିବାକୁ ମିଳେ ।

ପୁରୀର ଶ୍ରୀଜଗନ୍ନାଥ ମନ୍ଦିରର ନୀଳଚକ୍ରଟି ବିଶାଳ ଅଟେ । ଏହାର ଦୁଇଟି ଚକ୍ର ମଧ୍ୟରୁ ଭିତର ଚକ୍ରର ପରିଧି ପ୍ରାୟ ୩.୦୦ ମିଟରେ ଓ ବାହାରଚକ୍ରର ପରିଧି ପ୍ରାୟ ୧୧.୦୦ ମିଟର ଅଟେ । ଭିତରଚକ୍ର ସହିତ ବାହାରଚକ୍ରକୁ ସଂଯୋଗ କରୁଥିବା ୮ଗୋଟି ଅର ମଧ୍ୟରୁ ପ୍ରତ୍ୟେକ ଅରର ଲମ୍ବ ପ୍ରାୟ ୦.୫୫ ମିଟର । ଚକ୍ରର ଦୁଇ ପାର୍ଶ୍ୱରୁ ପ୍ରତ୍ୟେକ ପାର୍ଶ୍ୱରେ ୪ଟି କରି ଅର୍ଦ୍ଧ ଚନ୍ଦ୍ରାକାର ନକ୍ସା ରହିଥିବା ବେଳେ ଊର୍ଦ୍ଧ୍ୱରେ ପଦ୍ମକଢ଼ ସଦୃଶ ନକ୍ସା ଦେଖାଯାଏ । ଅଷ୍ଟଧାତୁରେ ନିର୍ମିତ ଏହି ନୀଳଚକ୍ରର ମୋଟା ପ୍ରାୟ ୫.୦୦ ସେଣ୍ଟିମିଟରେ ଓ ଓଜନ ପ୍ରାୟ ୧୫୦.୦୦ କିଲୋଗ୍ରାମ୍ ଅଟେ ।



ତ୍ରିଶୂଳ



ନୀଳଚକ୍ର




ରେଖ ଦେଉଳର ବିଭିନ୍ନ ଅଙ୍ଗ

# ପୀଢ଼ଦେଉଳ

ଦେଉଳ ନିର୍ମାଣର ପ୍ରାରମ୍ଭ ବା ପ୍ରଥମ ପର୍ଯ୍ୟାୟରେ ଛୋଟ ଛୋଟ ପୀଢ଼ ଦେଉଳ ନିର୍ମିତ ହୋଇଥିବା ଅନୁମାନ କରାଯାଏ । କାରଣ ଏଗୁଡ଼ିକ ପାରମ୍ପରିକ ଚାଳ ଘରର ଅନୁକରଣରେ ନିର୍ମିତ । ସମୟାନୁକ୍ରମେ ପରିବର୍ତ୍ତନ ଘଟି ଏହାର ଛାତ ଗଡ଼ାଣିଆଁ ପାହାଚ ବା ପୀଢ଼ ସଦୃଶ ଦେଖାଯିବାରୁ ଏହାକୁ ପୀଢ଼ ଦେଉଳ କୁହାଗଲା । ବୃହଦାକାର ରେଖ ଦେଉଳ ସହିତ ପୀଢ଼ ଦେଉଳଗୁଡ଼ିକ ସାଧାରଣତଃ ଜଗମୋହନ ବା ଭଦ୍ରମନ୍ଦିର ଭାବେ ରହିଥାଏ । କେତେକ ଶିଳ୍ପଶାସ୍ତ୍ରରେ ମୁଖ୍ୟ ରେଖ ଦେଉଳକୁ 'ବର' ଓ ଜଗମୋହନ ଭାବେ ନିର୍ମିତ, ଅପେକ୍ଷାକୃତ କମ ଉଚ୍ଚତା ବିଶିଷ୍ଟ ପୀଢ଼ ଦେଉଳକୁ 'ବଧୂ' ଆଖ୍ୟା ଦିଆ ଯାଇଛି । ଦେଉଳ ଓ ଜଗମୋହନ ସହିତ ପରବର୍ତ୍ତୀ ସମୟରେ ଯୋଗ କରାଯାଇଥିବା ନାଟ ମନ୍ଦିର ଓ ଭୋଗ ମଣ୍ଡପ ନିମନ୍ତେ ମଧ୍ୟ ବିଭିନ୍ନ ଶୈଳୀର ପୀଢ଼ ଦେଉଳକୁ ହିଁ ଗୁରୁତ୍ୱ ଦିଆଯାଇଛି । କେତେକ ସ୍ଥଳେ ମୁଖ୍ୟ ଦେଉଳ ମଧ୍ୟ ପୀଢ଼ ଶୈଳୀର ଦେଖାଯାଏ । ରେଖ ଦେଉଳର ରଥକ ବା ପାଗଗୁଡ଼ିକ ବାଢ଼ ଓ ଗଣ୍ଡି ଉଭୟକୁ ପ୍ରଭାବିତ କରୁଥିବା ବେଳେ ପୀଢ଼ଦେଉଳରେ ପାଗଗୁଡ଼ିକର ପ୍ରଭାବ ଗୁରୁତ୍ୱପୂର୍ଣ୍ଣ ମନେହୁଏ ନାହିଁ । ବିଭିନ୍ନ ଆକାର ପ୍ରକାରର ପୀଢ଼ଦେଉଳ ଦେଖା ଯାଉଥିବା ବେଳେ ପାରମ୍ପରିକ ମନ୍ଦିର ଶିଳ୍ପୀମାନେ ଏଗୁଡ଼ିକୁ ମୁଖ୍ୟତଃ ପାଞ୍ଚ ଶ୍ରେଣୀରେ ବିଭକ୍ତ କରିଥାଆନ୍ତି । ସେଗୁଡ଼ିକ ହେଲା : ଦୁଇଚାଳିଆ, ନହଚାଳିଆ, କାଠଚାଳିଆ, ଘଣ୍ଟଶ୍ରୀମୋହନ ଓ ନଡୁମୋହନ ।

### ଦୁଇଚାଳିଆ ପୀଢ଼ ଦେଉଳ:

ପ୍ରାଚୀନ ତ୍ରିରଥ ଶୈଳୀର ରେଖଦେଉଳ ସହିତ ଅନେକ ସ୍ଥାନରେ ଦୁଇଚାଳିଆ, ଆୟତାକାର ଜଗମୋହନ ଦେଖାଯାଏ । ଏହି ପ୍ରକାର ନିର୍ମାଣର ଉପରେ ଗୋଟିଏ ଚାଳ ଓ ତାର କିଞ୍ଚିତ ତଳକୁ, ତିନି ପାଖରେ ଘୁରିଥିବା ଅନ୍ୟ ଏକ ଗଡ଼ାଣିଆ ଚାଳ ରହିଥାଏ । ଏହି ଦୁଇ ଚାଳ କଟା ଯାଇଥିବା ଭଳି ମୁଖ୍ୟ ଦେଉଳ ସହିତ ଯୋଗ ହୋଇଥାଏ । ଏଠାରେ ସମତଳ ଦେଖାଯାଉଥିବା, କିଞ୍ଚିତ ଗଡ଼ାଣିଆ ଉପର



ଦୁଇଚାଳିଆ ପୀଢ଼ଦେଉଳ



ଦୁଇ ଚାଳର ନିର୍ମାଣ ଶୈଳୀ

ଚାଳରେ କଳସ କିମ୍ବା ଧ୍ୱଜା ନଥାଏ । ଏହି ନିର୍ମାଣ ଗୁଡ଼ିକରେ ଛାତକୁ ଧରି ରଖିବା ନିମନ୍ତେ କୋଠରୀ ମଧ୍ୟରେ କେତେକ ଖମ୍ବର ବ୍ୟବସ୍ଥା ଥାଏ । ଦୁଇ ଛାତର ବ୍ୟବଧାନ ବା ମଧ୍ୟଭାଗରେ ଦେଖା ଯାଉଥିବା ଚତୁଷୋଣ ଫାଙ୍କଗୁଡ଼ିକ ଦେଇ କୋଠରୀ ମଧ୍ୟକୁ ବାୟୁ ଓ ଆଲୋକ ପ୍ରବେଶ କରେ । ଭୁବନେଶ୍ୱରର ପରଶୁରାମେଶ୍ୱର ତଥା ମାର୍କଣ୍ଡେଶ୍ୱର ମନ୍ଦିରର ଜଗମୋହନଗୁଡ଼ିକ ଏହି ଶୈଳୀର ଅଟେ । ଏହାର ଅଳ୍ପକାଳ ପରେ ନିର୍ମାଣ କୌଶଳର କିଛିଟା ବିକାଶ ଘଟିବା ଦ୍ୱାରା ଏହି ପ୍ରକାର ଦେଉଳ ଭିତରୁ ଖମ୍ବଗୁଡ଼ିକ ସମ୍ପୂର୍ଣ୍ଣ ଉଠାଇ ଦିଆ ଯାଇଥିବା ଲକ୍ଷ କରାଯାଏ । ଭୁବନେଶ୍ୱରର ବୋଇତାଳ ଦେଉଳ ଓ ଶିଶିରେଶ୍ୱର ମନ୍ଦିର ସହିତ ଥିବା ଜଗମୋହନ ଗୁଡ଼ିକ ଏହାର ଉଦାହରଣ । ତେବେ ପରବର୍ତ୍ତୀ ସମୟରେ ନିର୍ମିତ କେତେକ ବିକଶିତ ଦୁଇଚାଳିଆ ପୀଢ଼ଦେଉଳ ପ୍ରାଚୀନଦୀ କୂଳ ଚଉରାଶି ଗ୍ରାମର ବାରାହୀ ମନ୍ଦିର, ମହାନଦୀ ଟାପୁରେ ଥିବା ସିଂହନାଥ ମନ୍ଦିର ଓ ବଉଦ ନିକଟସ୍ଥ ଗନ୍ଧରାଡ଼ି ଗ୍ରାମର ନୀଳକଣ୍ଠେଶ୍ୱର ଓ ନୀଳମାଧବ ମନ୍ଦିରର ଜଗମୋହନ ଭାବେ ଦେଖିବାକୁ ମିଳେ ।

**ନହଚାଳିଆ ପୀଢ଼ ଦେଉଳ:**

ମଧ୍ୟଯୁଗର ଆରମ୍ଭ, ଅର୍ଥାତ୍ ଖ୍ରୀ: ୧୦ମ-୧୧ଶ ଶତାବ୍ଦୀ ବେଳକୁ ଜଗମୋହନ ଭାବେ ନିର୍ମିତ ପୀଢ଼ ଦେଉଳ ଗୁଡ଼ିକରେ ଏକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଖାଗଲା । ଏଥିରେ ପୂର୍ବୋକ୍ତ ଆୟତାକାର ଗର୍ଭଗୃହର ଲମ୍ବ କେତେକାଂଶରେ ହ୍ରାସ କରାଯାଇ କୋଠରୀକୁ କିଞ୍ଚିତ ବର୍ଗାକାର କରାଯିବା ସଙ୍ଗେ ସଙ୍ଗେ ଏହାର ଛାତରେ ଚତୁଃପାର୍ଶ୍ୱକୁ ଏକାଧିକ ଗଡ଼ାଣିଆ ପାହାଚ ବା ପୀଢ଼ର ପରିକଳ୍ପନା କରାଗଲା । ଏଗୁଡ଼ିକ ମୁଖ୍ୟତଃ ନୁଆଣିଆ ଚାଳଘର ଛାତର ଅନୁକରଣରେ ନିର୍ମିତ ହୋଇଥିବାରୁ, 'ନହଚାଳିଆ' ପୀଢ଼ ଦେଉଳ ନାମରେ ପରିଚିତ । ଏହି ପ୍ରକାର ଦେଉଳଗୁଡ଼ିକ ଉପର ଆମଳକଶିଳା ବିହୀନ, କେବଳ କଳସ ଦେଖାଯାଏ ।



ନହଚାଳିଆ ପୀଢ଼ଦେଉଳ

ଭୁବନେଶ୍ୱରରେ ମୁକ୍ତେଶ୍ୱର ମନ୍ଦିର, ରାଜାରାଣୀ ଓ ମେଘେଶ୍ୱର ମନ୍ଦିରର ଜଗମୋହନ ଗୁଡ଼ିକ ନହଚାଳିଆ ପୀଢ଼ ଶୈଳୀର ଅଟେ । ମୁକ୍ତେଶ୍ୱର ଜଗମୋହନର ଛାତ ଅର୍ଥାତ୍ ଗଣ୍ଡିରେ ଥିବା ମୋଟ ଏଗାରଟି ପୀଢ଼ ମଧ୍ୟରୁ, ତଳ ଭାଗର ଆଠଗୋଟି ପୀଢ଼ ମଧ୍ୟରେ 'କାଣ୍ଡି' ବା ବ୍ୟବଧାନ ରହିଥିବା ବେଳେ ଉପର ଚାରି ପୀଢ଼ରେ କୌଣସି ବ୍ୟବଧାନ ନଥିବା ଯୋଗୁଁ ସେଗୁଡ଼ିକ ଗଡ଼ାଣିଆ ପାହାଚ ସଦୃଶ ଦେଖାଯାଏ । ରାଜାରାଣୀ ମନ୍ଦିରର ଜଗମୋହନ ଛାତ ତଳଭାଗର ନ'ଅଟି ପୀଢ଼ରେ ଗଭୀର କାଣ୍ଡି ଥିବାବେଳେ ଉପରର ପାଞ୍ଚ ପୀଢ଼ ମୁକ୍ତେଶ୍ୱର ପୀଢ଼ ଭଳି କାଣ୍ଡି ବିହୀନ । କାଣ୍ଡିର ଉଚ୍ଚତା ଯୋଗୁଁ ଏଠାରେ ଗଣ୍ଡିର ଉଚ୍ଚତା ସାମାନ୍ୟ ବୃଦ୍ଧି ପାଇଥିବା ଲକ୍ଷ୍ୟ କରାଯାଏ । ପୁନଶ୍ଚ ଉଚ୍ଚତା ବୃଦ୍ଧି ପାଇଥିବା ମେଘେଶ୍ୱର ମନ୍ଦିରର ଜଗମୋହନର ଛାତରେ ବାର-ତେରଟି ପୀଢ଼ର କାଣ୍ଡିଗୁଡ଼ିକ ପୀଢ଼ଧାର ସହିତ ସଳଖ ଭାବରେ ରହିଛି । ଅର୍ଥାତ୍ ଏଠାରେ କାଣ୍ଡି ଗୁଡ଼ିକ ପୀଢ଼ର ତଳ ଗଭୀରରେ ନାହିଁ ।

## କାଠଚାଳିଆ ପୀଢ଼ଦେଉଳ (ପୀଢ଼, ପଟଳ, କାଣ୍ଡି ଓ ଟାଙ୍କୁ)

ଖ୍ରୀ: ୧୧ଶ-୧୨ଶ ଶତାବ୍ଦୀ ବେଳକୁ ନହଚାଳିଆ ପୀଢ଼ ଶୈଳୀର ବିକାଶ ଘଟି କାଠଚାଳିଆ ପୀଢ଼ ଦେଉଳ ସୃଷ୍ଟି ହେଲା । ଏହାର ଛାତଗୁଡ଼ିକ କାଠ ତିଆରି ବିମାନର ଚାଳ ସଦୃଶ ତୀକ୍ଷ୍ଣ ଅର୍ଥାତ ଗଡ଼ାଣିଆ ଭାବେ ସଳଖ ବା ପିରାମିଡ୍ ସଦୃଶ ହୋଇ ଥିବାରୁ ଏହା 'କାଠଚାଳିଆ' ନାମରେ ପରିଚିତ । ଏହାର ପ୍ରତ୍ୟେକ ଗଡ଼ାଣିଆ ପାହାଚ ସଦୃଶ ନିର୍ମାଣକୁ 'ପୀଢ଼' କୁହା ଯାଉଥିବା ବେଳେ ଏକତ୍ର ଥିବା କେତେକ ପୀଢ଼କୁ 'ପଟଳ' କୁହାଯାଏ । ଦୁଇ ପଟଳକୁ ଅଲଗା କରୁଥିବା ଛୋଟ କାନ୍ଥ ସଦୃଶ ନିର୍ମାଣକୁ 'କାଣ୍ଡି' କୁହାଯାଏ । ପୀଢ଼ ଗୁଡ଼ିକର ସମତା ଭଙ୍ଗ କରିବା ଉଦ୍ଦେଶ୍ୟରେ ପୀଢ଼ ଧାରମାନଙ୍କରେ ଦିଆ ଯାଇଥିବା ତିନି କୋଣିଆ ଛୋଟ ନିର୍ମାଣ ଗୁଡ଼ିକ 'ଟାଙ୍କୁ' ନାମରେ ପରିଚିତ । ତେବେ ଏହି ପୀଢ଼ ଗୁଡ଼ିକର ନିର୍ମାଣ ସର୍ବତ୍ର ସମାନ ନଥାଏ । ଅର୍ଥାତ୍ ବିଭିନ୍ନ ଦେଉଳ ସହିତ ଭିନ୍ନ ଭିନ୍ନ ଆକାରର ପୀଢ଼ ଦେଖାଯାଏ । କାଠ ଚାଳିଆ ପୀଢ଼ ଦେଉଳଗୁଡ଼ିକର ଶୈଳୀ ଅନୁଯାୟୀ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ । ଯଥା: ପୀଢ଼ମୋହନ ଓ ଘଣ୍ଟଶ୍ରୀମୋହନ ।




ପୀଢ଼ ଦେଉଳର କେତେକ ଅଙ୍ଗ

**ଘଣ୍ଟଶ୍ରୀମୋହନ:**

ଏହା କାଠଚାଳିଆ ପୀଢ଼ଦେଉଳର ଏକ ବିକଶିତ ଶୈଳୀ । ଏଠାରେ ଦୁଇ ତିନି ପଟଳ ଉପରେ ବେକି, ଅଳାଁ ପରିବର୍ତ୍ତେ ବେକି ଯୁକ୍ତ ଘଣ୍ଟ ସଦୃଶ ଏକ ନିର୍ମାଣ ଦେଖାଯାଏ । ଘୋଡାଚକଡା ଉପରେ ଥିବା ଏହି ଘଣ୍ଟ ଉପରେ ପୁନଶ୍ଚ ବେକି, ଅଁଳା, କିଞ୍ଚିତ ଉଚ୍ଚତା ବିଶିଷ୍ଟ ଖପୁରି ଉପରେ କଳସ ରହିଥାଏ । ଏହି ଘଣ୍ଟର ଉପରଭାଗ 'ଚମ୍ପକପତ୍ର' ସଦୃଶ ମଣ୍ଡନକୃତି ଦ୍ୱାରା ଆବୃର ହୋଇଥିବା ବେଳେ ଏହାର ମଧ୍ୟଭାଗରେ ଥିବା ଏକ 'ଡୋରି' ବା ଧାର ଘଣ୍ଟକୁ ଦୁଇ ଭାଗ ବା ଦୁଇ ସ୍ତରରେ ବିଭକ୍ତ କରିଥାଏ । ଲିଙ୍ଗରାଜ ମନ୍ଦିର ଜଗମୋହନର ଏହି ଘଣ୍ଟଟି ସୁଉଚ୍ଚ ଓ ସ୍ପଷ୍ଟ ହୋଇ ଥିବା ବେଳେ ବ୍ରହ୍ମେଶ୍ୱର ମନ୍ଦିରରେ ଏହି ନିର୍ମାଣ କିଞ୍ଚିତ ପ୍ରଶସ୍ତ ହୋଇପଡ଼ିବା ଦ୍ୱାରା ଉଚ୍ଚତା ହ୍ରାସ ପାଇଥିବା ଜଣାଯାଏ । ଏହାର ପରବର୍ତ୍ତୀ ସମୟରେ ଲିଙ୍ଗରାଜ ମନ୍ଦିର ପରିସରରେ ଥିବା ପାର୍ବତୀ ମନ୍ଦିରରଜଗମୋହନ, ଅନନ୍ତ ବାସୁଦେବ ମନ୍ଦିରରଜଗମୋହନ ସମେତ ଅନେକ ପୀଢ଼ଦେଉଳର ଏହି ଘଣ୍ଟ ଏକ ଓଲଟା ବେସିନ୍ ବା ଗାଙ୍ଗୁଲା ଆକାରରେ ପରିବର୍ତ୍ତିତ ହେବା ଦ୍ୱାରା, ଘଣ୍ଟର ମୌଳିକ ଆକାର ନଷ୍ଟ ହୋଇଥିବା ଲକ୍ଷ୍ୟ କରାଯାଏ । କୋଣାର୍କ ସୂର୍ଯ୍ୟ ମନ୍ଦିରର ଜଗମୋହନ ଗଣ୍ଡିରେ ଥିବା ତିନି ପଟଳ ଉପର ଏହି ପ୍ରକାର ନିର୍ମାଣରେ ଏହା ସ୍ପଷ୍ଟ । ଏହା ବ୍ୟତୀତ ଅନ୍ୟ କେତେକ କାଠଚାଳିଆ ପୀଢ଼ଦେଉଳ ଉପରେ ଭିନ୍ନ ଭିନ୍ନ ଶୈଳୀର ଘଣ୍ଟ ମଧ୍ୟ ଦେଖାଯାଏ । ସଡ଼ାଂଶର ତ୍ରିଲୋଚନେଶ୍ୱର ମନ୍ଦିରର ଉଭୟ ମୁଖ୍ୟଦେଉଳ ଓ ଜଗମୋହନ କାଠଚାଳିଆ ଘଣ୍ଟଶ୍ରୀଶୈଳୀର ଅଟେ ।



ପୀଢ଼ ଦେଉଳର ଅଙ୍ଗ ପ୍ରତ୍ୟଙ୍ଗ

## ପୀଢ଼ମୋହନ:

ଏହି ପ୍ରକାର ଦେଉଳଗୁଡ଼ିକର ପିରାମିଡ୍ ସଦୃଶ ଛାତର ନିର୍ମାଣ ନିମନ୍ତେ ଏହାର ଗର୍ଭଗୃହ ବା ଭୂନକ୍ସା ବର୍ଗାକାର ହୋଇଥାଏ । ଛାତର କେତେକ ପୀଢ଼ ବା ପଟଳ ଉପରେ ସାଧାରଣ ବେକି, ତ୍ରିପଟଧାର, ଅଁଳା, ଖପୁରି ଓ କଳସ ଦେଖାଯାଏ । ପୀଢ଼ର ସମାପ୍ତି ପରେ ସୃଷ୍ଟି ହୋଇଥିବା ସମତଳ ସ୍ଥାନକୁ ମଧ୍ଯ 'ଘୋଡ଼ାଚକଡା' କୁହାଯାଏ । ଏହା ଉପରେ ଥାଏ-ମସ୍ତକ ଭାଗର ବେକି, ଅଁଳା, ଖପୁରୀ ଓ କଳସ । ଭୁବନେଶ୍ୱରର ଭାସ୍କରେଶ୍ୱର ମନ୍ଦିର ଏହି ପ୍ରକାର ପୀଢ଼ଦେଉଳ ଅଟେ । ତେବେ ମୁକ୍ତେଶ୍ୱର ମନ୍ଦିର ପରିସରରେ ଥିବା ସିଦ୍ଧେଶ୍ୱରଙ୍କ ସୁଉଚ୍ଚ ପୀଢ଼ଦେଉଳଟି ନହଚାଳିଆ ଓ କାଠଚାଳିଆ ପୀଢ଼ଦେଉଳର ଏକ ମଧ୍ୟବର୍ତ୍ତି ଶୈଳୀ ଭଳି ମନେହୁଏ ।

## ନଡୁମୋହନ:

ଏହି ପ୍ରକାର ପୀଢ଼ଦେଉଳର ଶୈଳୀକୁ ନେଇ ମନ୍ଦିର ଶିଳ୍ପୀମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଏ । କେତେକ ପୂର୍ବୋକ୍ତ ନହଚାଳିଆ ପୀଢ଼ଦେଉଳଗୁଡ଼ିକୁ ନଡୁମୋହନ କହୁଥିବା ବେଳେ ଅନ୍ୟ କେତେକ ଚଉଡା, ଗଡାଣିଆ, ଅଳ୍ପ କେତେକ ପୀଢ଼ ଥିବା, ଅନୁଚ୍ଚ ପୀଢ଼ଦେଉଳଗୁଡ଼ିକୁ ନଡୁମୋହନ କହିଥାଆନ୍ତି । ମଧ୍ୟଯୁଗ ଓ ପରବର୍ତ୍ତୀ ସମୟର ବହୁ ମନ୍ଦିରର ନାଟମନ୍ଦିର ଓ ଭୋଗମଣ୍ଡପ ଏହି ଶୈଳୀରେ ନିର୍ମିତ । ଏଗୁଡ଼ିକର ଗର୍ଭଗୃହ ବର୍ଗାକାର କିମ୍ବା ଆୟତାକାର ହୋଇଥିବା ବେଳେ ଶିଖରର ସମତଳ ଛାତ ଉପରେ କେବଳ କଳସ ରହିଥାଏ । କେତେକ ସ୍ଥଳେ ଏହି ଚଉଡା ପୀଢ଼ ଧାରରେ 'ଟାଙ୍କୁ' ରହିଥିବା ବେଳେ ଅନ୍ୟ କେତେକ ଟାଙ୍କୁ ବିହୀନ । ବିଭିନ୍ନ ଆକାର ପ୍ରକାରର ନଡୁମୋହନ ଦେଖା ଯାଉଥିବା ବେଳେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର, ପାର୍ବତୀ ମନ୍ଦିରର ଓ ଅନନ୍ତ-ବାସୁଦେବ ମନ୍ଦିରମାନଙ୍କର ଭୋଗମଣ୍ଡପଗୁଡ଼ିକ ଏହାର ପ୍ରକୃଷ୍ଟ ଉଦାହରଣ ।



ଚଉଡା ପୀଢ଼ଯୁକ୍ତ ନଡୁମୋହନ

# ଦେଉଳ ଓ ଜଗମୋହନ

ମନ୍ଦିରର ଯେଉଁ ଗୃହରେ ମୁଖ୍ୟ ଦେବତା ଅବସ୍ଥାପିତ ହୋଇ ଥାଆନ୍ତି ତାହାକୁ ଦେଉଳ କୁହାଯାଉଥିବା ବେଳେ ଭକ୍ତମାନଙ୍କ ସମାବେଶ ନିମନ୍ତେ ଉଦ୍ଦିଷ୍ଟ ତତ୍‌ସଂଲଗ୍ନ କୋଠରୀକୁ ଜଗମୋହନ କୁହାଯାଏ । ଅନ୍ୟ ଭାବରେ ଏହା 'ଭଦ୍ରମନ୍ଦିର' ନାମରେ ମଧ୍ୟ ପରିଚିତ । କେତେକ ଶିଳ୍ପଶାସ୍ତ୍ରରେ ମୁଖ୍ୟ ଦେଉଳକୁ 'ବର' ଓ ତତ୍‌ସଂଲଗ୍ନ, ଅପେକ୍ଷାକୃତ କମ୍ ଉଚ୍ଚତା ବିଶିଷ୍ଟ ଜଗମୋହନକୁ 'ବଧୂ' ବୋଲି ଉଲ୍ଲେଖ କରାଯାଇଛି । ସାଧାରଣତଃ ମୁଖ୍ୟ ଦେଉଳ ରେଖ ଶୈଳୀର ଏବଂ ଜଗମୋହନ ପୀଢ଼ ଶୈଳୀର ହୋଇଥିବା ବେଳେ ପରବର୍ତ୍ତୀ ସମୟର ଅଳ୍ପ କେତେକ ନିର୍ମାଣରେ ଉଭୟ ପୀଢ଼ ଶୈଳୀ ଦେଖାଯାଏ । ଭୁବନେଶ୍ୱରର କେତେକ ପ୍ରଥମ ପର୍ଯ୍ୟାୟର ଦେଉଳମାନଙ୍କ ସହିତ ଜଗମୋହନ ଦେଖା ଯାଏନାହିଁ । ଏହିପରି କେତେକ ନିର୍ମାଣ ମଧ୍ୟରେ ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ ଓ ସୁବର୍ଣ୍ଣଜଳେଶ୍ୱର ମନ୍ଦିର ଅନ୍ୟତମ । ଏହାକୁ ଭିତ୍ତିକରି କେତେକ ବିଦ୍ୱାନ୍ ମତ ଦିଅନ୍ତି ଯେ ଓଡ଼ିଶାର ପ୍ରଥମ ପର୍ଯ୍ୟାୟ ଦେଉଳ ଗୁଡ଼ିକ ସହିତ ଜଗମୋହନ ନିର୍ମାଣର ପରିକଳ୍ପନା ନଥିଲା । ତେବେ ଏହାର ପରବର୍ତ୍ତୀ ସମୟରେ ନିର୍ମିତ ଭୁବନେଶ୍ୱରର ପରଶୁରାମେଶ୍ୱର, ମାର୍କଣ୍ଡେଶ୍ୱର ଓ ଶିଶିରେଶ୍ୱର ଭଳି କେତେକ ମନ୍ଦିର ସହିତ ଦୁଇଚାଳିଆ, ଆୟତାକାର ଜଗମୋହନମାନ ଦେଖାଯାଏ । ଏହି ସମୟର କେତେକ ଦେଉଳ ସମ୍ମୁଖରେ ଅସ୍ଥାୟୀ ଜଗମୋହନ ବା ମୁଖଶାଳା ଥିବା ସୂଚନା ମିଳେ । ବଜ୍ରକୋଟର ପ୍ରାଚୀନ ଶିବ ମନ୍ଦିର ସମ୍ମୁଖ ଆୟତାକାର ପଥର ଚଟାଣ ଉପରେ ଥିବା କେତେକ ପଥର ଖୁଣ୍ଟ ଉପରେ ନଡ଼ା ଛପର ଚାଳ ରହିଛି । ଅର୍ଥାତ୍ ଏଠାରେ ଦେଉଳ ସହିତ ଜଗମୋହନ ନିର୍ମାଣ ପରିକଳ୍ପନା ଥିଲେ ସୁଦ୍ଧା କୌଣସି ଅସୁବିଧା ଯୋଗୁଁ ଅସ୍ଥାୟୀ ବ୍ୟବସ୍ଥା କରାଯାଇଛି । ଅନ୍ୟ ଏକ ଉଦାହରଣ ଏହିକି, ଗତ କିଛି ବର୍ଷ ପୂର୍ବେ ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ଦେଉଳର ସମ୍ମୁଖ ଭାଗ ଖନନ କରାଯାଇଥିଲା । ଦେଖାଗଲା, ଯେ ଭୂମି ମଧ୍ୟରେ ଜଗମୋହନ ପାଇଁ ଆବଶ୍ୟକ ମାପର ପୋତା ବା ମୂଳଦୁଆ ରହିଛି । ଏଥିରୁ ସ୍ପଷ୍ଟ ହୁଏଯେ, ଦେଉଳ ସହିତ ଜଗମୋହନ ନିର୍ମାଣ ପରିକଳ୍ପନା ଥିଲେ ହେଁ, ତାହା ନିର୍ମାଣ ହୋଇ ପାରିନାହିଁ ।

ଭୁବନେଶ୍ୱରରେ ପରଶୁରାମେଶ୍ୱର ଦେଉଳ ଓ ଜଗମୋହନର ସଂଯୋଗକୁ ଅନେକ ପ୍ରତ୍ନତତ୍ତ୍ୱବିତ୍ ଓ ସ୍ଥପତି କଳିଙ୍ଗ ମନ୍ଦିର ଶିଳ୍ପୀମାନଙ୍କ ଏକ ଅସୁନ୍ଦର ଓ ଅପରିପକ୍ୱ କାର୍ଯ୍ୟ ପଦ୍ଧତି ବୋଲି କହିଥାଆନ୍ତି । କାରଣ ଏହି ସଂଯୋଗ ସ୍ଥଳରେ ସର୍ବତୋଭାବେ ସମ୍ପୂର୍ଣ୍ଣ ହୋଇଥିବା ଦେଉଳର କେତେକ କାରୁକଳା ଜଗମୋହନର ଦୁଇ ପାର୍ଶ୍ୱ ବାଡ ଓ ଛାତ ଦ୍ୱାରା ଆଚ୍ଛାଦିତ ହୋଇ ପଡ଼ିଛି । ଅର୍ଥାତ୍ ଜଗମୋହନ ନିମନ୍ତେ ସମ୍ମୁଖ ଓ ଦୁଇ ପାର୍ଶ୍ୱ ବାଡ଼ ନିର୍ମିତ ହୋଇ ଥିବା ବେଳେ ଦେଉଳର ସମ୍ମୁଖ ବାଡ଼ଟି ଜଗମୋହନର ପଛ ବାଡ଼ର କାର୍ଯ୍ୟ କରୁଛି । ଏଥିରୁ ସ୍ପଷ୍ଟ ହୁଏ ଯେ ମୁଖ୍ୟ ଦେଉଳଟି ସର୍ବତୋଭାବେ ସମ୍ପୂର୍ଣ୍ଣ ହେବା ପରେ, ଅନ୍ୟ ସମୟରେ ଜଗମୋହନ ନିର୍ମିତ ହୋଇଛି । ଅନ୍ୟ ଭାବରେ କହିବାକୁ ଗଲେ, ସେ ସମୟରେ ଦେଉଳ ଓ ଜଗମୋହନର ସଂଯୋଗ ନିମନ୍ତେ ସୁଚିନ୍ତିତ ପରିକଳ୍ପନା ନଥିବାରୁ ଏହି ଅସୁବିଧା ସୃଷ୍ଟି ହୋଇ ଥିବା ସ୍ୱାଭାବିକ ।

ପୂର୍ବେ ସମାଜର ସ୍ଥିତିବାନ, ଧର୍ମ ପରାୟଣ ବ୍ୟକ୍ତିମାନେ ମନ୍ଦିରଟିଏ ନିର୍ମାଣ କରି ତା'ମଧ୍ୟରେ ଦେବତାଙ୍କ ମୂର୍ତ୍ତିଟିଏ ପ୍ରତିଷ୍ଠା କରିବା ଜୀବନର ସର୍ବଶ୍ରେଷ୍ଠ କାର୍ଯ୍ୟ ତଥା ଧର୍ମକୀର୍ତ୍ତିବୋଲି ମନେ କରୁଥିଲେ । ତେବେ ଏହି କାର୍ଯ୍ୟ ସାଧାରଣତଃ ପରିଣତ ବୟସରେ ଆରମ୍ଭ ହେଉଥିଲା । କାରୁକଳା ପୂର୍ଣ୍ଣ ମନ୍ଦିରଟିଏ ସର୍ବମତେ ସମ୍ପୂର୍ଣ୍ଣ କରିବା ନିମନ୍ତେ ଦୀର୍ଘ ଦିନ ଲାଗୁଥିଲା । ଏହି କାରଣରୁ ମନ୍ଦିର ସମ୍ପୂର୍ଣ୍ଣ ପୂର୍ବରୁ କର୍ତ୍ତାଙ୍କ ମୃତ୍ୟୁ ହେଉଥିଲା କିମ୍ବା ମୃତ୍ୟୁର ସମ୍ଭାବନା ରହୁଥିଲା । ଏହି ପରିସ୍ଥିତିରେ ପ୍ରଥମେ ଦେଉଳ କାର୍ଯ୍ୟ ସର୍ବତୋ ଭାବେ ସଂପୂର୍ଣ୍ଣ କରି ତା ମଧ୍ୟରେ ଦେବତାଙ୍କ ପ୍ରତିମା ଯଥା ଶୀଘ୍ର ପ୍ରତିଷ୍ଠା କରିବା କର୍ତ୍ତାଙ୍କ ଲକ୍ଷ୍ୟ ରହୁଥିବା ସ୍ୱାଭାବିକ । ଏହା ବ୍ୟତୀତ ଅର୍ଥାଭାବରୁ ମଧ୍ୟ ପ୍ରଥମ ପର୍ଯ୍ୟାୟରେ କେବଳ ଦେଉଳ କାର୍ଯ୍ୟ ସମ୍ପର୍ଣ୍ଣ କରି ପରବର୍ତ୍ତି ପର୍ଯ୍ୟାୟରେ ଜଗମୋହନ ନିର୍ମାଣ କରାଯାଉଥିବା ସମ୍ଭବ ।

ଏହାର ପରବର୍ତ୍ତୀ ସମୟ, ଅର୍ଥାତ ଖ୍ରୀ:୯-୧୦ମ ଶତାବ୍ଦୀର ଅନେକ ମନ୍ଦିରର ଦେଉଳ ଓ ଜଗମୋହନ ଏକ ସମୟରେ ନିର୍ମିତ ହୋଇଥିବା ଦେଖାଯାଏ । ଏଗୁଡ଼ିକରେ ମନ୍ଦିରର ଶିଳ୍ପୀ ଓ ସ୍ଥପତିମାନେ ପୂର୍ବୋକ୍ତ ସଂଯୋଗର ଅସୁନ୍ଦରତାକୁ ଦୂର କରିବାକୁ ଯାଇ, ଦେଉଳର ସମ୍ମୁଖ ଭାଗକୁ ସାମାନ୍ୟ ବୃଦ୍ଧିକରି ଜଗମୋହନ ନିର୍ମାଣ କରିଛନ୍ତି । ଏହାଦ୍ୱାରା ଦେଉଳ ଓ ଜଗମୋହନ ମଧ୍ୟରେ ଏକ ସଂଯୋଗ ସ୍ଥଳ ସୃଷ୍ଟି ହୋଇଛି । ଏହି ନିର୍ମାଣ ସାଧାରଣତଃ 'ସନ୍ଧିସ୍ଥଳ' ନାମରେ ପରିଚିତ । ସନ୍ଧିସ୍ଥଳ ଦେଉଳ ଓ ଜଗମୋହନ ମଧ୍ୟରେ ଏକ ଛୋଟ ବ୍ୟବଧାନ ସୃଷ୍ଟି କରିଥାଏ । ସନ୍ଧିସ୍ଥଳକୁ ଆକର୍ଷଣୀୟ କରିବା ନିମନ୍ତେ ଏହାର ବାଡ଼ ଉପରେ ସାଧାରଣତଃ ବିଭିନ୍ନ ପ୍ରକାର ଗଜସିଂହ କିମ୍ବା ଅନ୍ୟ ମୂର୍ତ୍ତି ଖୋଦିତ ହୋଇଥାଏ । ମୁକ୍ତେଶ୍ୱର ଓ ବନ୍ଧେଶ୍ୱର ମନ୍ଦିରର ସନ୍ଧିସ୍ଥଳମାନଙ୍କରେ ଏହି ପ୍ରକାର ମୂର୍ତ୍ତି ରହିଛି । ଉତ୍ତରଭାରତ ତଥା ମଧ୍ୟଭାରତର ମନ୍ଦିର ସ୍ଥାପତ୍ୟରେ ମୁଖ୍ୟ ଦେଉଳ ସହିତ ଥିବା ଜଗମୋହନକୁ ମୁଖଶାଳା କହିଥାଆନ୍ତି । ଏଠାରେ ଏହି ଦୁଇ ନିର୍ମାଣର ସଂଯୋଗ ସ୍ଥଳରେ ରହିଥାଏ ଅନ୍ୟ ଏକ ଛୋଟ କୋଠରୀ, ଯାହାକି 'ଅନ୍ତରାଳ' ନାମରେ ପରିଚିତ । କିନ୍ତୁ କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ବାହାରର ସନ୍ଧିସ୍ଥଳ ମନ୍ଦିର ଭିତର ପାଖରେ ଏକ ଛୋଟ ସଂକୀର୍ଣ୍ଣ ପଥ ସୃଷ୍ଟି କରିଥାଏ । ମଧ୍ୟଯୁଗ ଓ ପରବର୍ତ୍ତୀ ସମୟର ଅଧିକାଂଶ ଦେଉଳ ଓ ଜଗମୋହନ ମଧ୍ୟରେ ଉପରୋକ୍ତ ପ୍ରକାର ଛୋଟ ସନ୍ଧିସ୍ଥଳ ଦେଖା ଯାଉଥିବା ବେଳେ ଭୁବନେଶ୍ୱର ନିକଟ କଳାରାହାଙ୍ଗ ଗ୍ରାମର ଜଳେଶ୍ୱର ମନ୍ଦିରର ସନ୍ଧିସ୍ଥଳଟି ଅପେକ୍ଷାକୃତ ଦୀର୍ଘ । ଏହାର ଦୁଇ ପାର୍ଶ୍ୱ ବାଡ଼ରେ ଗଜସିଂହ ମୂର୍ତ୍ତି ପରିବର୍ତ୍ତେ ଦୁଇଟି ଦଣ୍ଡଯୁକ୍ତ ଗବାକ୍ଷ ରହିଛି । ଏହା ଦ୍ୱାରା ଭିତର ପାଖର ଦୀର୍ଘ ସଂକୀର୍ଣ୍ଣ, ଓ ଅନ୍ଧକାର ପଥ ମଧ୍ୟକୁ କିଞ୍ଚିତ୍ ଆଲୋକ ପ୍ରବେଶ କରୁଛି । ତେବେ ସନ୍ଧିସ୍ଥଳର ପରିକଳ୍ପନା ସତ୍ତ୍ୱେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ କୋଣାର୍କର ସୂର୍ଯ୍ୟ ମନ୍ଦିରର ଦେଉଳ ଓ ଜଗମୋହନର ସଂଯୋଗ ସନ୍ତୋଷଜନକ ନୁହେଁ ବୋଲି ପ୍ରତ୍ନତତ୍ତ୍ୱବିତ୍‌ମାନେ ମତ ଦେଇ ଥାଆନ୍ତି ।



# ନାଟମନ୍ଦିର ଓ ନାଟମଣ୍ଡପ

ମନ୍ଦିରରେ ଅଧିଷ୍ଠିତ ଦେବତାଙ୍କ ସମ୍ମୁଖରେ ନୃତ୍ୟ-ସଙ୍ଗୀତ ପରିବେଷଣ ନିମନ୍ତେ ଉଦ୍ଦିଷ୍ଟ ନିର୍ମାଣକୁ ନାଟମନ୍ଦିର ବା ନାଟମଣ୍ଡପ କୁହାଯାଏ । ସପ୍ତମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିରର ଜଗମୋହନ ସମ୍ମୁଖ ବାଡ଼ର ଗବାକ୍ଷରେ ଥିବା ନର୍ତ୍ତକ ଓ ବାଦକମାନଙ୍କ ମୂର୍ତ୍ତି ଦେଖି ଅନୁମାନ କରାଯାଏ ଯେ, ସେ ସମୟରେ ନାରୀ ନହେଲେ ମଧ ପୁରୁଷମାନଙ୍କ ଦ୍ୱାରା ମନ୍ଦିରମାନଙ୍କରେ ନୃତ୍ୟ, ଗୀତ ପରିବେଷଣ କରାଯାଉଥିଲା । କିନ୍ତୁ କୌଣସି ପ୍ରାଚୀନ ମନ୍ଦିର ସହିତ ନାଟମନ୍ଦିର କିମ୍ବା ନାଟମଣ୍ଡପ ଦେଖା ଯାଏନାହିଁ । ଏହାର ପରବର୍ତ୍ତୀ ସମୟ ଅର୍ଥାତ୍ ଖ୍ରୀ: ୧୦ମ-୧୧ଶ ଶତାବ୍ଦୀ ଠାରୁ ସୋମବଂଶୀ ଓ ଗଙ୍ଗବଂଶୀ ନରପତିମାନେ ମନ୍ଦିରରେ ଦେବଦାସୀ ପ୍ରଥା ପ୍ରଚଳନ ସହିତ ନାଟମନ୍ଦିର ଓ ନାଟମଣ୍ଡପର ପରିକଳ୍ପନା ଓ ନିର୍ମାଣ କରିଥିବା ଜଣାଯାଏ । ଏଥି ମଧ୍ୟରୁ କେତେକ ନାଟମନ୍ଦିର ଜଗମୋହନ ଓ ଭୋଗମଣ୍ଡପ ସହିତ ସଂଯୋଗ ହୋଇ ରହିଛି । ଏହି ପ୍ରକାର ବ୍ୟବସ୍ଥା ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ଅନନ୍ତ-ବାସୁଦେବ ମନ୍ଦିର ଓ ପୁରୀର ଶ୍ରୀଜଗନ୍ନାଥଙ୍କ ମନ୍ଦିର ସହିତ ଦେଖିବାକୁ ମିଳେ । ଏଗୁଡ଼ିକ ସାଧାରଣତଃ ବିଭିନ୍ନ ଆକାରର ପୀଢ଼ ଦେଉଳ । ଅନ୍ୟ ପ୍ରକାର ନିର୍ମାଣଗୁଡ଼ିକ ଜଗମୋହନ ଠାରୁ ଅଳ୍ପ ବ୍ୟବଧାନରେ ଥାଏ । ଏଗୁଡ଼ିକୁ ନାଟମଣ୍ଡପ କୁହା ଯାଉଥିବା ବେଳେ ବର୍ତ୍ତମାନ ତିଷ୍ଠି ରହିଥିବା ନିର୍ମାଣ ଗୁଡ଼ିକ ଉପରେ କୌଣସି ଛାତ ଦେଖାଯାଏ ନାହିଁ । ଏହି ବର୍ଗାକାର ମଣ୍ଡପ ଗୁଡ଼ିକର ଛାତକୁ ଧରି ରଖିଥିବା କେତେକ ଖମ୍ବର ଭଗ୍ନାବଶେଷ ମାତ୍ର ତିଷ୍ଠି ରହିଛି ।

ଏହି ମଣ୍ଡପଗୁଡ଼ିକର ସାଧାରଣ ନିର୍ମାଣ ଶୈଳୀ ଅନୁଧାନ କଲେ ଦେଖାଯାଏ ଯେ, ଏହା ଏକ ସୁଉଚ୍ଚ ବେଦୀ ବା ମଣ୍ଡପ । ଏହାର ପାର୍ଶ୍ୱବାଡ଼ ଗୁଡ଼ିକରେ ପାଭାଗ, ଜଂଘ, ବନ୍ଧନୀ ଓ ବରଣ୍ଡ ବା ଛୋଟ ଛଜା ସଦୃଶ ନିର୍ମାଣ ଦେଖାଯାଏ । ମଣ୍ଡପ ଉପରକୁ ଉଠିବା ପାଇଁ ଗୋଟିଏ ପାଖରେ କିମ୍ବା ଅନ୍ୟ ପାଖମାନଙ୍କରେ ପାହାଚର ବ୍ୟବସ୍ଥା ଥାଏ । ବେଦୀ ଉପର ଚାରିଧାରର ପ୍ରତ୍ୟେକ ପାଖରେ ଚାରିଖମ୍ବ, ଓ ମଧଭାଗରେ ଅପେକ୍ଷା କୃତ ମୋଟା ଓ ଅଧିକ ଉଚ୍ଚତା ବିଶିଷ୍ଟ ଚାରିଖମ୍ବ, ଏହି ପରି ମୋଟ ୧୬ ଗୋଟି ଖମ୍ବର ବ୍ୟବସ୍ଥା ଦେଖାଯାଏ । ଅଧିକାଂଶ କ୍ଷେତ୍ରରେ ଖମ୍ବଗୁଡ଼ିକର ମୂଳଭାଗ ଚତୁଷ୍କୋଣ , ମଧ ଭାଗ ଅଷ୍ଟକୋଣ କିମ୍ବା ଗୋଲ । କେତେକ ଖମ୍ବର ନିମ୍ନ ଓ ଉର୍ଦ୍ଧ୍ୱଭାଗରେ ପାଭାଗ ଓ ବରଣ୍ଡ ସଦୃଶ ନିର୍ମାଣରେ କୀର୍ତ୍ତିମୁଖରୁ କିମ୍ବା ପଦକରୁ ଝରାବଳୀ ଝୁଲୁଥିବା ଦେଖାଯାଏ । ସାଧାରଣତଃ ମଣ୍ଡପ ଗୁଡ଼ିକର ଉଚ୍ଚତା ୧.୦୦ ମିଟିରରୁ ୧.୫୦ ମିଟର, ଲମ୍ବ ଓ ପ୍ରସ୍ଥ ପ୍ରତ୍ୟେକ ପାଖ ପ୍ରାୟ ୧୦.୦୦ ମିଟର, ଚାରିପାଖ ଖମ୍ବଗୁଡ଼ିକ, ପ୍ରତ୍ୟେକ ପ୍ରାୟ ୨.୦୦ ମିଟର ଓ ମଧଭାଗର ଚାରି ଖମ୍ବ, ପ୍ରତ୍ୟେକ ପ୍ରାୟ ୨.୫୦ ମିଟର ଉଚ୍ଚତା ବିଶିଷ୍ଟ । ଏହି ପ୍ରକାର ମଣ୍ଡପ ଭୁବନେଶ୍ୱର ନିକଟ କଳାରାହାଙ୍ଗ ଗ୍ରାମର ଚ୍ଛଳେଶ୍ୱର ମନ୍ଦିର, ନିଆଳିର ଶୋଭନେଶ୍ୱର ମନ୍ଦିର ଓ ଭୁବନେଶ୍ୱରର ଯମେଶ୍ୱର ମନ୍ଦିର ସମେତ ଅନ୍ୟ କେତେକ ସ୍ଥାନରେ ଦେଖିବାକୁ ମିଳେ ।

କଳାରାହାଙ୍ଗର ଜଳେଶ୍ୱର ଶିବ ମନ୍ଦିର ସହିତ ଥିବା ନାଟମଣ୍ଡପଟି ସର୍ବ ପ୍ରାଚୀନ ବୋଲି ଅନୁମାନ କରାଯାଏ । ପ୍ରାୟ ୧.୪୦ମିଟର ଉଚ୍ଚତା ବିଶିଷ୍ଟ ବର୍ଗାକାର ମଣ୍ଡପଟିର ଲମ୍ବ ଓ ପ୍ରସ୍ଥ ପ୍ରତ୍ୟେକ ପାଖ ୮.୩୦ମିଟର । ମଣ୍ଡପର ଚତୁଃପାର୍ଶ୍ୱର ପ୍ରତ୍ୟେକ ବର୍ଗାକାର ଖମ୍ବର ମୂଳଭାଗ ପ୍ରତ୍ୟେକ ପାଖ ୦.୪୮ମିଟର ହୋଇଥିବା ବେଳେ ଏଗୁଡ଼ିକର ଉଚ୍ଚତା ପ୍ରାୟ ୧.୬୫ମିଟର । ମଧ୍ୟଭାଗର ଚାରି ଖମ୍ବ ଭଗ୍ନ ହୋଇଥିଲେ ହେଁ ପୂର୍ବୋକ୍ତ ଖମ୍ବଠାରୁ ସାମାନ୍ୟ ଅଧିକ ମୋଟା ଓ ଅଧିକ ଉଚ୍ଚତା ବିଶିଷ୍ଟ ହୋଇଥିବା ସମ୍ଭବ । ମଣ୍ଡପର ପାର୍ଶ୍ୱବାଡ଼ ଓ ଖମ୍ବଗୁଡ଼ିକରେ ପାରମ୍ପରିକ ଶୈଳୀର କେତେକ ଧାର ଓ ସ୍ୱଚ୍ଛ ମଣ୍ଡନକୃତି ଦେଖାଯାଏ ।

ବର୍ତ୍ତମାନର କୋଣାର୍କ ନାଟମଣ୍ଡପକୁ କେତେକ ପ୍ରତ୍ନତତ୍ତ୍ୱବିତ୍ 'ଭୋଗମନ୍ଦିର' ବୋଲି ଅନୁମାନ କରନ୍ତି । ଯଦି ଏହା ନାଟମଣ୍ଡପ ହୁଏ ତେବେ ଭିନ୍ନ ଶୈଳୀର ଏକ ଶ୍ରେଷ୍ଠ ନିର୍ମାଣ ଭାବେ ବିବେଚିତ ହେବ । ମନ୍ଦିରର ମୁଖଶାଳା ଠାରୁ ଏହା ପ୍ରାୟ ୯.୦୦ମିଟର ଦୂରତ୍ୱରେ ରହିଛି । ଏହା ଗୋଟିଏ ଉପରେ ଗୋଟିଏ, ଦୁଇଟି ପୀଠକୁ ନେଇ ନିର୍ମିତ । ଏକ ଛୋଟ ୦.୭୦ ମିଟର ଉଚ୍ଚତା ବିଶିଷ୍ଟ ସଂକୀର୍ଣ୍ଣ ଧାର ପୀଠ ସମେତ ପ୍ରଥମ ପୀଠର ଉଚ୍ଚତା ପ୍ରାୟ ୩.୬୦ମିଟର । ଏହାର ବର୍ଗାକାର ଉପରଭାଗର ପ୍ରତ୍ୟେକ ପାଖ ଲମ୍ବ ଓ ପ୍ରସ୍ଥ ୧୫.୬୦ ମିଟର । ପ୍ରଥମ ପୀଠର ଉପର ଚତୁଃପାର୍ଶ୍ୱରେ ୩.୩୦ ମିଟର ପ୍ରସ୍ଥ ଥିବା ବାରଣ୍ଡା ସଦୃଶ ଏକ ପଥ ଛାଡ଼ି ଦ୍ୱିତୀୟ ପୀଠ ଅବସ୍ଥିତ । ଦ୍ୱିତୀୟ ପୀଠର ଉଚ୍ଚତା ୧.୫୦ମିଟର ହୋଇଥିବା ବେଳେ ଏହାର ଉପର ଭାଗର ପ୍ରତ୍ୟେକ ପାଖ ୯.୭୦ମିଟର । ଏହି ପୀଠର ଚତୁଃପାର୍ଶ୍ୱରେ ୦.୫୦ମିଟରର ଏକ ସଂକୀର୍ଣ୍ଣ ଧାର ଛାଡ଼ି ବାଡ଼ ରହିଛି । ବାଡ଼ଗୁଡ଼ିକର ମୋଟା ସ୍ଥଳ ବିଶେଷରେ ୧.୮୦ରୁ ୨.୪୫ମିଟର । ମଧ୍ୟଭାଗରେ ଥିବା ଚାରି ବର୍ଗାକାର ଖମ୍ବର ମୋଟା ପ୍ରତ୍ୟେକ ପାଖ ୨.୧୦ମିଟର ଏବଂ ପ୍ରତ୍ୟେକର ଉଚ୍ଚତା ୩.୦୦ମିଟର । ବାଡ଼ଗୁଡ଼ିକ ପ୍ରାୟ ଏହି ଉଚ୍ଚତାର ହୋଇଥିବା ବେଳେ ବାଡ଼ ମଧ୍ୟରେ ଥିବା ଫାଙ୍କଗୁଡ଼ିକ ମଣ୍ଡପ ମଧ୍ୟକୁ ପ୍ରବେଶ ଦ୍ୱାରର ଧାରଣା ଦିଏ । ଏହିପରି ଭାବେ, ପୂର୍ବ, ପଶ୍ଚିମ ଓ ଦକ୍ଷିଣ ପ୍ରତ୍ୟେକ ପାର୍ଶ୍ୱରେ ତିନୋଟି କରି ପ୍ରବେଶ ପଥ ଥିବା ବେଳେ ଉତ୍ତର ଦିଗରେ ଗୋଟିଏ



କୋଣାର୍କ, ନାଟମଣ୍ଡପର ଭୂନକ୍ସା

ମାତ୍ର ପଥ ରହିଛି । ଦୁଇଟି ପୀଠକୁ ଆରୋହଣ ଓ ଅବତରଣ ନିମନ୍ତେ ଚାରି ଦିଗରୁ ବିଭିନ୍ନ ଶୈଳୀର ପାହାଚ୍ ରହିଛି । ପୂର୍ବଦିଗରେ ଥିବା ମୁଖ୍ୟ ପ୍ରବେଶ ପଥର ଦୁଇ ପାର୍ଶ୍ୱରେ ଦୁଇଟି ବିଶାଳ ଉଦ୍ୟତସିଂହ ମୂର୍ତ୍ତି କୃତିଟିର ଗାମ୍ଭୀର୍ଯ୍ୟ ବୃଦ୍ଧି କରେ । ପଶ୍ଚିମ ଦିଗର ମୁଖ୍ୟ ପାହାଚ୍‌ଗୁଡ଼ିକ ଦୁଇ ପାର୍ଶ୍ୱରେ ଥିବା ବେଳେ ଦକ୍ଷିଣ ଉତ୍ତର ଦିଗରୁ ନିରାଡ଼ମ୍ବର ପାହାଚ ଶ୍ରେଣୀ ଓ ପ୍ରଥମ ପୀଠ ଉପରୁ ଦ୍ୱିତୀୟ ପୀଠକୁ ଆରୋହଣ ଅବତରଣ ନିମନ୍ତେ ମଧ ଚାରି ପାର୍ଶ୍ୱରୁ ଛୋଟ ପାହାଚ୍‌ର ବ୍ୟବସ୍ଥା ରହିଛି । ପୀଠ ଗୁଡ଼ିକର ପାର୍ଶ୍ୱ ବାଡ଼ର ବାହାର ପାଖ ଓ ଖମ୍ବଗୁଡ଼ିକର ଚତୁଃପାର୍ଶ୍ୱ ପାଗ, ବିଭିନ୍ନ ଧାର, ବହୁବିଧ ମଣ୍ଡନକୃତି ଓ ବିଭିନ୍ନ ଭଙ୍ଗିର ନର୍ତ୍ତକ, ନର୍ତ୍ତକୀ, ବାଦକ ଓ ବାଦିକାଙ୍କ ମୂର୍ତ୍ତିରେ ପରିପୂର୍ଣ୍ଣ । ଏହି କାରୁକଳା ଓ ମୂର୍ତ୍ତିକଳା ଉଚ୍ଚକୋଟୀର ଓ ଆକର୍ଷଣୀୟ । ବର୍ତ୍ତମାନ ମଣ୍ଡପ ଉପରେ କୌଣସି ଛାତ ନଥିବା ବେଳେ ଏହାର ବାଡ଼ ଓ ଖମ୍ବ ଗୁଡ଼ିକର ସ୍ଥିତିରୁ ମନେହୁଏ ଯେ, ଏହା ଉପରେ ଏକ ଅନୁଚ୍ଚ 'ନତ୍ତୁମୋହନ' ଶୈଳୀର ଛାତ ଥିଲା କିମ୍ବା ଛାତ ନିର୍ମାଣର ପରିକଳ୍ପନା ରହିଥିଲା, ଯେହେତୁ କୋଠରୀର ଚତୁଃପାର୍ଶ୍ୱରେ ବାଡ଼ ରହିଛି । ଏହାକୁ ନାଟମଣ୍ଡପ ପରିବର୍ତ୍ତେ ନାଟମନ୍ଦିର କହିବା ସମୀଚୀନ ହେବ ।


କୋଣାର୍କ, ନାଟମଣ୍ଡପ


ଶ୍ରୀଜଗନ୍ନାଥ ମନ୍ଦିରର ମୁକ୍ତିମଣ୍ଡପ

ନାଟମନ୍ଦିର ଓ ନାଟମଣ୍ଡପଗୁଡ଼ିକ ନୃତ୍ୟ-ସଂଗୀତ ପରିବେଷଣ ବ୍ୟତୀତ ଏକ କ୍ଷୁଦ୍ର ସଭାସ୍ଥଳ, ଧର୍ମଚର୍ଚ୍ଚା, ସାମାଜିକ ସମସ୍ୟାର ଆଲୋଚନା ଭଳି ବହୁବିଧ ସମାବେଶର ସ୍ଥଳୀ ଥିଲା । ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପରିସରର ମୁକ୍ତିମଣ୍ଡପଟି ମଧ ପଣ୍ଡିତମାନଙ୍କ ଆସର ନିମନ୍ତେ ଏହି ପ୍ରକାର ଏକ ନିର୍ମାଣ ।



# ଭୋଗମନ୍ଦିର

ପ୍ରାଚୀନ କାଳର ମନ୍ଦିରମାନଙ୍କର ଗର୍ଭଗୃହ ମଧ୍ୟରେ ଅଧିଷ୍ଠିତ ଦେବତାଙ୍କୁ ଭୋଗ ସମର୍ପଣ କରାଯାଉଥିଲା । ମଧ୍ୟଯୁଗର କେତେକ ମନ୍ଦିରରେ ସର୍ବସାଧାରଣଙ୍କ ନିମନ୍ତେ ଭୋଗ ପ୍ରସ୍ତୁତ ହେବା ଦ୍ୱାରା ଏହାର ପରିମାଣ ବୃଦ୍ଧି ପାଇଲା । ଏଣୁ ଆବଶ୍ୟକତାକୁ ଲକ୍ଷ୍ୟରଖି ନିର୍ମାଣ କରାଗଲା, ସ୍ୱତନ୍ତ୍ର ଭୋଗମନ୍ଦିର । ଏହାକୁ କେତେକ ସ୍ଥଳେ ଭୋଗମଣ୍ଡପ କୁହାଯାଉଥିଲେ ମଧ୍ୟ ଏହା ସାଧାରଣତଃ ଚାରିପାର୍ଶ୍ୱ ବାଡ଼ ଥିବା ଏକ ପୀଢ଼ଦେଉଳ । ବଡ଼ ମନ୍ଦିର ମାନଙ୍କରେ ନାଟମନ୍ଦିର, ତୃତୀୟ କୋଠରୀ ଭାବେ ରହୁଥିବା ବେଳେ ଭୋଗମନ୍ଦିରର ସ୍ଥାନ ଚତୁର୍ଥରେ ଦେଖାଯାଏ । କେତେକ ମନ୍ଦିରରେ ପୂର୍ବ ଭୋଗମନ୍ଦିରକୁ ନାଟମନ୍ଦିରରେ ପରିବର୍ତ୍ତିତ କରାଯିବା ପରେ ନୂତନ ଭାବେ ଭୋଗ ମନ୍ଦିର ନିର୍ମିତ ହୋଇଥିବା ଦେଖାଯାଏ । ଲିଙ୍ଗରାଜ ମନ୍ଦିରର ନାଟମନ୍ଦିର ଓ ଭୋଗମନ୍ଦିର ଏହାର ଉଦାହରଣ । ଏହି ପ୍ରକାର ଭୋଗମନ୍ଦିର ସହିତ, ମନ୍ଦିରର ରୋଷ-ଘରକୁ ସଂଯୋଗ କରୁଥିବା ସ୍ୱତନ୍ତ୍ର ରାସ୍ତା ରହିଥାଏ ।

ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ସହିତ ଥିବା ଭୋଗ-ମନ୍ଦିର ଓ ଅନନ୍ତ-ବାସୁଦେବ ମନ୍ଦିରର ଭୋଗ-ମନ୍ଦିର ନଡୁମୋହନ ଶୈଳୀର ଓ ପୁରୀର ଶ୍ରୀଜଗନ୍ନାଥଙ୍କ ଭୋଗ-ମନ୍ଦିରଟି କାଠଚାଳିଆ ପୀଢ଼ ଶୈଳୀର ଅଟେ । ଏହି ମନ୍ଦିରମାନଙ୍କର ମୁଖ୍ୟ ଭୋଗକୁ 'ଭିତର ଭୋଗ' କୁହାଯାଉଥିବା ବେଳେ ଏହା ଗର୍ଭଗୃହରେ ଦେବତାମାନଙ୍କୁ ସମର୍ପଣ କରାଯାଇଥାଏ ଏବଂ ସର୍ବସାଧାରଣଙ୍କ ନିମନ୍ତେ ଉଦ୍ଦିଷ୍ଟ ଭୋଗଗୁଡ଼ିକ ସାଧାରଣତଃ ଭୋଗମନ୍ଦିର ବା ଭୋଗମଣ୍ଡପ ମଧ୍ୟରେ ପୂଜା କରାଯାଇଥାଏ ।

# ଖାକରା ଦେଉଳ

କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ରେଖ ଓ ପୀଢ଼ ସାଧାରଣ ଶୈଳୀ ହୋଇଥିବା ବେଳେ ଖାକରା ଏକ ସ୍ୱତନ୍ତ୍ର ଶୈଳୀର ନିର୍ମାଣ ଅଟେ । କେତେକଙ୍କ ମତରେ ଏହାର ଅଗ୍ରଭାଗ ଫାଳିକିଆ ବୋଇତି କଖାରୁ ସଦୃଶ ଦେଖା ଯାଉଥିବାରୁ ଏହି ଶୈଳୀକୁ 'ଖାକରା' କୁହାଯାଏ । ତେବେ ସମ୍ଭବ ଯେ ଏହାର ଉପର ଭାଗ 'ଖ' ବା ଆକାଶ ସମ ଅର୍ଦ୍ଧ ଗୋଲାକାର ଅର୍ଥାତ୍ 'ଖ' ଆକାରରୁ 'ଖାକରା' ଶବ୍ଦର ସୃଷ୍ଟି । ଭୁବନେଶ୍ୱରରେ ଥିବା ଏହି ଶୈଳୀର ପ୍ରଖ୍ୟାତ ଚାମୁଣ୍ଡା ଦେବୀଙ୍କ ମନ୍ଦିର, 'ବୋଇତାଳ' ଦେଉଳ ନାମରେ ପରିଚିତ । କେତେକ, ଏହାର ମସ୍ତକ ଓଲଟା ବୋଇତ ସଦୃଶ ଦେଖା ଯାଉଥିବାରୁ ଏହାକୁ 'ବୋଇତାଳ' କହନ୍ତି । ଅନ୍ୟ କେତେକ କହନ୍ତି ଦେବୀ ଚାମୁଣ୍ଡାଙ୍କ ନିକଟରେ ବେତାଳ ସାଧନା କରାଯାଉଥିବାରୁ ଏହାକୁ ବୈତାଳ ଦେଉଳ କୁହାଯାଉଥିବା ବେଳେ ପରବର୍ତ୍ତୀ ସମୟରେ ଏହା 'ବୋଇତାଳ' ହୋଇପଡିଛି । ଓଡ଼ିଶାର କେତେକ ମନ୍ଦିର ଶିଳ୍ପୀ ଏହି ପ୍ରକାର ଗଡ଼ାଣିଆ ଛାତକୁ 'ଗୌରୀଚାଳ' ମଧ୍ୟ କହିଥାଆନ୍ତି ।

ରେଖ ଓ ପୀଢ଼ ଶୈଳୀର ଶିବ କିମ୍ବା ବିଷ୍ଣୁମନ୍ଦିରର ଗର୍ଭଗୃହଗୁଡ଼ିକ ବର୍ଗାକାର ହୋଇଥିବା ବେଳେ ଖାକରା ଦେଉଳର ଗର୍ଭଗୃହ ସାଧାରଣତଃ ଆୟତାକାର ଓ ଏଗୁଡ଼ିକ କେବଳ ଦେବୀମାନଙ୍କ ନିମନ୍ତେ ନିର୍ମିତ ହୋଇଥାଏ । ଅନ୍ୟ ମନ୍ଦିରମାନଙ୍କ କ୍ରମ ହ୍ରାସମାନ ଶିଖର ଉପରେ ଗୋଟିଏ ଅଁଳା, କଳସ ଓ ଧ୍ୱଜାଦଣ୍ଡ ରହିଥିବା ବେଳେ ଖାକରା ଦେଉଳର ସମାନ୍ତର ଉପରଭାଗ, ଦୁଇପାଖ ଗଡ଼ାଣିଆ ଛାତ ବା

ଶିଖର ଉପରେ ତିନୋଟି ଅଁଳା, କଳସ ସହିତ ତିନି ଧ୍ୱଜାଦଣ୍ଡ ଦେଖାଯାଏ । କେତେକ ସ୍ଥଳେ ମଧ୍ୟଭାଗରେ ଅଁଳା କଳସ ଓ ଦୁଇ ପାଖରେ ଦୁଇଟି ଉଦ୍ୟତ ସିଂହ ମୂର୍ତ୍ତି ରହିଥାଏ । ଛୋଟ ଖାକରା ଦେଉଳ ଗୁଡ଼ିକ ସରଳ ଓ ନିରାଡ଼ମ୍ବର ହୋଇଥିବା ବେଳେ ସମୟାନୁକ୍ରମେ ବିକଶିତ, ମଧ୍ୟମ ଆକାରର ମନ୍ଦିରମାନଙ୍କ ଦେହରେ କଳାକୃତି ପୂର୍ଣ୍ଣ ରଥକ ଓ ଉପସ୍ତମ୍ଭମାନଙ୍କ ପରିକଳ୍ପନା ଯୋଗୁଁ ସେଗୁଡ଼ିକ ଅତ୍ୟନ୍ତ କମନୀୟ ହୋଇ ପଡ଼ିଥିବା ଲକ୍ଷ୍ୟ କରାଯାଏ । ଛୋଟ ଖାକରା ଦେଉଳଗୁଡ଼ିକ ସହିତ ଜଗମୋହନ ଦେଖା ଯାଏନାହିଁ । କିନ୍ତୁ ମଧ୍ୟମ ଆକାରର ଦେଉଳ ସହିତ ବିଭିନ୍ନ ମଣ୍ଡନକୃତି ଯୁକ୍ତ ଦୁଇଚାଳିଆ, ଆୟତାକାର ଜଗମୋହନ ରହିଥାଏ । କଳିଙ୍ଗର ଏହି ଖାକରା ଶୈଳୀକୁ କେତେକ ପ୍ରତ୍ନତତ୍ତ୍ୱବିତ୍ ଦକ୍ଷିଣ ଭାରତର ଗୋପୁରମ୍ ମନ୍ଦିରର ଅନୁକରଣ ବୋଲି ଅନୁମାନ କରୁଥିବା ବେଳେ ଏହା ପ୍ରାଚୀନ ବୌଦ୍ଧ ଚୈତ୍ୟଗୃହର ଗଡ଼ାଣିଆ ଛାତ ସହିତ ବହୁଭାବରେ ସାମଞ୍ଜସ୍ୟ ରକ୍ଷାକରେ ।

ଓଡ଼ିଶାର ପ୍ରାଚୀନତମ ଖାକରା ଦେଉଳ ଅନୁସନ୍ଧାନ ବେଳେ କିଛି ବର୍ଷ ପୂର୍ବେ ଭୁବନେଶ୍ୱର ବିନ୍ଦୁସାଗର କୂଳ ମାଟିତଳୁ ଉଦ୍ଧାର କରାଯାଇଥିବା ଭବାନୀଶଙ୍କରଙ୍କ ମନ୍ଦିର ପ୍ରଥମେ ଦୃଷ୍ଟିକୁ ଆସେ । ମାଟିତଳେ ସମ୍ପୂର୍ଣ୍ଣ ପୋତି ହୋଇ ପଡ଼ିଥିବା ଏହି ମନ୍ଦିରଟିକୁ ପୁରଣା ଭୁବନେଶ୍ୱରର କେତେକ ଉତ୍ସାହୀ ଯୁବକ ପ୍ରଥମେ କିଛି ଅଂଶ ଖୋଲି ମନ୍ଦିରର ଗୋଟିଏ ପାର୍ଶ୍ୱବାଡ଼ ବାହାର କରିଥିଲେ । ପରବର୍ତ୍ତୀ ସମୟରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଅନ୍ୟ ଏକ ସଂଲଗ୍ନ ବାଡ଼ ଖୋଲି ଉଦ୍ଧାର କରିବା ଦ୍ୱାରା ମନ୍ଦିରର ଲମ୍ବ ଓ ପ୍ରସ୍ଥ ସଂପର୍କରେ ସଂପୂର୍ଣ୍ଣ ଧାରଣା କରିହେଲା । ଏଠାରେ ପ୍ରସ୍ଥ ଭାବରେ ଆୟତାକାର ଗର୍ଭଗୃହ ଯୁକ୍ତ ମୁଖ୍ୟ ଦେଉଳ ସହ ଲମ୍ବ ଭାବରେ ଆୟତାକାର ଜଗମୋହନ ରହିଛି । ମୁଖ୍ୟ ଦେଉଳ ପୂର୍ବପାର୍ଶ୍ୱ ବାଡ଼ରେ, ପାର୍ଶ୍ୱଦେବତା ଭାବେ 'ଭବାନୀ-ଶଙ୍କର'ଙ୍କ ଯୁଗଳ ମୂର୍ତ୍ତି ରହିଥିବା ବେଳେ ଦକ୍ଷିଣ ପାଖ ଅର୍ଥାତ୍ ପଛ ବାଡ଼ରେ ଥିବା ଚାରିଗୋଟି ଉପସ୍ତମ୍ଭର ମୂର୍ତ୍ତିକଳା ଓ ମଣ୍ଡନକୃତି ଅସମ୍ପୂର୍ଣ୍ଣ ରହିଛି । ଦେଖା ଯାଉଥିବା ଜଗମୋହନର ଗୋଟିଏ ପାଖ ବାଡ଼ରେ ତିନୋଟି ଆଲମ୍ବ ଗବାକ୍ଷ ରହିଛି । ଛାତ ବିହୀନ ମନ୍ଦିରଟିର ଉପର ଭାଗ ପୋତି ହୋଇ ରହିଥିବା ବେଳେ ଏହା ଉପରେ ଏକ ଆଧୁନିକ କୋଠାଘର ରହିଯାଇଛି । ଦେଉଳର ପାଭାଗରେ ଥିବା ଅଭିଲେଖରେ 'ହାଲିଆଚଣ୍ଡୀ' ଉଲ୍ଲେଖ ଥିବାରୁ ଏହା ଏକ ଦେବୀମନ୍ଦିର ବୋଲି ସ୍ପଷ୍ଟ ହୁଏ । ବିନ୍ଦୁସାଗରର ପଶ୍ଚିମ କୂଳରେ ଥିବା ଖାକରା ଶୈଳୀର ବୋଇତାଳ ଦେଉଳ ପୂର୍ବମୁଖ ହୋଇଥିବା ବେଳେ ଏହି ମନ୍ଦିରଟି ବିନ୍ଦୁସାଗର ଆଡ଼କୁ, ଅର୍ଥାତ୍ ଉତ୍ତର ମୁଖ ହୋଇ ରହିଛି । ବୋଇତାଳ ଦେଉଳ ଠାରୁ ଏହାର ଆକାର ଛୋଟ, ନିର୍ମାଣ ଓ କାରୁକଳା ଅପରିପକ୍ୱ । ମନ୍ଦିରର ତତ୍କାଳୀନ ଭୂପତନକୁ ଅନୁମାନ କଲେ ଜଣାଯାଏ ଯେ ଏହା ବୋଇତାଳ ଦେଉଳ ପୂର୍ବବର୍ତ୍ତୀ ସମୟର । ମନ୍ଦିରର ନିର୍ମାଣ କୌଶଳ, କଳା ଶୈଳୀ ଓ ଅଭିଲେଖର ଅକ୍ଷର ଶୈଳୀରୁ ଅନୁମେୟ ଯେ, ଏହା ଖ୍ରୀ:୫ମ-୬ଷ୍ଠ ଶତାବ୍ଦୀ ସମୟର କୃତି ।

ଭୁବନେଶ୍ୱରର ବୋଇତାଳ ଦେଉଳ ଖ୍ରୀ: ୮ମ ଶତାବ୍ଦୀର କୃତି । ଏହାର ଆୟତାକାର ଗର୍ଭଗୃହ ଯୁକ୍ତ ଦେଉଳର ପାଭାଗର ଖୁରାରେ ଏକ ଭିନ୍ନ ଶୈଳୀର,ଦୁଇ ସ୍ତରର କୁମ୍ଭ ଓ ବସନ୍ତ ପଟି ଦେଖାଯାଏ । ଏହାର ପଛପାଖ ବାଡ଼ରେ ପାଞ୍ଚଗୋଟି ଉପସ୍ତମ୍ଭ ରହିଥିବା ବେଳେ ପ୍ରସ୍ଥ ପାଖ ଦୁଇ ପାର୍ଶ୍ୱ ବାଡ଼ରେ ଚାରିଗୋଟି କରି ଉପସ୍ତମ୍ଭ ରହିଛି । ଏହି ଉପସ୍ତମ୍ଭ ଗୁଡ଼ିକ ବିଭିନ୍ନ ମଣ୍ଡନକୃତି ଓ ମୂର୍ତ୍ତିକଳାରେ ପରିପୂର୍ଣ୍ଣ ।




ଖାକରାଦେଉଳର ବିଭିନ୍ନ ଅଙ୍ଗ



ବୋଇତାଳ ଦେଉଳ, ଭୁବନେଶ୍ୱର

ପଛପାଖ ବାଡ଼ର ମଧ୍ୟଭାଗରେ ଅର୍ଦ୍ଧନାରୀଶ୍ୱର ଦକ୍ଷିଣ ପାଖ ବାଡ଼ରେ ପାର୍ବତୀ ଓ ଉତ୍ତର ପାଖ ବାଡ଼ରେ ଅଷ୍ଟଭୁଜା ମହିଷମର୍ଦ୍ଦିନୀ ଦୁର୍ଗା ପାର୍ଶ୍ୱଦେବତା ଭାବେ ସ୍ଥାପିତ ହୋଇଛନ୍ତି । ବାଡ଼ ଉପର ବରଣ୍ଡ ଓ ଗଣ୍ଡି ଉପରେ ତୋରଣ ସଦୃଶ ନିର୍ମାଣ କଳିଙ୍ଗ ମନ୍ଦିର କଳାରେ ଏକ ନୂତନ ପ୍ରୟୋଗ । ଏହି ଗଣ୍ଡି ଉପରେ ଥିବା 'ଖାକରା' ଶୈଳୀର ମସ୍ତକ ସମ୍ମୁଖ ଓ ପଛ ପାଖକୁ ଦୁଇ ଥାକର ଗଡ଼ାଣିଆ ଛାତ ଉପରଭାଗରେ ତିନି ଗୋଟି ଅଁଳା,କଳସ ରହିଛି । ସମ୍ମୁଖ ରାହାପାଗର ଦୁଇ ଚୈତ୍ୟପଦକ ଯୁକ୍ତ ବକ୍ରମସ୍ତକର ଊର୍ଦ୍ଧ୍ୱରେ ନଟରାଜ ଓ ନିମ୍ନ ପଦକର ସୂର୍ଯ୍ୟଙ୍କ ପ୍ରତିମା ଦେଖିବାକୁ ମିଳେ । ବୋଇତାଳ ଦେଉଳର ଜଗମୋହନ ମଧ୍ୟ ଆୟତକାର । ଏହାର ଛାତ ପରଶୁରାମେଶ୍ୱର ମନ୍ଦିରର ଜଗମୋହନ ଛାତ ଭଳି ଦୁଇଚାଳିଆ ହେଲେହେଁ, ଏହାର ଚାରି କୋଣରେ ଚାରିଗୋଟି ରେଖଦେଉଳ ସଂଯୋଗ ହୋଇଛି । ପୂର୍ବ ମୁଖର ଏହି ଜଗମୋହନ ବା ମୁଖଶାଳାର ଦୁଇ ପାର୍ଶ୍ୱ ବାଡ଼ରେ ସାଧା ଜାଲି ଯୁକ୍ତ ଦୁଇଟି ବଡ଼ ଗବାକ୍ଷ ରହିଛି ।

କେଦାର-ଗୌରୀ ପରିସର ମଧ୍ୟରେ ଥିବା ଗୌରୀ ଦେବୀଙ୍କ ମନ୍ଦିର ଭୁବନେଶ୍ୱରର ଅନ୍ୟ ଏକ ଖାକରା ଦେଉଳ । ଆକାରରେ ଛୋଟ ହେଲେହେଁ, ଉପସ୍ଥାପନା ଶୈଳୀ ଓ ଉନ୍ନତ କାରୁକଳା ନିମନ୍ତେ ଏହା ଉଲ୍ଲେଖଯୋଗ୍ୟ । ଏହି ମନ୍ଦିରଟି ନିକଟରେ ଥିବା ମୁକ୍ତେଶ୍ୱର ମନ୍ଦିରର ସମସାମୟିକ ଅର୍ଥାତ୍ ଦଶମ ଶତାବ୍ଦୀର କୃତି ଏବଂ ସମ ଗୋଷ୍ଠୀ ଶିଳ୍ପୀଙ୍କ ଦ୍ୱାରା ନିର୍ମିତ । ଧାରରେ ବିଭିନ୍ନ ଭଙ୍ଗିର ଭାରବାହାକ ମୂର୍ତ୍ତି ଥିବା ଏକ ଅନୁଚ ପୀଠ ଉପରେ ଦେଉଳଟି ଅବସ୍ଥିତ । ଏହାର ରାହା ଓ ଅନୁରାହା ପାଭାଗରେ ପଞ୍ଚକର୍ମ ରହିଥିବା ବେଳେ କନିକରେ ଚାରିକର୍ମ ଦେଖାଯାଏ । ଅନୁରାହାରେ ଥିବା ଉଚ୍ଚ

ଖାକରାମୁଣ୍ଡି ଉପରେ କୁମ୍ଭ ଓ ଉଦ୍ୟତସିଂହଯୁଗଳ ରହିଥିବା ବେଳେ କନିକ ପାଗର ଖାକରାମୁଣ୍ଡି ଉପରେ ଭାରବାହକ ମୂର୍ତ୍ତିମାନ ରହିଛି । ବାଡ଼ର ଅନ୍ତରାପାଗଗୁଡ଼ିକରେ ନିମ୍ନରୁ ଉର୍ଦ୍ଧ୍ୱକୁ କ୍ରମାନୁସାରେ ବିଭିନ୍ନ ଭଙ୍ଗିର କନ୍ୟା, ଗଜାକ୍ରାନ୍ତ ଯୁଗଳ, ନାଗ କିମ୍ବା ନାଗୀ ଓ ଉର୍ଦ୍ଧ୍ୱରେ କୌତୂହଳପୂର୍ଣ୍ଣ ଭାରବାହାକ ମୂର୍ତ୍ତିମାନ ଦେଖାଯାଏ । ଗଣ୍ଡିରେ ଥିବା ଦୁଇ ସ୍ତରର ଖାକରାମୁଣ୍ଡି ଗୁଡ଼ିକରେ କାରୁକଳା ପୂର୍ଣ୍ଣ କଳସ, ତା ଉପର ଖାକରାମୁଣ୍ଡିରେ ପୁନଶ୍ଚ କୁମ୍ଭ ଓ ମିଥୁନ ମୂର୍ତ୍ତିମାନ ରହିଛି । ଏହି ମନ୍ଦିର ଦେହରେ ଥିବା ଖାକରାମୁଣ୍ଡି ଗୁଡ଼ିକ ବିଭିନ୍ନ ଶୈଳୀର ଅଟେ । ଗୌରୀ ମନ୍ଦିର ଗଣ୍ଡିରେ ଦେଖା ଯାଉଥିବା ୫ କିମ୍ବା ୮ ସ୍ତରର ଖୁରା-ସଦୃଶ ମଣ୍ଡନକୃତି ଏକ ଭିନ୍ନ ପ୍ରୟୋଗ । ଗଣ୍ଡିର ପଛ ପାଖ ରାହାଉପରେ ଦେଖା ଯାଉଥିବା ଦୁଇ ଚୈତ୍ୟପଦକ ଯୁକ୍ତ କମନୀୟ ବକ୍ରମସ୍ତକର, ନିମ୍ନ ପଦକର ମଧ୍ୟଭାଗରେ ଏକ ଭିନ୍ନ ଶୈଳୀର କୀର୍ତ୍ତିମୁଖ ଓ ପାର୍ଶ୍ୱରେ ଶଂଖବାଦକ ଗଣମାନେ ରହିଥିବା ବେଳେ ଉର୍ଦ୍ଧ୍ୱ ପଦକରେ ପଦ୍ମ ଓ ଦୁଇ ପାର୍ଶ୍ୱରେ ନୂପୁର ପାଦିକା କନ୍ୟା ଦେଖାଯାଆନ୍ତି । ଗଣ୍ଡିର ଉର୍ଦ୍ଧ୍ୱଭାଗ ଚତୁଃପାର୍ଶ୍ୱରେ ପ୍ରସ୍ଫୁଟିତ ପଦ୍ମ ପାଖୁଡ଼ାର ଏକ ଧାର ଉପରେ ବରଣ୍ଡ ଭାବରେ ସରୁ ଢାଲିର ଏକ ପଟି କିଞ୍ଚିତ ଗଭୀରରେ ରହିଛି । ଏହା ଉପରେ ଥିବା ଦୁଇ ସ୍ତରର 'ମସ୍ତକଖାକରା' ସମ୍ପୂର୍ଣ୍ଣ ଚୂନ ପଲସ୍ତରା ଦ୍ୱାରା ଆଚ୍ଛାଦିତ ଥିବାରୁ, ତା' ଉପରର କାରୁକାର୍ଯ୍ୟ ବିଷୟରେ କୌଣସି ସୂଚନା ମିଳେ ନାହିଁ । ଗୌରୀ ମନ୍ଦିର ଖାକରା ଶୈଳୀରେ ଏକ କମନୀୟ କୃତି ।



ବାରାହୀ ମନ୍ଦିରର ପୃଷ୍ଠଦୃଶ୍ୟ, ଚଉରାଶୀ

ବିକଶିତ ନିର୍ମାଣ କୌଶଳ ଓ କମନୀୟ କାରୁକଳା ପୂର୍ଣ୍ଣ ଚଉରାଶିର ବାରାହୀ ମନ୍ଦିର ଓଡ଼ିଶାର ଖାକରା ଶ୍ରେଣୀୟ ମନ୍ଦିର ମଧ୍ୟରେ ଚରମ ଉତ୍କର୍ଷତାର ନିଦର୍ଶନ । ଏହା ଖ୍ରୀ: ୧୧ଶ ଶତାବ୍ଦୀର କୃତି ଅଟେ । ପଞ୍ଚରଥ ଶୈଳୀର ଦେଉଳ ପାଭାଗରେ ତ୍ରିକର୍ମର ନିର୍ମାଣ ରହିଛି । ଗଣ୍ଡିର ରଥକମାନଙ୍କରେ ବିଭିନ୍ନ ପ୍ରକାର ଲତା, ଡାଳିର ମଣ୍ଡନକୃତି ଦେଖା ଯାଉଥିବା ବେଳେ ଅନର୍ଥ ପାଗ ଗୁଡ଼ିକରେ ମିଥୁନ, ମୈଥୁନ ମୂର୍ତ୍ତିମାନ ଦେଖାଯାଏ । ଅନ୍ତରାପାଗ ଗୁଡ଼ିକର ଉପରେ ନାଗ-ନାଗୀ ଓ ନିମ୍ନରେ ଗଜସିଂହ ଯୁକ୍ତ ଉପସ୍ତମ୍ଭର ପରିକଳ୍ପନା ଦେଉଳ ବାଡ଼କୁ ଅଧିକ ଆକର୍ଷଣୀୟ କରି ପାରିଛି । ପାର୍ଶ୍ୱଦେବତା ଭାବରେ ଦେଉଳ ପଶ୍ଚିମ ପାଖରେ ପଦ୍ମାସନରେ ଉପବିଷ୍ଟ ସୂର୍ଯ୍ୟ ଓ ଦକ୍ଷିଣ ପାଖରେ ଦଣ୍ଡାୟମାନ ଗଣେଶଙ୍କ ମୂର୍ତ୍ତି ରହିଥିବା ବେଳେ ଉତ୍ତର ପାଖର ମୂର୍ତ୍ତିଟି ସ୍ଥାନାନ୍ତରିତ ହୋଇଯାଇଛି । ଦୁଇ ସ୍ତରର ଖାକରାମୁଣ୍ଡି ଯୁକ୍ତ ଗଣ୍ଡିର ରାହାପାଗରେ ଉନ୍ନତ ଆଳଙ୍କାରିକ ଚୈତ୍ୟପଦକ ଦେଉଳର ଶୋଭା ବର୍ଦ୍ଧନ କରେ । ତ୍ରିରଥ ଗଣ୍ଡିର ମସ୍ତକ ଉପର, ମଧ୍ୟଭାଗରେ ଅଁଳା, କଳସ ଓ ଧ୍ୱଜାଦଣ୍ଡ ରହିଥିବା ବେଳେ ଚାରିଦିଗକୁ ମୁହଁକରି ରହିଥିବା ଚାରି ଉଦ୍ୟତସିଂହଙ୍କ ମୂର୍ତ୍ତି ମଧ୍ୟ ଏକ ନୂତନ ପରିକଳ୍ପନା । ବାରାହୀ ମନ୍ଦିର ସହିତ ଥିବା ଜଗମୋହନ ଆୟତାକାର । ଏହାର ଦୁଇଚାଳିଆ ଛାତର ଧାର ଗୁଡ଼ିକରେ ମୂର୍ତ୍ତି ଓ ମଣ୍ଡନକୃତି ସହିତ ଛାତ ଉପରେ ଅଁଳା, କଳସ ରହିଛି । ବାଡ଼ ଗୁଡ଼ିକ ବିଭିନ୍ନ ମୂର୍ତ୍ତି ଓ ମଣ୍ଡନକୃତିରେ ପରିପୂର୍ଣ୍ଣ ହୋଇଥିବା ବେଳେ ଦୁଇ ପାଖରେ ଦୁଇ ବାଙ୍କ ଜାଲିର ଗବାକ୍ଷ ଦେଖାଯାଏ । ଜଗମୋହନ ପ୍ରବେଶ ଦ୍ୱାର ତୋରଣ ଖମ୍ବରେ ଥିବା ନାଗ-ନାଗୀଙ୍କ ମୂର୍ତ୍ତି ମଧ୍ୟ ଆକର୍ଷଣୀୟ ।

ଖାକରା ଶୈଳୀ ମଧ୍ୟରେ କୋଣାର୍କ ନିକଟ ବୟାଳିଶିବାଟୀ ଗ୍ରାମର ଗଙ୍ଗେଶ୍ୱରୀ ଦେବୀଙ୍କ ମନ୍ଦିର ଏକ ବ୍ୟତିକ୍ରମ । ଅନ୍ୟ ସବୁଠାରେ ଖାକରା ଦେଉଳର ଗର୍ଭଗୃହ ଆୟତାକାର ହୋଇଥିବା ବେଳେ ଏହି ମନ୍ଦିରର ବାହାର ପାଖ ଆୟତାକାର ବା ଅଣ୍ଡାକୃତି ହେଲେହେଁ ଗର୍ଭଗୃହ ବର୍ଗାକାର ଅଟେ । ଅନ୍ୟ ଖାକରା ଦେଉଳମାନଙ୍କ ସହିତ ଆୟତାକାର, ଦୁଇଚାଳିଆ ଜଗମୋହନ ଦେଖାଯାଉଥିବା ବେଳେ ଏଠାରେ ପୀଢ଼ ଶୈଳୀର ବର୍ଗାକାର ଜଗମୋହନ ରହିଛି ଏବଂ ମନ୍ଦିରଟି ଦକ୍ଷିଣମୁଖୀ ଅଟେ । ଏକ ଅନୁଚ୍ଚ ପୀଠ ଉପରେ ନିର୍ମିତ ପଞ୍ଚରଥ ଶୈଳୀ ମନ୍ଦିରର ପାଭାଗରେ ପଞ୍ଚକର୍ମ ଦେଖାଯାଏ । ଗଣ୍ଡିର ତଳ ଜଂଘର ପୀଢ଼ମୁଣ୍ଡିମାନଙ୍କରେ ବିଭିନ୍ନ ମୂର୍ତ୍ତି ସ୍ଥାନିତ ହୋଇଛି । ମଣ୍ଡନକୃତି ମଧ୍ୟରେ ଅନ୍ତରାପାଗମାନଙ୍କରେ ବିଭିନ୍ନ ପ୍ରକାର ଗଜସିଂହ ମୂର୍ତ୍ତି ରହିଥିବା ବେଳେ ଉର୍ଦ୍ଧ୍ୱରେ ଭିନ୍ନ ଭିନ୍ନ ଭଙ୍ଗିର ଅନ୍ୟ ମୂର୍ତ୍ତିମାନ ଦେଖାଯାଏ । ଚତୁଃପାର୍ଶ୍ୱର କୋଣମାନଙ୍କ ନିମ୍ନଭାଗରେ ଦିଗପାଳ ଓ ଉର୍ଦ୍ଧ୍ୱରେ ସେମାନଙ୍କ ଶକ୍ତିମାନଙ୍କୁ ସୁନ୍ଦର ଭାବରେ ଉପସ୍ଥାପିତ କରାଯାଇଛି । ଏହାର ଉପସ୍ତମ୍ଭଯୁକ୍ତ ରାହାର ଉପର ଭାଗରେ ଖାକରାମୁଣ୍ଡି ଯୁକ୍ତ ଚୈତ୍ୟପଦକ ଶୈଳୀର ବକ୍ରମସ୍ତକ ଆକର୍ଷଣୀୟ । ଦେଉଳର ପାର୍ଶ୍ୱଦେବତା ଭାବେ ପୂର୍ବ ପାଖ ବାଡ଼ରେ ଗଣେଶ ଓ ପଶ୍ଚିମ ପାଖ ବାଡ଼ରେ ଦଣ୍ଡାୟମାନ ଭଙ୍ଗିରେ ବାରାହୀଙ୍କ ସୁନ୍ଦର ପ୍ରତିମା ରହିଛି । ଦେଉଳର ଗଣ୍ଡିଉପରେ ପୀଢ଼ ସଦୃଶ ୪,୫,୪ଥାକର ଖାକରା ଶୈଳୀର ଏକ ଭିନ୍ନ ପ୍ରୟୋଗ ଦେଖିବାକୁ ମିଳେ । ଏହାର ଖାକରା ମସ୍ତକଟି ଭଗ୍ନ ହୋଇଥିବାରୁ ନିର୍ମାଣ ଶୈଳୀ ଅସ୍ପଷ୍ଟ । ଏହି ମନ୍ଦିର କୋଣାର୍କ ମନ୍ଦିରର ସମସାମୟିକ ହୋଇଥିବାରୁ ଏହାର ଜଗମୋହନଟି ମଧ୍ୟ କୋଣାର୍କ ଜଗମୋହନ ସଦୃଶ । ଜଗମୋହନର ପ୍ରବେଶ ଦ୍ୱାର ପୂର୍ବ ଓ ପଶ୍ଚିମ ପାଖ ଗବାକ୍ଷ ଉପରେ ଥିବା ଉପସ୍ତମ୍ଭ ଯୁକ୍ତ ତ୍ରିଭଙ୍ଗ ଓ ଦ୍ୱିଭଙ୍ଗ ତୋରଣଗୁଡ଼ିକ ମଧ୍ୟ ଉତ୍କଳୀୟ ମନ୍ଦିର ସ୍ଥାପତ୍ୟରେ ଏକ ଭିନ୍ନ ପ୍ରୟୋଗ । ଜଗମୋହନର ବାଡ଼ଗୁଡିକର ବର୍ଗାକାର ଓ ଆୟତାକାର କ୍ଷେତ୍ର ମାନଙ୍କରେ ବିଭିନ୍ନ ମୂର୍ତ୍ତି ଓ ମଣ୍ଡନକୃତି ଉତ୍କୀର୍ଣ୍ଣ ହୋଇଛି ।

ଅନ୍ୟ କେତେକ ମଧ୍ୟମ ଓ ଛୋଟ ଆକାରର କାରୁକଳା ବିହୀନ ନିରାଡ଼ମ୍ବର ଖାକରା ଦେଉଳ ମଧ୍ୟରେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ପରିସରରେ ଥିବା ଗୋପାଳୁଣୀ ଓ ଭୁବନେଶ୍ୱରୀଙ୍କ ଦେଉଳ, ଖୋର୍ଦ୍ଧା ନିକଟ ବଲ୍ଲପୁର ଗ୍ରାମର ଦୁର୍ଗା ମନ୍ଦିର, ବୈଦ୍ୟେଶ୍ୱରର ଦୁର୍ଗା ମନ୍ଦିର, କିଶୋରପୁରର ଚଣ୍ଡୀମନ୍ଦିର, ଭଦ୍ରଖ ନିକଟ ଅଭଣା ଗ୍ରାମର ଭଗ୍ନ ବ୍ରାହ୍ମଣୀ ମନ୍ଦିର, ବାଲେଶ୍ୱର ଜିଲ୍ଲା, ଶେରଗଡ଼ର ମହିଷମର୍ଦ୍ଦିନୀ ମନ୍ଦିର ଓ ରାଣୀପୁର-ଝରିଆଲର, ଚଉଷଠି ଯୋଗିନୀପୀଠ ନିକଟର ଏକ ଛୋଟ ଖାକରା ମନ୍ଦିର ତଥା ଅନତି ଦୂରରେ ଥିବା ଲାହାରୀ ମନ୍ଦିର ଅନ୍ୟତମ । ଏଥି ମଧ୍ୟରୁ କେତେକ ନିର୍ମାଣରେ ଖାକରା ଶୈଳୀର ମୌଳିକତା ସ୍ପଷ୍ଟ ହୁଏ । କେତେକ ମନ୍ଦିରର ପ୍ରାଚୀର ସହିତ ଥିବା ପ୍ରବେଶ ଦ୍ୱାର ଗୁଡ଼ିକରେ ମଧ୍ୟ ଖାକରା ଶୈଳୀର ନିର୍ମାଣ ଦେଖାଯାଏ । ଏହିପରି ମନ୍ଦିରମାନଙ୍କ ମଧ୍ୟରେ ରାୟଗଡ଼ା ନିକଟ ପାଇକପଡ଼ା ଗ୍ରାମର ପାତାଳେଶ୍ୱର ମନ୍ଦିର ଓ ଆନ୍ଧ୍ରରେ ଥିବା ମୁଖଲିଙ୍ଗମ୍ ମନ୍ଦିର ବେଢ଼ାର ପ୍ରବେଶ ଦ୍ୱାର ଉଲ୍ଲେଖ ଯୋଗ୍ୟ ।

ଉତ୍କଳୀୟ ଶିଳ୍ପଶାସ୍ତ୍ରମାନଙ୍କରେ ଖାକରା ମନ୍ଦିରମାନଙ୍କର ଭିନ୍ନ ଭିନ୍ନ ବର୍ଣ୍ଣନା ଦେଖିବାକୁ ମିଳେ 'ଭୁବନପ୍ରଦୀପ'ରେ ଖାକରା ଦେଉଳକୁ ମୁଖ୍ୟତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି । ଏଗୁଡ଼ିକ ହେଲା ଦ୍ରାବିଡ଼, ଭାରଭି ବା ବଲ୍ଲଭୀ ଓ କୋଶଳୀ । ତେବେ 'ଶିଳ୍ପପ୍ରକାଶ' ନାମକ ଶିଳ୍ପଶାସ୍ତ୍ରରେ ତିନୋଟି ଦେଉଳର ଉଦାହରଣ ଦିଆଯାଇ ସେଗୁଡ଼ିକୁ ତିନି ଶୈଳୀରେ ବିଭକ୍ତ କରାଯାଇଛି । ଏଥିମଧ୍ୟରେ ବୋଇତାଳ ଦେଉଳ ହେଲା 'ବୈତାଳିକ' ଶୈଳୀ, ଗୌରୀ ଦେବୀଙ୍କ ମନ୍ଦିର 'ସ୍ୱର୍ଣ୍ଣକୂଟ' ବା 'ହେମକୂଟ' ଶୈଳୀ ଏବଂ ଚଉରାଶିର ବାରାହୀ ଦେବୀଙ୍କ ମନ୍ଦିର 'କାମଗର୍ଭା' ବା 'ବିମାନମାଳିନୀ' ଶୈଳୀ ବୋଲି କୁହାଯାଇଛି । ଉଭୟ ବହିରେ ମନ୍ଦିରମାନଙ୍କର ମାପ ବା ଭାଗାନୁପାତ ମଧ୍ୟ ଉଲ୍ଲେଖ ଅଛି । ତେବେ ଏଗୁଡ଼ିକ ଉପରେ ଅଧିକ ଅଧ୍ୟୟନ ଓ ଗବେଷଣା ଅପରିହାର୍ଯ୍ୟ ।

---

* ପୌରୁଷ, ଅଗଷ୍ଟ ୧୯୯୮ରେ ପ୍ରକାଶିତ ଲେଖକଙ୍କ ସ୍ୱତନ୍ତ୍ର ପ୍ରବନ୍ଧ ।

# ଖାକରା ଦେଉଳର ଗର୍ଭଗୃହ

ଖାକରା ଦେଉଳଗୁଡ଼ିକର ଆୟତାକାର ଗର୍ଭଗୃହ ବିଷୟରେ ପୂର୍ବ ଅଧ୍ୟାୟରେ ସୂଚନା ଦିଆଯାଇଛି । ତେବେ ଓଡ଼ିଶାର କେତୋଟି ପ୍ରଖ୍ୟାତ ଖାକରା ଦେଉଳର ଗର୍ଭଗୃହର ମାପ ନେବାରେ ଜଣାଯାଏ ଯେ ଏଗୁଡ଼ିକ ସାଧାରଣତଃ ଆୟତାକାର ହେଲେହେଁ ପ୍ରତ୍ୟେକର ଭାଗାନୁପାତ ଭିନ୍ନ ଭିନ୍ନ । ଏଠାରେ ବୋଇତାଳ ଦେଉଳର ଗର୍ଭଗୃହ ୩.୩୫ମି.×୨.୪୩ ମିଟର, ସଠିକ ଅନୁପାତ ୨:୧ ନୁହେଁ । ଗୌରୀ ଦେବୀଙ୍କ ଗର୍ଭଗୃହର ମାପ ୨.୪୧ ମି. ×୧.୩୭ ମିଟର, ଅର୍ଥାତ୍ ଏହାର ସଠିକ ଅନୁପାତ ୩:୨ ନୁହେଁ । ଚଉରାଶିର ବାରାହୀ ଦେବୀଙ୍କ ଦେଉଳ ଗର୍ଭଗୃହର ମାପ ୩.୪୨ ମି. × ୧.୯୦ ମିଟର, ଅର୍ଥାତ୍ ସଠିକ ଅନୁପାତ ୨:୧ ନୁହେଁ । ଏହା ବ୍ୟତୀତ ବୟାଳିଶିବାଟୀ ଗଙ୍ଗେଶ୍ୱରୀ ଦେବୀଙ୍କ ମନ୍ଦିରର ବାହାର ପାଖ ଆୟତାକାର ବା ଅଣ୍ଡାସଦୃଶ ଚେପଟା ହୋଇ ଥିଲେହେଁ ଏହାର ଭିତର ଗର୍ଭଗୃହ ସମ୍ପୂର୍ଣ୍ଣ ବର୍ଗାକାର ଅଟେ ।

'ଭୁବନ ପ୍ରଦୀପ' ଶିଳ୍ପ ପୋଥିରେ ଖାକରା ଶୈଳୀର, ତିନି ପ୍ରକାର ଦେଉଳର ବର୍ଣ୍ଣନା ରହିଛି । ଏଗୁଡ଼ିକ ହେଲା - ଦ୍ରାବିଡ଼, ଭାରଭି ବା ବଲ୍ଲଭୀ ଓ କୋଶଳୀ । ଏଥିରେ ଦ୍ରାବିଡ଼ ଓ ଭାରଭିର (ବଲ୍ଲଭୀ) ଗର୍ଭଗୃହ ୧୬ × ୧୨ ଅର୍ଥାତ୍ ୪:୩ ଅନୁପାତ ରହିବା ବିଧେୟ ବୋଲି କୁହାଯାଇଥିବା ବେଳେ କୋଶଳୀ ଶୈଳୀ ଗର୍ଭଗୃହର ଭାଗାନୁପାତ ସଂମ୍ପର୍କରେ କିଛି ସୂଚନା ଦିଆଯାଇ ନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ବାସ୍ତବ କ୍ଷେତ୍ରରେ ପୂର୍ବ ସୂଚିତ କୌଣସି ଖାକରା ଦେଉଳର ଗର୍ଭଗୃହ ସଠିକ୍ ୪:୩ ଅନୁପାତରେ ନାହିଁ ।

ପରବର୍ତ୍ତୀ ସମୟରେ ସଂକଳିତ 'ଶିଳ୍ପପ୍ରକାଶ' ଶିଳ୍ପ ଶାସ୍ତ୍ରରେ ଖାକରା ଦେଉଳର ଗର୍ଭଗୃହର ଆକାର ନିର୍ଦ୍ଧାରଣ ନିମନ୍ତେ ଯୋଗିନୀ ଯନ୍ତ୍ର ନାମକ ଏକ ଅଙ୍କନ ପଦ୍ଧତିର ବିଶଦ ବର୍ଣ୍ଣନା ଦିଆଯାଇଛି । ଏହି ବର୍ଣ୍ଣନା ସହିତ ଥିବା ଚିତ୍ର ବା ଯନ୍ତ୍ରଟି ସାତଗୋଟି ମୌଳିକ ତ୍ରିଭୁଜ ଉପରେ ଆଧାରିତ ଏବଂ ଏହାକୁ ନେଇ ସୃଷ୍ଟି ହୋଇଥିବା ଆୟତକ୍ଷେତ୍ରର ମାପ, ପ୍ରାୟ ୧୧.୬ ସେ. ମି × ୬.୭ ସେଣ୍ଟିମିଟର ଅଟେ । ଅର୍ଥାତ୍ ଏହା ସଠିକ୍ ଭାବେ ୨:୧ ଅନୁପାତ ନୁହେଁ । ଅନ୍ୟ ଦିଗରେ ଏହାର ସହ-ସମ୍ପାଦିକା ଶ୍ରୀମତୀ ଏଲିସ୍ ବୋନର ପୁସ୍ତକର ପ୍ରାକ୍‌କଥନରେ ଏହିପରି ଆୟତାକାର କ୍ଷେତ୍ର ଅଙ୍କନ ବା ନିର୍ଦ୍ଧାରଣ ନିମନ୍ତେ ଏକ ସହଜସାଧ ଉପାୟ ରହିଛି ବୋଲି କହିଛନ୍ତି ଏବଂ ଏହି ସୂତ୍ରର ଚିତ୍ରଟି ବହିର ଚିତ୍ର ପୃଷ୍ଠା-II ରେ ଦର୍ଶାଇଛନ୍ତି । ଅଙ୍କିତ ଚିତ୍ରଟି ୩ × ୪ =୧୨ ଗୋଟି ବର୍ଗକ୍ଷେତ୍ର ଉପରେ ଆଧାରିତ ହୋଇଥିବା ବେଳେ ଏହାର ମଧ୍ୟ ଭାଗର ଦୁଇଗୋଟି ବର୍ଗ କ୍ଷେତ୍ରକୁ ଦେଉଳର ଗର୍ଭଗୃହ ଭାବେ ଦର୍ଶାଯାଇଛି । ଅର୍ଥାତ୍ ଗର୍ଭଗୃହଟିର ଭାଗାନୁପାତ ସଠିକ୍ ଭାବେ ୨:୧ ଅଟେ । ଏଣୁ ଏଠାରେ ବହିର ଦୁଇଟି ମତରେ ସମତା ନାହିଁ ।



ବୋଇତାଳ ଦେଉଳ



ଗୌରୀ ମନ୍ଦିର



ବାରାହୀ ମନ୍ଦିର

କେତୋଟି ଖାକରା ଦେଉଳ ଗର୍ଭଗୃହର ଭୂନକ୍ସା

ଉପରୋକ୍ତ ଅଧ୍ୟୟନରୁ ସ୍ପଷ୍ଟ ହୁଏ ଯେ, କଳିଙ୍ଗର ମନ୍ଦିର ସ୍ଥପତିମାନେ 'ଭୁବନ ପ୍ରଦୀପ', 'ଶିଳ୍ପପ୍ରକାଶ' କିମ୍ବା କୌଣସି ନିର୍ଦ୍ଦିଷ୍ଟ ଶିଳ୍ପଶାସ୍ତ୍ରର ପଦ୍ଧତି ଅନୁସରଣ କରିନାହାଁନ୍ତି । ଏଠାରେ ସେମାନେ ନିର୍ମାଣ କ୍ଷେତ୍ରରେ ନିଜର ସୃଜନଶୀଳ ଓ କଳାତ୍ମକ ପରିକଳ୍ପନାକୁହିଁ ରୂପ ଦେଇଛନ୍ତି କହିଲେ ଭୁଲ ହେବ ନାହିଁ । ତେବେ ଏହି ପ୍ରକାର କେତେକ କ୍ଷୁଦ୍ର ଅଧ୍ୟୟନ, ଏହି ଶିଳ୍ପଶାସ୍ତ୍ର ମାନଙ୍କ ରଚନା ସମୟ ଓ ଏଗୁଡ଼ିକରେ ଲିଖିତ ପଦ୍ଧତି, ବାସ୍ତବ କ୍ଷେତ୍ରରେ କେତେଦୂର ପ୍ରୟୋଗ ହୋଇଛି ସେବିଷୟରେ ପ୍ରଶ୍ନବାଚୀ ସୃଷ୍ଟିକରେ ।

# ଯୋଗିନୀ ମନ୍ଦିର

କାଳିକା ପୁରାଣ ସମେତ ଅନ୍ୟ କେତେକ ତନ୍ତ୍ର ଶାସ୍ତ୍ରରେ ଉଡ୍ରଦେଶକୁ ପ୍ରଥମ ତନ୍ତ୍ର ପୀଠ ବୋଲି କୁହାଯାଇଛି । ଏଣୁ ତନ୍ତ୍ର ସମ୍ପର୍କୀୟ ସ୍ଥାପତ୍ୟ ଓ କଳାରେ ଓଡ଼ିଶା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ । ଚଉଷଠି ଯୋଗିନୀ ମନ୍ଦିରଗୁଡ଼ିକ ଭାରତୀୟ ସ୍ଥାପତ୍ୟରେ ଏକ ସମ୍ପୂର୍ଣ୍ଣ ଭିନ୍ନ ପରିକଳ୍ପନା । ମଧ୍ୟଭାରତ ଓ ଉତ୍ତର-ଭାରତର ବିଭିନ୍ନ ସ୍ଥାନରେ ଥିବା ସାତଗୋଟି ଯୋଗିନୀ ମନ୍ଦିର ମଧ୍ୟରୁ ଦୁଇଟି ପ୍ରଖ୍ୟାତ ମନ୍ଦିର କେବଳ ଓଡ଼ିଶାରେ ରହିଛି । ଏଥିମଧ୍ୟରୁ ଗୋଟିଏ ପୀଠ ଭୁବନେଶ୍ୱର ନିକଟ ହୀରାପୁର ଗ୍ରାମରେ ଓ ଅନ୍ୟଟି ବଲାଙ୍ଗିର ଜିଲ୍ଲାର ରାଣୀପୁର-ଝରିଆଲ ଠାରେ ଅବସ୍ଥିତ । ଏଗୁଡ଼ିକର ନିର୍ମାଣ ସମ୍ପର୍କୀୟ କୌଣସି ତଥ୍ୟ ଶିଳ୍ପଶାସ୍ତ୍ରମାନଙ୍କରେ ଉଲ୍ଲେଖ ନଥିବା ବେଳେ ଭାରତର ବିଭିନ୍ନ ସ୍ଥାନରେ ଏକ ନିର୍ଦ୍ଦିଷ୍ଟ ମୌଳିକତାକୁ ନେଇ ଗଢ଼ି ଉଠିଥିବା ଏହି ମନ୍ଦିରଗୁଡ଼ିକୁ ଦେଖିଲେ ବିସ୍ମିତ ହେବାକୁ ପଡେ । ଏହି ପ୍ରକାର ଶିଖର ବିହୀନ, କେବଳ ଚକ୍ରାକାର ବାଡ ବା କାନ୍ଥ ଥିବା ନିର୍ମାଣର ଭିତର ପାଖ ଧାଡିରେ ଥିବା ଖୋପଗୁଡିକରେ ଚଉଷଠି ଯୋଗିନୀ ବା ତନ୍ତ୍ର ଦେବୀଙ୍କ ମୂର୍ତ୍ତି ସ୍ଥାପିତ ହୋଇଥାଏ । ଏହାର କେନ୍ଦ୍ରରେ ଏକ ଖମ୍ବଯୁକ୍ତ ମଣ୍ଡପ ମଧ୍ୟରେ ଶିବଙ୍କ ଭୈରବ ରୂପ କିମ୍ବା ନଟରାଜଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଅଧିକାଂଶ ସ୍ଥଳେ ଏହି ଚକ୍ରାକାର ମନ୍ଦିର ମଧ୍ୟକୁ ଗୋଟିଏ ପ୍ରବେଶ ପଥ ରହିଥିବା ବେଳେ କ୍ୱଚିତ ନିର୍ମାଣରେ ଦୁଇଟି ଦ୍ୱାର ଥାଏ । ଏହି ପ୍ରକାର ନିର୍ମାଣକୁ ତତ୍ତ୍ୱବିତ୍‌ମାନେ ବିଭିନ୍ନ ଶାସ୍ତ୍ରୀୟତା ଉପରେ ମତ ଦେଉଥିବା ବେଳେ ଏହା ଶକ୍ତିଚକ୍ରର ମଧ୍ୟଭାଗରେ ଶିବ ଅର୍ଥାତ୍ , ଯୋନିପୀଠ ମଧ୍ୟଭାଗରେ ଶିବଲିଙ୍ଗର ସ୍ଥିତିକୁ ବୁଝାଉ ଥିବା ସମ୍ଭବ । ଅର୍ଥାତ୍ ଏହା ପ୍ରକୃତି ଓ ପୁରୁଷ ତତ୍ତ୍ୱ ଉପରେ ଆଧାରିତ ନିର୍ମାଣ ବୋଲି ପ୍ରତୀୟମାନ ହୁଏ ।



ଯୋଗିନୀ ମନ୍ଦିର, ହୀରାପୁରର




ହୀରାପୁର ଯୋଗିନୀ ମନ୍ଦିରର ଭୂନକ୍ସା

ଏହି ଯୋଗିନୀ ପୀଠଟି ଭୁବନେଶ୍ୱର ଠାରୁ ମାତ୍ର ୫ କି.ମି, ହୀରାପୁର ଗ୍ରାମ ନିକଟ ଭାର୍ଗବୀ ନଦୀ କୂଳରେ ଅବସ୍ଥିତ । ଚକ୍ରାକାର କାନ୍ଥଥିବା ଏହି ନିର୍ମାଣର ଭିତର ପାଖରେ ଥିବା ଖୋପମାନଙ୍କରେ ଯୋଗିନୀ ବା ଦେବୀ ମୂର୍ତ୍ତିଗୁଡ଼ିକ ସ୍ଥାନିତ ହୋଇଥିବା ବେଳେ ବାହାର ପାଖ ବାଡରେ ନଅ'ଗୋଟି କାତ୍ୟାୟନୀଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଚକ୍ରାକାର ନିର୍ମାଣର ଭିତର ପାଖର ବ୍ୟାସ ପ୍ରାୟ ୮ ମିଟର ଓ ବାହାର ଗୋଲେଇର ପରିଧି ପ୍ରାୟ ୨୮ ମିଟର । ବାଡ଼ର ବାହାର ପାଖର ଉଚ୍ଚତା ପାୟ ୩ ମିଟରରୁ ସାମାନ୍ୟ କମ୍ ଏବଂ ଭିତର ପାଖରେ ଏହାର ଉଚ୍ଚତା ମାତ୍ର ୨ ମିଟର । ପୀଠର ମଧ୍ୟ ଭାଗରେ ଥିବା ଚାରିଖମ୍ବ ଯୁକ୍ତ ଚତୁଷ୍କୋଣ ମଣ୍ଡପର ଲମ୍ବ ପ୍ରାୟ ୩ ମିଟର, ପ୍ରସ୍ଥ ପ୍ରାୟ ୨.୫୦ ମିଟର ଏବଂ ଉଚ୍ଚତା ପ୍ରାୟ ୨.୭୦ ମିଟର ଅଟେ । ପୂର୍ବ ଦିଗକୁ ରହିଥିବା ଏହାର ଏକମାତ୍ର ପ୍ରବେଶ ଦ୍ୱାରର ଦୁଇକାନ୍ଥ ପ୍ରାୟ ୧.୨୦ ମିଟର ସମ୍ମୁଖକୁ ବଢ଼ିରହିଛି । ପ୍ରବେଶ ପଥଟିର ଚଉଡ଼ା ପ୍ରାୟ ୦.୯୦ ମିଟର ।

ହୀରାପୁରର ଏହି ପୀଠକୁ 'ଚଉଷଠିଯୋଗିନୀ ପୀଠ' କୁହାଯାଉଥିଲେ ହେଁ ଏହାର ଭିତର ପାଖରେ ଥିବା ୬୪ ଗୋଟି ସ୍ଥାନରେ ୬୩ଟି ଦେବୀ ପ୍ରତିମା ରହିଛି ଓ ଗୋଟିଏ ଖୋପର ମୂର୍ତ୍ତିଟି ସ୍ଥାନାନ୍ତରିତ ହୋଇଛି । ଏହି ମୂର୍ତ୍ତିଗୁଡ଼ିକର ଉଚ୍ଚତା ପ୍ରାୟ ୦.୫୦ରୁ ୦.୫୫ ମିଟର ଓ ଚଉଡା ପ୍ରାୟ ୦.୨୫ରୁ ୦.୩୦ ମିଟର । ମନ୍ଦିରଟି କନ୍ଦା ପଥରରେ ନିର୍ମିତ ହୋଇଥିବା ବେଳେ ଯୋଗିନୀ ପ୍ରତିମା

ଗୁଡିକ କଳା ମୁଗୁନି ପଥରରେ ନିର୍ମିତ । ପୀଠରେ ମୁଖ୍ୟଦେବୀ ମହାମାୟା ଦଶଭୁଜା ଓ ଅନ୍ୟ ଯୋଗିନୀ ମାନେ ଦ୍ୱିଭୁଜା କିମ୍ବା ଚତୁର୍ଭୁଜା । ପ୍ରତ୍ୟେକ ଯୋଗିନୀଙ୍କ ବାହନ ଭିନ୍ନ ଭିନ୍ନ ଓ ପ୍ରତ୍ୟେକ ବିଭିନ୍ନ ଭଙ୍ଗିରେ ଦଣ୍ଡାୟମାନ ହୋଇଥିବା ବେଳେ ବିଭିନ୍ନ ଆୟୁଧ ଧାରଣ କରିଛନ୍ତି । ବିଭିନ୍ନ ବସ୍ତ୍ରାଳଙ୍କାର ବ୍ୟତୀତ ଏମାନଙ୍କ କେଶବିନ୍ୟାସର କମନୀୟତା ଓ ବୈଚିତ୍ର୍ୟ ଉଲ୍ଲେଖଯୋଗ୍ୟ ।

ପୀଠର ବାହାର ବାଡରେ ଥିବା ନବକାତ୍ୟାୟନୀଙ୍କ ମୂର୍ତ୍ତିଗୁଡିକ କନ୍ଦା ପଥରରେ ନିର୍ମିତ । ପ୍ରତ୍ୟେକ ମୂର୍ତ୍ତି ପ୍ରାୟ ୧ ମିଟର ଉଚ୍ଚତା ଓ ୦.୫୦ ମିଟର ପ୍ରସ୍ଥ ବିଶିଷ୍ଟ । ପ୍ରବେଶ ଦ୍ୱାରର ଦୁଇ ପାର୍ଶ୍ୱରେ ଦୁଇ କାପାଳିକ ଓ ଦୁଇ ଦ୍ୱାରପାଳଙ୍କ ମୂର୍ତ୍ତି ଦେଖାଯାଏ । ଏହା ବ୍ୟତୀତ ପୀଠର ମଧ୍ୟଭାଗରେ ଥିବା ମଣ୍ଡପ ଖମ୍ବଗୁଡ଼ିକର ବାହାର ପାଖରେ, ପ୍ରତ୍ୟେକରେ ଦୁଇଟି କରି, ଚାରିଗୋଟି ଖମ୍ବରେ ଆଠଗୋଟି ମୂର୍ତ୍ତି ସ୍ଥାନିତ ହୋଇଛି । ଏଗୁଡ଼ିକ ଶିବ ଓ ଶକ୍ତିଙ୍କ ବିଭିନ୍ନ ରୂପ । ଯୋଗିନୀ ମୂର୍ତ୍ତିଗୁଡିକର ନିର୍ମାଣ ଶୈଳୀ ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରର ମୂର୍ତ୍ତିକଳା ସହିତ ବହୁଭାବରେ ସାମଞ୍ଜସ୍ୟ ରକ୍ଷାକରେ । ସୋମବଂଶୀ ଶାସନ ସମୟରେ ଶକ୍ତି ପୂଜାର ଲୋକପ୍ରିୟତା ବୃଦ୍ଧି ପାଇଥିଲା । ଏଣୁ ଏହା ଦଶମ ଶତାବ୍ଦୀର କୃତି ହୋଇଥିବା ସମ୍ଭବ । ସମ୍ପୂର୍ଣ୍ଣ ବୃକ୍ଷଲତା ଦ୍ୱାରା ଆବୃତ ହୋଇ ରହିଥିବା ମନ୍ଦିରଟିକୁ ୧୯୫୪ ସାଲରେ ଓଡ଼ିଶାର ପ୍ରଖ୍ୟାତ ଐତିହାସିକ କେଦାରନାଥ ମହାପାତ୍ର,ନିକଟସ୍ଥ ଗ୍ରାମବାସୀଙ୍କ ସହଯୋଗରେ ଆବିଷ୍କାର କରିଥିଲେ ।

ବଲାଙ୍ଗିର ଜିଲ୍ଲାର ରାଣୀପୁର-ଝରିଆଲ ଠାରେ ଥିବା ଯୋଗିନୀ ପୀଠଟି ମଧ୍ୟ ସୋମବଂଶୀ ମାନଙ୍କ କୀର୍ତ୍ତି କିନ୍ତୁ ହୀରାପୁରର ପୂର୍ବବର୍ତ୍ତୀ ହୋଇପାରେ । ପୀଠଟି ହୀରାପୁର ପୀଠ ଠାରୁ ଆକାରରେ ବଡ଼ । ଅର୍ଥାତ୍ ଏହାର ଭିତର ପାଖ ଚକ୍ରର ବ୍ୟାସ ପ୍ରାୟ ୧୪.୫୦ ମିଟର । ଏଠାରେ ୬୪ ଯୋଗିନୀଙ୍କ ନିମନ୍ତେ ୬୪ ଗୋଟି ଖୋପଥିବା ବେଳେ ବର୍ତ୍ତମାନ ମାତ୍ର ୪୮ ଟି ମୂର୍ତ୍ତି ରହିଛି ଓ ଅନ୍ୟ ମୂର୍ତ୍ତି ଗୁଡିକ ସ୍ଥାନାନ୍ତରିତ ହୋଇଛି । ହୀରାପୁରର ମୂର୍ତ୍ତିଗୁଡିକ ଭିତରପାଖ ଚଟାଣ ଠାରୁ ଅଳ୍ପ ଉଚ୍ଚରେ ରହିଥିବା ବେଳେ ଏଠାରେ ମୂର୍ତ୍ତିଗୁଡିକ ଚଟାଣଠାରୁ ପ୍ରାୟ ୧.୦୦ ମିଟର ଉଚ୍ଚରେ ସ୍ଥାନିତ ହୋଇଛି । ମୂର୍ତ୍ତିଗୁଡିକ ସ୍ଥାନୀୟ ବାଲିଆ-କନ୍ଦା ପଥରରେ ନିର୍ମିତ ଏବଂ ହୀରାପୁର ମୂର୍ତ୍ତିଗୁଡିକ ଠାରୁ ଆକାରରେ ବଡ଼ । କୌଣସି ମୂର୍ତ୍ତି ସହିତ ବାହନ ଦେଖାଯାଉନଥିବା ବେଳେ ପଥରର ଅବକ୍ଷୟ ଯୋଗୁଁ ଆୟୁଧ ଗୁଡିକ ମଧ୍ୟ ଅସ୍ପଷ୍ଟ ଦେଖାଯାଏ । ଏଠାରେ ପ୍ରତ୍ୟେକ ଯୋଗିନୀ 'ଚଉକ' ନୃତ୍ୟ ଭଙ୍ଗିରେ ଦଣ୍ଡାୟମାନ । ଏହାର କେନ୍ଦ୍ରରେ ଥିବା ବର୍ଗାକାର, ଖମ୍ବଯୁକ୍ତ ମଣ୍ଡପ ମଧ୍ୟରେ ତ୍ରିମୁଖ ଓ ଅଷ୍ଟଭୁଜ ଶିବଙ୍କ ନୃତ୍ୟମୂର୍ତ୍ତି ସହ ପାର୍ବତୀ ଓ ଗଣେଶଙ୍କୁ ଦେଖିବାକୁ ମିଳେ । ଏହାର ପ୍ରବେଶ ଦ୍ୱାରରେ ହୀରାପୁର ଭଳି କୌଣସି ସ୍ୱତନ୍ତ୍ର ପଥ ନାହିଁ, କିମ୍ବା କାପାଳିକ ଓ ଦ୍ୱାରପାଳଙ୍କ ମୂର୍ତ୍ତି ମଧ୍ୟ ସ୍ଥାନିତ ହୋଇନାହିଁ । ପୀଠର ସମ୍ମୁଖର କିଞ୍ଚିତ ବ୍ୟବଧାନରେ ଦୁଇପାର୍ଶ୍ୱରେ ଦୁଇଟି ଛୋଟ ମନ୍ଦିର ମଧ୍ୟରୁ ଗୋଟିଏ ଭଗ୍ନ ଓ ଅନ୍ୟଟି ଖାକରା ଶୈଳୀର ଅଟେ । ଏଣୁ ଏଥିରେ ପ୍ରଥମେ କୌଣସି ଦେବୀ ପ୍ରତିମା ସ୍ଥାନିତ ହୋଇଥିବା ଅନୁମାନ କରାଯାଏ ।



# ଓଡ଼ିଶାର ଇଟା ମନ୍ଦିର

ବହୁ ପ୍ରାଚୀନ କାଳରୁ ଭାରତୀୟ ସ୍ଥାପତ୍ୟରେ ଇଟାର ବ୍ୟବହାର ଦେଖାଯାଏ । ଆଜକୁ ପାଞ୍ଚହଜାର ବର୍ଷ ପୂର୍ବେ ସିନ୍ଧୁ ସଭ୍ୟତାର ମହେଞ୍ଜୋଦାରୋ, ହରପ୍ପା ଓ ସମକାଳୀନ ବହୁ ନିର୍ମାଣରେ ପର୍ଯ୍ୟାପ୍ତ ପରିମାଣର ଇଟାହିଁ ବ୍ୟବହୃତ ହୋଇଛି । ଏହାର ପରବର୍ତ୍ତୀ ସମୟରେ ଅର୍ଥାତ୍ ଖ୍ରୀ:ପୂ: ୩ୟ ଶତାବ୍ଦୀ ବେଳକୁ ପଥର ଖୋଦିତ ନିର୍ମାଣଗୁଡ଼ିକ ଦିର୍ଘସ୍ଥାୟୀ ହେବା ବିଷୟ ଉପଲବ୍ଧି କରାଯାଇଥିଲା । କିନ୍ତୁ ଯେଉଁଠାରେ ନିର୍ମାଣ ଉପଯୋଗୀ ପଥରର ଅଭାବ କିମ୍ବା ପଥର ଦୁର୍ଲଭ ହେଉଥିଲା ସେଠାରେ ବିକଳ୍ପ ଭାବେ ଇଟା ବ୍ୟବହାର ହେଉଥିଲା । ଓଡ଼ିଶାରେ ଅଧିକାଂଶ ମନ୍ଦିର ପଥରରେ ନିର୍ମିତ ହୋଇ ଥିଲେହେଁ କେତେକ ଇଟାମନ୍ଦିର ମଧ ଦେଖାଯାଏ । ପଥର ଓ ଇଟା ମନ୍ଦିରର ମୌଳିକ ଆକାର ପ୍ରକାରରେ ସମତା ରହୁଥିବା ବେଳେ ଇଟା ମନ୍ଦିରଗୁଡ଼ିକର ନିର୍ମାଣ କୌଶଳ ପଥର ମନ୍ଦିର ଠାରୁ ଅନେକାଂଶରେ ଭିନ୍ନ । ପୂର୍ବେ ବ୍ୟବହାର ହେଉଥିବା ଇଟାଗୁଡ଼ିକ ବର୍ତ୍ତମାନର ଇଟା ଠାରୁ ଯଥେଷ୍ଟ ବଡ ଓ ବିଭିନ୍ନ ଆକାର ପ୍ରକାରର ଥିଲା । ଦୃଢ଼ତା ନିମନ୍ତେ ପୂର୍ବେ ଇଟା ନିର୍ମାଣ ବେଳେ ଚକଟା ମାଟିରେ ଚଷୁ ମିଶ୍ରିତ ହେଉଥିବା ଦୃଷ୍ଟିଗୋଚର ହୁଏ ।

ଉପକୂଳରେ ପ୍ରବାହିତ ମହାନଦୀର କେତେକ ଶାଖା, ପ୍ରଶାଖା ନଦୀ ମଧ୍ୟରେ ପ୍ରାଚୀ ନଦୀ ଅନ୍ୟତମ । ଏହାର ଶାନ୍ତ, ସବୁଜ,ସମତଳ ଅବବାହିକାରେ ଏକଦା ବହୁ ମଠ, ମନ୍ଦିର ଓ ତୀର୍ଥ କ୍ଷେତ୍ର ଗଢ଼ି ଉଠିଥିଲା । ଏଣୁ ଏହାକୁ 'ପୁଣ୍ୟତୋୟା ପ୍ରାଚୀ' କୁହାଯାଏ । ଏହାର ସମତଳ ଅଞ୍ଚଳରେ ପଥର ଦୁର୍ଲଭ ହେଲେହେଁ ରାଜା ମହାରାଜାମାନଙ୍କ ପୃଷ୍ଟପୋଷକତାରେ କେତେକ ସୁନ୍ଦର ପଥର ମନ୍ଦିର ଗଢ଼ି ଉଠିଛି । ତେବେ ମଧବିତ୍ତ ଶ୍ରେଣୀର ବହୁ ସ୍ଥିତିବାନ ବ୍ୟକ୍ତି ସ୍ୱଳ୍ପ ଖର୍ଚ୍ଚରେ ଇଟା ଦେବମନ୍ଦିରଟିଏ ନିର୍ମାଣ କରି ପୁଣ୍ୟ ଅର୍ଜ୍ଜନର ଇଚ୍ଛା ତ୍ୟାଗ କରିପାରି ନାହାନ୍ତି । ଏଣୁ ଏହି ଅଞ୍ଚଳରେ ସେ ସମୟରେ ନିର୍ମିତ ବହୁ ଇଟା ମନ୍ଦିରର ଭଗ୍ନାବଶେଷ ରହିଥିବା ବେଳେ କେତେକ ଆଂଶିକ ଭଗ୍ନ ମନ୍ଦିର ଅଦ୍ୟାବଧି ଦଣ୍ଡାୟମାନ ହୋଇଥିବାର ଦେଖାଯାଏ । ତିଷ୍ଠି ରହିଥିବା ଅଧିକାଂଶ ମନ୍ଦିର ପଞ୍ଚରଥ ଶୈଳୀର ରେଖ ଦେଉଳ । ଏହା ସହିତ ପୀଢ଼ ଶୈଳୀର ଜଗମୋହନ ବା ଭଦ୍ରମନ୍ଦିର ଗୁଡ଼ିକ ଅଧିକାଂଶ ଭଗ୍ନ । ଏଗୁଡ଼ିକର ନିର୍ମାଣରେ ଇଟା ମୁଖ୍ୟ ବସ୍ତୁ ହୋଇଥିଲେହେଁ ଦ୍ୱାରବନ୍ଧର କେତେକ ଖମ୍ବ,ପାଟପଥର, ଦ୍ୱାରତଳ,ନନ୍ଦାବର୍ତ୍ତ ପାହାଚ, ଉପରର କଳସ ସମେତ କେତେକ ମୁଖ୍ୟ ସ୍ଥାନରେ ବ୍ୟବହାରର ସୁବିଧା ତଥା ଦୀର୍ଘସ୍ଥାୟୀ ନିମନ୍ତେ ପଥର ବ୍ୟବହୃତ ହୋଇଛି । କେତେକ ମନ୍ଦିରର ଚଟାଣରେ ମଧ ପଥର ବିଛାଯାଇଥିବା ଦେଖାଯାଏ । ଏହି ମନ୍ଦିରମାନଙ୍କ ମଧ୍ୟରେ କେନ୍ଦୁଲି ଗ୍ରାମର ଚଣ୍ଡୀ ମନ୍ଦିରର ଭଗ୍ନାବଶେଷ ଉପରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏକ ନୂତନ ଇଟା ମନ୍ଦିର ନିର୍ମାଣ କରିଛନ୍ତି । ପିତାପଡ଼ାର ଅଙ୍ଗେଶ୍ୱର ଶିବ ମନ୍ଦିର, ମୋଟିଆର ଦୁର୍ଗା ମନ୍ଦିର ଆଂଶିକ ମରାମତି କରା ଯାଇଛି । ଜୀଉନ୍ତିର ଇଶ୍ୱରଦେବ ଶିବମନ୍ଦିରଟି ରକ୍ଷଣାବେକ୍ଷଣରେ ଅବହେଳା ଯୋଗୁଁ କିଛିବର୍ଷ ପୂର୍ବେ ସଂପୂର୍ଣ୍ଣ ଧରାଶୟୀ ହୋଇପଡ଼ିଛି । କୃଷ୍ଣପ୍ରଶାଦଗଡ଼ଠାରେ ଏକ ଇଟା ମନ୍ଦିର ଅବହେଳିତ ଅବସ୍ଥାରେ ରହିଛି । ଏହି ମନ୍ଦିର ଗୁଡ଼ିକ ପୋଡା ଇଟାରେ ନିର୍ମିତ ହୋଇ ଥିଲେ ହେଁ ଏଥିରେ ପୋଡା ଇଟାର କୌଣସି ମୂର୍ତ୍ତିକଳା କିମ୍ବା ମଣ୍ଡନକୃତି ଦେଖାଯାଏ ନାହିଁ । ମନ୍ଦିର ଦେହରେ

ଖଞ୍ଜା ଯାଇଥିବା ପାର୍ଶ୍ୱଦେବତା, ସିଂହ, ମନ୍ଦିରଚାରିଣୀ ଇତ୍ୟାଦି ମୂର୍ତ୍ତିଗୁଡ଼ିକ ପଥରରେ ନିର୍ମିତ । ଏହି କୃତିଗୁଡ଼ିକ ଖ୍ରୀ: ୯ମ ରୁ ୧୨ଶ ଶତାବ୍ଦୀ ମଧ୍ୟର ବୋଲି ଜଣାଯାଏ । ଏହାର ପରବର୍ତ୍ତୀ ସମୟରେ କୋଣାର୍କ ସୂର୍ଯ୍ୟମନ୍ଦିର ପରିସରର ଛାୟାଦେବୀଙ୍କ ମନ୍ଦିରଟି ମଧ୍ୟ ଇଟାରେ ନିର୍ମିତ ।

ଉପାନ୍ତ ଅଞ୍ଚଳ ନୂଆପଡ଼ା ଜିଲ୍ଲାର ମାରାଗୁଡ଼ା ଠାରେ ଅନେକ ପ୍ରାଚୀନ ଧ୍ୱଂସାବଶେଷର ସନ୍ଧାନ ପାଇବା ପରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏହାର ଖନନ କାର୍ଯ୍ୟ ହାତକୁ ନେଇଥିଲେ । ଏହି ଖନନରୁ ବିଭିନ୍ନ ପ୍ରକାର ଇଟା ନିର୍ମାଣର ଅବଶେଷ ଆବିଷ୍କୃତ ହୋଇଛି । ଏହା ମଧ୍ୟରେ ପ୍ରାସାଦ, ମଠ, ସ୍ତୂପ, ବାସଗୃହ ସମେତ ବହୁଇଟା ମନ୍ଦିରର ଭଗ୍ନାବଶେଷ ଅନ୍ତର୍ଭୁକ୍ତ । ଏହି ମନ୍ଦିରଗୁଡ଼ିକ ମଧ୍ୟରୁ କେତେକ ଏକ କୋଠରୀ ଓ ଅନ୍ୟ କେତେକ ଏକାଧିକ କୋଠରୀ ବିଶିଷ୍ଟ । ଏଗୁଡ଼ିକର ଶୈଳୀ ମଧ୍ୟ ଭିନ୍ନ ଭିନ୍ନ । ପ୍ରାରମ୍ଭିକ ଅନୁଧ୍ୟାନରୁ ଜଣାଯାଏ ଯେ ଏଗୁଡ଼ିକର ଭୂନକସା ମଧ୍ୟଭାରତୀୟ କେତେକ ପ୍ରାଚୀନ ମନ୍ଦିରର ଭୂ-ନକସା ସହିତ ବହୁ ଭାବରେ ସାମଞ୍ଜସ୍ୟ ରକ୍ଷା କରେ । ଏହି ନିର୍ମାଣ ଗୁଡ଼ିକର ଉପର ଅଂଶ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇ ଥିବାରୁ ମନ୍ଦିରର ଶିଖର ବା ଛାତଗୁଡ଼ିକର ଆକାର ପ୍ରକାର ବିଷୟରେ ଅନୁମାନ କରିବା କଷ୍ଟ ସାଧ୍ୟ ଅଟେ । ଏଣୁ ଏହା ଉପରେ ଅଧିକ ଅଧ୍ୟୟନ ଓ ଗବେଷଣା ଅପରିହାର୍ଯ୍ୟ ।

ପଶ୍ଚିମ ଓଡ଼ିଶାରେ ରହିଥିବା ଅଳ୍ପ କେତୋଟି ମଧ୍ୟଯୁଗୀୟ ଇଟାମନ୍ଦିର ମଧ୍ୟରେ ରାଣୀପୁର-ଝରିଆଲର ଇନ୍ଦ୍ରଲାଥ ମନ୍ଦିର ଓ ବୁଢ଼ୀକୋମ୍ନାର ପାତାଳେଶ୍ୱର ଶିବ ମନ୍ଦିର ଉଲ୍ଲେଖଯୋଗ୍ୟ । ବଲାଙ୍ଗିର-ଖଡ଼ିଆଳ ରାସ୍ତାର ମଧ୍ୟ ଭାଗରେ ରାଣୀପୁର-ଝରିଆଲର ବହୁ ଛୋଟ ବଡ଼ ପଥର ମନ୍ଦିର ମଧ୍ୟରେ ଇନ୍ଦ୍ରଲାଥ ଏକ ମାତ୍ର ଇଟା ମନ୍ଦିର । ମୁଖ୍ୟ ଦେଉଳଟି ପ୍ରାୟ ୧.୫ ମିଟର ଉଚ୍ଚ, ୨୫ ମିଟର ଲମ୍ବ ଓ ୧୧ ମିଟର ଚଉଡ଼ା ଏକ ପୀଠ ବା ବେଦୀ ଉପରେ ନିର୍ମିତ । ସୁଉଚ୍ଚ ମନ୍ଦିରଟି ସହିତ ଜଗମୋହନ ନଥିବା ବେଳେ ଗର୍ଭଗୃହ ସମ୍ମୁଖରେ କେବଳ ଏକ ଛୋଟ କୋଠରୀ ବା ଅନ୍ତରାଳ ରହିଛି । ଦେଉଳର ପାଭାଗରେ ଚାରିକର୍ମ ବା ଚାରି ଧାରର ନିର୍ମାଣ ରହିଥିବା ବେଳେ ବାଡ଼ ଓ ଗଣ୍ଡି ଉପରେ ପାଗଗୁଡ଼ିକ ଆଲମ୍ବ ଭାବେ ରହିଛି । କନିକ ପାଗର ମୂଳ ନିର୍ମାଣ କେତେକାଂଶ ଭଗ୍ନ ହାଇଥିଲେହେଁ କେତେକ ଭୂମି ଓ ଭୂମିଅଁଳା ସ୍ପଷ୍ଟ ଦେଖାଯାଏ । ବାଡର ରାହାପାଗ ଉପର ପାର୍ଶ୍ୱଦେବତାଗୁଡ଼ିକ ସ୍ଥାନାନ୍ତରିତ ହୋଇ ଥିବାରୁ ଖୋପଗୁଡ଼ିକ ଶୂନ୍ୟ ରହିଛି । କିନ୍ତୁ ଏହାର ଉର୍ଦ୍ଧ୍ୱରେ, ଦକ୍ଷିଣ ପାଖ ଚୈତ୍ୟପଦକରେ ବରାହ ଓ ଉତ୍ତର ପାଖ ଚୈତ୍ୟପଦକରେ ବିଷ୍ଣୁଙ୍କ ନୃସିଂହ ଅବତାରର ମୂର୍ତ୍ତିଗୁଡ଼ିକ ରହିଥିବାରୁ ଏହା ଏକ ବିଷ୍ଣୁମନ୍ଦିର ହୋଇଥିବା ସୂଚନା ଦିଏ । ଏହା ବ୍ୟତୀତ ମନ୍ଦିର ଗାତ୍ରରେ ଲକୁଳୀଶ, ନଟରାଜ ଇତ୍ୟାଦି କେତୋଟି ଶୈବ ଦେବତାଙ୍କ ମୂର୍ତ୍ତି ସହିତ ପୂତନା ବଧ, କାଳୀୟଦଳନ, ଓ ବଳରାମଙ୍କ ମୂର୍ତ୍ତି ମଧ୍ୟ ଦେଖାଯାଏ । ସ୍ୱଳ୍ପ ମଣ୍ଡନକୃତି ଯୁକ୍ତ ଏହି ମନ୍ଦିରଟି ଖ୍ରୀ: ୧୧ଶ ଶତାବ୍ଦର କୀର୍ତ୍ତି ହୋଇଥିବା ସମ୍ଭବ । ମନ୍ଦିରଟିର ପୀଠ, ମସ୍ତକଭାଗ ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଥିବା ବେଳେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏହାର ପୁନଃ ନିର୍ମାଣ କରିବା ସହିତ ଅନ୍ୟ କେତେକ ମରାମତି କାର୍ଯ୍ୟ ମଧ୍ୟ କରିଛନ୍ତି ।

ବୁଢ଼ୀକୋମ୍ନାର ପାତାଳେଶ୍ୱର ଶିବ ମନ୍ଦିର, ନୂଆପଡ଼ା ଜିଲ୍ଲାର ଖଡ଼ିଆଳ ଠାରୁ ପ୍ରାୟ ୪୦ କି:ମିଟର । ନକ୍ଷତ୍ରାକାର ଭୂନକ୍ସା ଉପରେ ନିର୍ମିତ ପୂର୍ବମୁଖୀ ମନ୍ଦିରଟିର ଉଚ୍ଚତା ପ୍ରାୟ ୧୩-୧୪ ମିଟର ହେବ । ନକ୍ଷତ୍ରାକାର ନିର୍ମାଣର କୋଣଗୁଡ଼ିକ ଚତୁଃପାର୍ଶ୍ୱରେ ବାହାରି ଥିବା ମନ୍ଦିରରେ

ରାହାପାଗ ଦେଖାଯାଏ ନାହିଁ । ଏହି କାରଣରୁ ମନ୍ଦିରଟି ପାର୍ଶ୍ୱଦେବତା ବିହୀନ । ଶୈବ ମତବାଦ ସହିତ ତନ୍ତ୍ରର ପ୍ରଭାବ ହେତୁ ଏହି ପ୍ରକାର କେତେକ ମନ୍ଦିର ମହାକୋଶଳ ଓ ଦକ୍ଷିଣକୋଶଳ ଅଞ୍ଚଳରେ ନିର୍ମିତ ହୋଇଥିବା ଜଣାଯାଏ । ମନ୍ଦିର ଦେହରେ କେତେକ ସ୍ଥାନରେ ଇଟା ଉପରେ ଥିବା ଅଗଭୀର ଚୈତ୍ୟପଦକ ନକ୍ସା ମଧ୍ୟରେ ଯକ୍ଷ, ଯକ୍ଷିଣୀ, ନାଗଦେବତା ସମେତ କେତେକ ତନ୍ତ୍ର ଓ ତାନ୍ତ୍ରିକ ମାନଙ୍କ ମୂର୍ତ୍ତି କ୍ଷୟ ପ୍ରାପ୍ତ ଅବସ୍ଥାରେ ରହିଛି । ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଗର୍ଭଗୃହ ସମ୍ମୁଖର ଛୋଟ ଅନ୍ତରାଳଟି ମରାମତି କରାଯାଇଥିବା ବେଳେ ତା ସମ୍ମୁଖରେ ଥିବା ପ୍ରାଚୀନ ଖମ୍ବ ଯୁକ୍ତ ମଣ୍ଡପ ସ୍ଥାନରେ ଏକ ଆଧୁନିକ ମଣ୍ଡପ ନିର୍ମାଣ କରାଯାଇଛି ।

ଓଡ଼ିଶାର ଉତ୍ତର ଉପାନ୍ତ ଅଞ୍ଚଳରେ ବଙ୍ଗୀୟ, ବିଷ୍ଣୁପୁର ଶୈଳୀର କେତୋଟି ଇଟା ମନ୍ଦିର ଦେଖିବାକୁ ମିଳେ । ଏହା ମଧ୍ୟରେ ରାଇରଙ୍ଗପୁର ସହର ଉପକଣ୍ଠର ଇଶାନେଶ୍ୱର ମନ୍ଦିରଟି ବହୁକାରୁକାର୍ଯ୍ୟ ଓ ମୂର୍ତ୍ତିକଳା ପୂର୍ଣ୍ଣ ହେଲେହେଁ ଭଗ୍ନ ଏବଂ ଅବହେଳିତ ଅବସ୍ଥାରେ ରହିଛି । ମୟୂରଭଞ୍ଜ ଜିଲ୍ଲାର ବାରିପଦା ଠାରୁ ପ୍ରାୟ ୩୦ କି:ମିଟର ଦୂରରେ ଅବସ୍ଥିତ ହରିପୁରର ରସିକରାୟ ବା ରସିକରାଜ ମନ୍ଦିରଟି ସ୍ଥାନୀୟ ଭଞ୍ଜ ଶାସକ ମାନଙ୍କ ଦ୍ୱାରା ଖ୍ରୀ: ୧୫-୧୬ଶ ଶତାବ୍ଦୀରେ ନିର୍ମିତ ହୋଇଥିବା ଜଣାଯାଏ । ଏହା ଅଷ୍ଟଚାଳ ଶୈଳୀର ଅଟେ । ଅର୍ଥାତ୍, ବର୍ଗାକାର ଦୁଇ ମହଲା ବିଶିଷ୍ଟ ନିର୍ମାଣରେ ପ୍ରତ୍ୟେକ ମହଲାର ଚାରି ଚାଳ, ଦୁଇ ମହଲାର ଆଠଗୋଟି ଚାଳ, ଚାରିଦିଗକୁ ଗଡ଼ାଣିଆ ହୋଇ ରହିଛି । ପ୍ରାୟ ୨ ମିଟର ଉଚ୍ଚ ଏକ ବେଦୀ ଉପରେ ନିର୍ମିତ, ପଶ୍ଚିମମୁଖୀ ମନ୍ଦିରଟିର ସମ୍ମୁଖ ଭାଗରେ ତିନିଗୋଟି କାରୁକଳା ପୂର୍ଣ୍ଣ ତୋରଣ ଦେଖାଯାଏ । ଏହାର ସମ୍ମୁଖରେ ଥିବା ଏକ ବିଶାଳ ଖମ୍ବଯୁକ୍ତ ମଣ୍ଡପ ସମ୍ପୂର୍ଣ୍ଣ ଭାଙ୍ଗି ଯାଇଥିବା ବେଳେ ଖମ୍ବଗୁଡ଼ିକର ମୂଳଭାଗର ସୂଚନା ମାତ୍ର ରହିଛି । ମନ୍ଦିର କାନ୍ଥରେ ସଂଯୋଗ ହୋଇଥିବା ଅଧିକାଂଶ କାରୁକଳା ଓ ମୂର୍ତ୍ତିକଳା ଯୁକ୍ତ ପୋଡ଼ାମାଟିର ଟାଇଲ୍ ବା ଫଳକ ନଷ୍ଟ ହୋଇ ପଡିଥିବା ବେଳେ ତିଷ୍ଠି ରହିଥିବା କେତେକ କୃତିରେ ବିଭିନ୍ନ ଶୈଳୀର ଲତା, ଡ଼ାଳି, ପତ୍ର, ପୁଷ୍ପ, ନକ୍ସା ସମେତ କୃଷ୍ଣଲୀଳାର ବିଭିନ୍ନ ଆଖ୍ୟାନ ଦେଖାଯାଏ । ଏହି ମନ୍ଦିରଟି କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସଂରକ୍ଷିତ । ଏହା ବ୍ୟତୀତ ବାଲେଶ୍ୱର ସହର ଓ ତାର ଆଖପାଖ ଅଞ୍ଚଳରେ ବଙ୍ଗୀୟ ଚାଳ ଓ ରନ୍ ଶୈଳୀର କେତୋଟି ଇଟା ମନ୍ଦିର ଦେଖିବାକୁ ମିଳେ । ତେବେ, ଏଗୁଡ଼ିକ ପରବର୍ତ୍ତୀ ସମୟର କୃତି ।



ବୁଢ଼ୀକୋମନାର ଇଟାମନ୍ଦିର

## ମନ୍ଦିରର ଅନ୍ୟ କେତେକ ମୁଖ୍ୟଅଙ୍ଗ

ଗୋଟିଏ ଦଣ୍ଡାୟମାନ ମନ୍ଦିରର ନିମ୍ନରୁ ଉର୍ଦ୍ଧ୍ୱକୁ ଅର୍ଥାତ୍ ପାଦ ଠାରୁ ମସ୍ତକ ପର୍ଯ୍ୟନ୍ତ ବିଭିନ୍ନ ସ୍ତରରେ ଥିବା ଅଙ୍ଗ ପ୍ରତ୍ୟଙ୍ଗ ଓ ତା'ର ବିକାଶ ଧାରାର ସୂଚନା ପୂର୍ବ ଅଧ୍ୟାୟରେ ଦିଆଯାଇଛି । ଏହା ବ୍ୟତୀତ ମନ୍ଦିରର ଅନ୍ୟ କେତେକ ଅଙ୍ଗ ସ୍ଥାପତ୍ୟ ଶୈଳୀରେ ବିଶେଷ ସ୍ଥାନ ଅଧିକାର କରେ । ଏହି ଅଙ୍ଗଗୁଡ଼ିକ ହେଲା : - ପ୍ରଥମ ତୋରଣ ଓ ପ୍ରବେଶଦ୍ୱାର, ନନ୍ଦାବର୍ତ୍ତ ପାହାଚ, ଗବାକ୍ଷ, ସ୍ତମ୍ଭ ଓ ଉପସ୍ତମ୍ଭ, ତୋରଣ, ସିଲିଂ ଓ ବାହନସ୍ତମ୍ଭ । ଏଗୁଡ଼ିକର ସୂଚନା ଓ ବିକାଶ ଧାରାର ସମ୍ୟକ୍ ବିବରଣୀ ନିମ୍ନରେ ଦିଆଗଲା ।

## ପ୍ରଥମ ତୋରଣ ଓ ପ୍ରବେଶ ଦ୍ୱାର

କଳିଙ୍ଗ ମନ୍ଦିର ପ୍ରବେଶ ଦ୍ୱାରଗୁଡ଼ିକ ସୁପରିକଳ୍ପିତ ଓ ଆକର୍ଷଣୀୟ । ଏଥିରେ ପ୍ରଥମେ କିଛିଦୂର ସମ୍ମୁଖକୁ ରହିଥିବା ଏକ ବର୍ଗାକାର ତୋରଣ ବା ନବଗ୍ରହ-ପାଟ ଓ ତା'ର ପଛକୁ, ଗର୍ଭଗୃହ କିମ୍ବା ଜଗମୋହନ ଭିତରକୁ ପ୍ରବେଶ ନିମନ୍ତେ ଅପେକ୍ଷାକୃତ ଛୋଟ ଦ୍ୱାରଥାଏ । ଏଗୁଡ଼ିକୁ ତୋରଣ କୁହାଯାଉଥିବା ବେଳେ ଏହାର ଉପରଭାଗ ଅର୍ଦ୍ଧ-ଗୋଲାକାର କିମ୍ବା ଭାଙ୍ଗ ନଥାଇ ତଳ ପତନ ସହିତ ସମାନ୍ତରାଳ ଭାବେ ଥିବା ଏକ ସଳଖ ନିର୍ମାଣ । ଏହାର ନିର୍ମାଣରେ ବିଭିନ୍ନ ଶିଳ୍ପଶାସ୍ତ୍ରର ପଦ୍ଧତି ଅନେକାଂଶରେ ପ୍ରତିଫଳିତ ହୋଇଥାଏ । ବରାହ ମିହିରଙ୍କ ବୃହତସଂହିତାରେ କୁହାଯାଇଛି ଯେ, ଦ୍ୱାରର ମୂଳ ଏକଚତୁର୍ଥାଂଶରେ ଦ୍ୱାରପାଳ ବା ପ୍ରତିହାରୀମାନଙ୍କ ମୂର୍ତ୍ତି ରହିବା ପରେ, ଅବଶିଷ୍ଟାଂଶରେ ଶୁଭ ପକ୍ଷୀ, ଶ୍ରୀବୃକ୍ଷ, ସ୍ୱସ୍ତିକ, ମିଥୁନ ପୂର୍ଣ୍ଣଘଟ ଓ ଲତା ପୁଷ୍ପ ଇତ୍ୟାଦି ରହିବା ବିଧେୟ । ଅଧିକାଂଶ ପ୍ରାଚୀନ ମନ୍ଦିରର ଦ୍ୱାରଦେଶ ଏହି ମର୍ମରେ ମଣ୍ଡିତ ହୋଇଥିବା ଦେଖାଯାଏ । ତେବେ ପରବର୍ତ୍ତୀ ସମୟର ମନ୍ଦିରମାନଙ୍କ ଦ୍ୱାରଦେଶର ପରିକଳ୍ପନାରେ କେତେକ ପରିବର୍ତ୍ତନ କରାଯାଇଛି ।

ପ୍ରଥମ ତୋରଣ ଦୁଇ ପାର୍ଶ୍ୱର ଚତୁଷ୍କୋଣ କିମ୍ବା ଅର୍ଦ୍ଧ ଗୋଲାକାର ଉପସ୍ତମ୍ଭ ଉପରେ, ପ୍ରସ୍ଥ ଭାବେ ଥିବା ଲମ୍ବ ପଥରଟିକୁ 'ପାଟପଥର' କୁହାଯାଏ । କେତେକ ପ୍ରାଚୀନ ମନ୍ଦିରର ଏହି ପାଟପଥର ଉପରେ ଶିବଙ୍କ ଲୀଳାମୂର୍ତ୍ତି କିମ୍ବା ଅଷ୍ଟଗ୍ରହଙ୍କ ପ୍ରତିମାମାନ ଦେଖାଯାଏ । ଅନ୍ୟ କେତେକ ସ୍ଥଳେ ହସ୍ତୀମାନଙ୍କ କ୍ରୀଡ଼ା ଦୃଶ୍ୟ ମଧ ରହିଥାଏ । ଦୁଇ ପାର୍ଶ୍ୱର ଉପସ୍ତମ୍ଭ ଗୁଡ଼ିକରେ ସାଧାରଣତଃ ବିଭିନ୍ନ ପତ୍ର, ପୁଷ୍ପ ଓ ଡ଼ାଳି ନକ୍ସା, ବିଭିନ୍ନ ଭଙ୍ଗିରେ ପକ୍ଷୀ ଓ ପୂର୍ଣ୍ଣଘଟ ସ୍ଥାନିତ ହୋଇଥିବା ବେଳେ କେତେକର ନିମ୍ନ ଭାଗରେ ଗଙ୍ଗା-ଯମୁନା କିମ୍ବା ନାଗ-ନାଗୀଙ୍କ ମୂର୍ତ୍ତି ରହିଥାଏ । ପ୍ରବେଶ ଦ୍ୱାରର ଉପର-ବନ୍ଧକୁ 'ଦ୍ୱାର ଲଲାଟବିମ୍ବ କୁହାଯାଏ । ଏହି ବନ୍ଧର ମଧଭାଗରେ ସ୍ଥାନିତ ହୋଇଥିବା ଦେବ, ଦେବୀଙ୍କ ମୂର୍ତ୍ତି ଦ୍ୱାର ଲଲାଟବିମ୍ବମୂର୍ତ୍ତି ନାମରେ ପରିଚିତ । ପ୍ରାଚୀନ ମନ୍ଦିରମାନଙ୍କର ଏହି ସ୍ଥାନଗୁଡ଼ିକ ଅଧିକାଂଶ ଭଗ୍ନ ହୋଇଥିବା ବେଳେ ଲକ୍ଷ୍ମଣେଶ୍ୱର ମନ୍ଦିରରୁ ବିଚ୍ଛିନ୍ନ ହୋଇ, ରାଜ୍ୟ ସଂଗ୍ରହାଳୟରେ ରଖା ଯାଇଥିବା



ପ୍ରାଚୀନ ଶତ୍ରୁଘ୍ନେଶ୍ୱର ମନ୍ଦିରର ପ୍ରବେଶ ଦ୍ୱାର



ଏକ ମଧ୍ୟଯୁଗୀୟ ମନ୍ଦିରର ପ୍ରବେଶଦ୍ୱାର

ଏକ ଦ୍ୱାରବନ୍ଧ ଉପରର ମଧ ଭାଗରେ ଗଣେଶଙ୍କୁ ଭକ୍ତମାନେ ପୂଜାର୍ଚ୍ଚନା କରୁଥିବା ଦୃଶ୍ୟ ସହ ଗନ୍ଧର୍ବ ଓ ବିଦ୍ୟାଧରମାନଙ୍କୁ ଦେଖିବାକୁ ମିଳେ । ପରଶୁରାମେଶ୍ୱର ମନ୍ଦିରର ପ୍ରବେଶଦ୍ୱାର ଉପର ଭାଗରେ ମଧ ଏହି ମର୍ମରେ ଖୋଦିତ କଳାକୃତି ଦେଖାଯାଏ । ତାଳେଶ୍ୱର ମନ୍ଦିରର ଦ୍ୱାର ଲଲାଟବିମ୍ବରେ ଗଜଲକ୍ଷ୍ମୀଙ୍କ ସୁନ୍ଦର ପ୍ରତିମା ରହିଛି । ପ୍ରବେଶଦ୍ୱାରର ପାର୍ଶ୍ୱ-ବନ୍ଧଗୁଡ଼ିକରେ ବିଭିନ୍ନ ମଣ୍ଡନକୃତି ଯୁକ୍ତ ଏକ, ଦୁଇ କିମ୍ବା ତିନି ଧାରର ନକ୍ସା ଦେଖାଯାଏ । ସମୟେ ସମୟେ ଏହି ସ୍ଥାନ ଗୁଡ଼ିକରେ ନାରୀ କିମ୍ବା ମିଥୁନ ମୂର୍ତ୍ତିମାନ ରହିଥିବା ବେଳେ ନିମ୍ନ ଅଂଶରେ ସାଧାରଣତଃ ଦ୍ୱାରପାଳମାନଙ୍କ ମୂର୍ତ୍ତିସ୍ଥାନିତ ହୋଇଥାଏ । ଏଥିରୁ ଜଣାଯାଏ ଯେ, ପ୍ରାଚୀନ ମନ୍ଦିରମାନଙ୍କର ପ୍ରଥମ ତୋରଣ ଓ ପ୍ରବେଶ ଦ୍ୱାରର ମଣ୍ଡନକୃତିରେ କୌଣସି ନିର୍ଦ୍ଦିଷ୍ଟ ଧାରା ଅନୁସରଣ କରାଯାଉନଥିଲା ।

ମଧ୍ୟଯୁଗର ପ୍ରାରମ୍ଭ ଅର୍ଥାତ୍ ଖ୍ରୀ: ୧୦ମ ଶତାବ୍ଦୀ ଠାରୁ ନିର୍ମିତ ଅଧିକାଂଶ ମନ୍ଦିରର ତୋରଣ ଓ ପ୍ରବେଶ ଦ୍ୱାରର ମଣ୍ଡନକୃତିଗୁଡ଼ିକରେ ଏକ ନିର୍ଦ୍ଦିଷ୍ଟ ଧାରା ଦେଖିବାକୁ ମିଳେ । ପ୍ରଥମ ତୋରଣର ଦୁଇ ପାର୍ଶ୍ୱର ଉପସ୍ତମ୍ଭରେ ନାଗ-ନାଗୀଙ୍କ ପ୍ରତିମା ସମେତ ନିମ୍ନ ଭାଗରେ କୁମ୍ଭ କିମ୍ବା ଗଜସିଂହ ମୂର୍ତ୍ତି ସ୍ଥାନିତ ହୋଇଥିବା ବେଳେ ଉପର ପାଟପଥରରେ ପୂର୍ବର ଅଷ୍ଟଗ୍ରହ ପରିବର୍ତ୍ତେ ନବଗ୍ରହଙ୍କ ମୂର୍ତ୍ତି ଦେଖାଯାଏ । ପ୍ରବେଶ ଦ୍ୱାରବନ୍ଧର ଦୁଇ ପାଖରେ ସାଧାରଣତଃ ଜଳପତ୍ର, ଗେଲବ ଓ କୁଟିଳ କିମ୍ବା ପଦ୍ମପାଖୁଡ଼ା, ଗେଲବ ଓ ରଙ୍ଗଣୀ ଇତ୍ୟାଦି ତିନି ଧାରର ମଣ୍ଡନକୃତି ରହିଥାଏ । ଏହି ଧାରଗୁଡ଼ିକ ଦ୍ୱାରବନ୍ଧର ଉପରକୁ ପ୍ରସାରିତ ହୋଇଥିବା ବେଳେ, ଉପର ମଧଭାଗରେ ଦ୍ୱାରଲଲାଟବିମ୍ବ ମୂର୍ତ୍ତି ସ୍ଥାନରେ ସାଧାରଣତଃ ଗଜଲକ୍ଷ୍ମୀଙ୍କ ପ୍ରତିମା ସ୍ଥାନିତ ହୋଇଥାଏ । ଅନ୍ୟ କେତେକ ସ୍ଥଳେ ଦ୍ୱାରଲଲାଟବିମ୍ବରେ ଶିବଙ୍କ ବିଭିନ୍ନ ରୂପ, ବିଷ୍ଣୁ, ସୂର୍ଯ୍ୟ ଇତ୍ୟାଦି ଦେବତାଙ୍କ ମୂର୍ତ୍ତି ମଧ ଦେଖାଯାଏ । ଆନ୍ଧ୍ର ପ୍ରଦେଶରେ ଥିବା କଳିଙ୍ଗ ଶୈଳୀର

ମୁଖଲିଙ୍ଗମ୍ ମନ୍ଦିରପୁଞ୍ଜର,ବିଭିନ୍ନ ମନ୍ଦିର ଦ୍ୱାରଲଲାଟବିମ୍ବରେ ଭିନ୍ନ ଭିନ୍ନ ମୂର୍ତ୍ତି ରହିଛି । ଏହି ଦେବ ଦେବୀଙ୍କ ମଧ୍ୟରେ ଉମା-ମହେଶ୍ୱର, ଦୁର୍ଗା ଓ ସୂର୍ଯ୍ୟ ଅନ୍ତର୍ଭୁକ୍ତ । ଭୁବନେଶ୍ୱର ନିକଟ କଳାରାହାଙ୍ଗର ଢଳେଶ୍ୱର ମନ୍ଦିର ମୁଖଶାଳା ଓ ଭୁବନେଶ୍ୱର ରାଜାରାଣୀ ମନ୍ଦିର ମୁଖଶାଳାର ଲଲାଟବିମ୍ବରେ ଯଥାକ୍ରମେ ସରସ୍ୱତୀ,ଗଣେଶ ଓ ଲକୁଳୀଶଙ୍କ ମୂର୍ତ୍ତି ରହିଛି । ଏହି ବନ୍ଧଗୁଡ଼ିକର ନିମ୍ନ ଭାଗରେ ଦ୍ୱାରପାଳ କିମ୍ବା ଗଙ୍ଗା ଯମୁନାଙ୍କ ମୂର୍ତ୍ତିମାନ ଦେଖାଯାଏ । ଭୁବନେଶ୍ୱର ବାହାରର କେତେକ ମନ୍ଦିରରେ ଉପରୋକ୍ତ ଶୈଳୀରେ କେତେକ ବ୍ୟତିକ୍ରମ ପରିଲକ୍ଷିତ ହୁଏ ।

# ନନ୍ଦାବର୍ତ୍ତ ପାହାଚ

ପ୍ରାଚୀନ ମନ୍ଦିରମାନଙ୍କ ପ୍ରବେଶ ଦ୍ୱାରର ନିମ୍ନ ଭାଗରେ ଆୟତାକାର କିମ୍ବା କିଞ୍ଚିତ ବର୍ଗାକାର ଏକ ପାହାଚ ଥାଏ । ଏହା ଉପରେ ପାଦଦେଇ ଭକ୍ତମାନେ ଦେଉଳର ଗର୍ଭଗୃହ କିମ୍ବା ଜଗମୋହନ ମଧ୍ୟକୁ ପ୍ରବେଶ କରିଥାଆନ୍ତି । ପରବର୍ତ୍ତୀ ସମୟର ବିକଶିତ ମନ୍ଦିରମାନଙ୍କରେ ଏହି ପାହାଚର ସମ୍ମୁଖ ଭାଗ ଅର୍ଦ୍ଧଚନ୍ଦ୍ରାକାରରେ ନିର୍ମିତ ହୋଇଥିବା ବେଳେ ଏହା 'ନନ୍ଦାବର୍ତ୍ତ ପାହାଚ' ନାମରେ ପରିଚିତ ହେଲା । ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଏହି ପାହାଚଗୁଡ଼ିକର ଧାରକୁ ବିଭିନ୍ନ ଲତା, ଡ଼ାଳି, ପତ୍ର, ପୁଷ୍ପର ନକ୍ସା ଦ୍ୱାରା ମଣ୍ଡିତ କରାଯାଇଥାଏ । ଅଧିକାଂଶ ସ୍ଥଳେ ଏହି ପାହାଚର ଦୁଇ ପାର୍ଶ୍ୱରେ ଶଙ୍ଖ ଓ ତା'ନିକଟରେ ଉର୍ଦ୍ଧ୍ୱମୁଖୀ କ୍ରୋଧାନ୍ୱିତ ସିଂହର ମୂର୍ତ୍ତି ଦେଖିବାକୁ ମିଳେ । ସମୁଦ୍ରରୁ ଜାତ ଶଙ୍ଖ ପବିତ୍ରତାର ସଙ୍କେତ ହୋଇଥିବା ବେଳେ ସିଂହ ମୂର୍ତ୍ତିଟି ଅସତ୍ କର୍ମରୁ କ୍ଷାନ୍ତ ରହିବା ନିମନ୍ତେ ଭକ୍ତକୁ ସଚେତନ କରାଇ ଦେଉଥିବା ଭଳି ମନେହୁଏ । ସହଜ ଆରୋହଣ ଓ ଅବତରଣ ନିମନ୍ତେ କେତେକ ନନ୍ଦାବର୍ତ୍ତ ପାହାଚରେ ଏକାଧିକ ସୋପାନ ରହିଥାଏ । ଏହାକୁ କେତେକ ଚନ୍ଦ୍ରଶିଳା ମଧ୍ୟ କହିଥାଆନ୍ତି ।



ନନ୍ଦାବର୍ତ୍ତ ପାହାଚ

# ଗବାକ୍ଷ ଓ ଗର୍ଭିକା

ଅନେକ ପ୍ରଚୀନ କାବ୍ୟ କବିତାରେ ନାୟିକା ଗୃହ କିମ୍ବା ପ୍ରାସାଦର ଗବାକ୍ଷ ପାଙ୍କରେ ନାୟକଙ୍କୁ ଚାହିଁବା କିମ୍ବା ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥିବା ବର୍ଣ୍ଣନା ଦେଖାଯାଏ । ଗୋ-ଚକ୍ଷୁ ସଦୃଶ ଛିଦ୍ର ଥିବା ଝରକାକୁ ପୂର୍ବେ 'ଗବାକ୍ଷ' କୁହାଯାଉଥିଲା । ସେହି ମର୍ମରେ ମନ୍ଦିରରେ ଥିବା ଝରକା ଗୁଡ଼ିକୁ ଗବାକ୍ଷ କୁହାଯାଏ । ଓଡ଼ିଶାର ମନ୍ଦିରମାନଙ୍କରେ ଦେବତାଙ୍କ ଆସ୍ଥାନ ଥିବା ମୁଖ୍ୟ ଦେଉଳ ମଧ୍ୟକୁ କେବଳ ଗୋଟିଏ ପ୍ରବେଶ ପଥ ବ୍ୟତୀତ ଅନ୍ୟପାଖରେ ଆଲୋକ କିମ୍ବା ବାୟୁ ପ୍ରବେଶ ନିମନ୍ତେ କୌଣସି ବ୍ୟବସ୍ଥା ନଥାଏ । କିନ୍ତୁ ମୁଖ୍ୟ ଦେଉଳ ସହିତ ସଂଲଗ୍ନ ପୀଢ଼ ଶୈଳୀର ଜଗମୋହନ, ନାଟ ମନ୍ଦିର ଓ ଭୋଗ ମନ୍ଦିର ଗୁଡ଼ିକରେ ଗବାକ୍ଷର ବ୍ୟବସ୍ଥା ଥିବା ଦେଖାଯାଏ । ଦକ୍ଷିଣ ଓ ଉତ୍ତର ଭାରତର କେତେକ ମନ୍ଦିରର ପ୍ରଶସ୍ତ ଗବାକ୍ଷ ଭଳି କଳିଙ୍ଗ ଶୈଳୀରେ ମନ୍ଦିରର ଗବାକ୍ଷ ଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏପରି କି ମନ୍ଦିରର ଆକାର ଅନୁଯାୟୀ ଗବାକ୍ଷ ଗୁଡ଼ିକ କ୍ଷୁଦ୍ର । ଏହାର ଫଳ ସ୍ୱରୂପ ମନ୍ଦିର ମଧ୍ୟକୁ ଅଧିକ ଆଲୋକ କିମ୍ବା ବାୟୁ ପ୍ରବେଶ କରିପାରେ ନାହିଁ । ମଧ୍ୟଯୁଗୀୟ ମନ୍ଦିର ମାନଙ୍କରେ ଗବାକ୍ଷର ସ୍ଥାନ ଜଗମୋହନ ବାଡ଼ର ରାହାପାଗ ଉପରେ । ଶିଳ୍ପ ପ୍ରକାଶରେ ଗବାକ୍ଷର ନିମ୍ନ ଭାଗକୁ 'ତଳଗର୍ଭିକା' ଓ ଊର୍ଦ୍ଧ୍ୱ ଭାଗକୁ 'ଉପରଗର୍ଭିକା' କୁହାଯାଇଛି । ତଳଗର୍ଭିକାର ନିର୍ମାଣ ସାଧାରଣତଃ ପାଭାଗ ସହିତ ସମତା ରକ୍ଷା କରୁଥିବା ବେଳେ ଉପରଗର୍ଭିକାରେ ବର୍ଣ୍ଣନାତ୍ମକ ମୂର୍ତ୍ତିକଳା ଦେଖିବାକୁ ମିଳେ ।

ଅଧିକାଂଶ ପ୍ରାଚୀନ ମନ୍ଦିର ସହିତ ଜଗମୋହନ ନଥିବା ବେଳେ ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର ସହିତ ସଂପୂର୍ଣ୍ଣ ଜଗମୋହନଟିଏ ଦେଖିବାକୁ ମିଳେ । ପ୍ରାଚୀନ ଶୈଳୀର ଆୟତାକାର ଏହି ଜଗମୋହନର ରଥକ ବିହୀନ ସରଳ ବାଡ଼ ଗୁଡ଼ିକରେ ଗବାକ୍ଷ ଥିବା ଦେଖାଯାଏ । ଏହାର ସମ୍ମୁଖ ବାଡ଼ ଅର୍ଥାତ ପ୍ରବେଶ ଦ୍ୱାରର ଦୁଇ ପାର୍ଶ୍ୱରେ ଥିବା ମୂର୍ତ୍ତି ଯୁକ୍ତ ଗବାକ୍ଷଗୁଡ଼ିକ ଆକର୍ଷଣୀୟ । ଆଳମ୍ବ ଆୟତାକାର ଏହି ଗବାକ୍ଷଗୁଡ଼ିକରେ କେତେକ ବାଦକ ଓ ନର୍ତ୍ତକଙ୍କ ସୁନ୍ଦର ମୂର୍ତ୍ତି ଖୋଦିତ ହୋଇଛି । ମୂର୍ତ୍ତିର ପୃଷ୍ଠ ଭାଗ ଫଳକରେ ବ୍ୟବହାର ହୋଇନଥିବା ସ୍ଥାନ ଗୁଡ଼ିକରେ ଛିଦ୍ର କରାଯାଇ ଥିବାରୁ ସେହି ପଥ ଦେଇ ସ୍ୱଚ୍ଛ ଆଲୋକ ଓ ବାୟୁ ଜଗମୋହନ ମଧ୍ୟକୁ ପ୍ରବେଶ କରେ । ଜଗମୋହନର ଦକ୍ଷିଣ ଓ ଉତ୍ତର ପାଖ ବାଡ଼ରେ କିଞ୍ଚିତ୍ ବର୍ଗାକାର 'ଛକିଜାଲି' ଯୁକ୍ତ ଗୋଟିଏ ଗୋଟିଏ ଗବାକ୍ଷ ରହିଛି । ଏହାର ପରବର୍ତ୍ତୀ ସମୟ ଅର୍ଥାତ ଖ୍ରୀ: ୮ମ ଶତାବ୍ଦୀରେ ନିର୍ମିତ ଖାକରା ଶୈଳୀର ବୋଇତାଳ ଦେଉଳ, ଜଗମୋହନର ଦୁଇ ପାର୍ଶ୍ୱ ବାଡ଼ରେ ଥିବା ଗବାକ୍ଷଗୁଡ଼ିକର ଆକାର ପ୍ରକାର ପରଶୁରାମେଶ୍ୱର ମନ୍ଦିର ଗବାକ୍ଷ ଠାରୁ ଭିନ୍ନ । ଏହାର ଦୁଇ ପାର୍ଶ୍ୱ ବାଡ଼ରେ ପ୍ରବେଶ ପଥ ଆକାରର ଦୁଇଟି ସ୍ଥାନରେ ଧାଡ଼ି ଧାଡ଼ି ହୋଇ ରହିଥିବା କେତେକ ଚତୁଷ୍କୋଣ ଛିଦ୍ର ଏଠାରେ ଗବାକ୍ଷର କାର୍ଯ୍ୟ କରିଥାଏ । କିଞ୍ଚିତ ଉନ୍ନତ ଶୈଳୀର ଏହି ପ୍ରକାର ଗବାକ୍ଷ ମହାନଦୀ କୂଳ ସିଂହନାଥ ମନ୍ଦିରର ଜଗମୋହନରେ ମଧ ଦେଖିବାକୁ ମିଳେ । କାରୁକଳା ପୂର୍ଣ୍ଣ ଖ୍ରୀ : ୧୦ମ ଶତାବ୍ଦୀର ବିକଶିତ ମୁକ୍ତେଶ୍ୱର ମନ୍ଦିର ଜଗମୋହନର ଦୁଇ ପାର୍ଶ୍ୱ ବାଡ଼ରେ 'ବାଙ୍କଜାଲି'ର ବର୍ଗାକାର ଗବାକ୍ଷମାନ ରହିଛି । ଏଠାରେ ଖୋଦନ ଶୈଳୀରେ ସୂକ୍ଷ୍ମତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ



ମୂର୍ତ୍ତିଯୁକ୍ତ ଗବାକ୍ଷ,
ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର



ବାଙ୍କଜାଲି ଗବାକ୍ଷ,
ମୁକ୍ତେଶ୍ୱର ମନ୍ଦିର

ଗବାକ୍ଷ ଚତୁଃପାର୍ଶ୍ୱର ମଣ୍ଡନକଳା ମଧ କମନୀୟ । ଅନ୍ୟ କେତେକ ଜାଲି ଯୁକ୍ତ ଗବାକ୍ଷ ମଧରେ ବଉଦ ନିକଟ ଗନ୍ଧରାଡ଼ିର ନୀଳମାଧବ ମନ୍ଦିର ଜଗମୋହନରେ ସରୁ ପଟିଜାଲିର ଗବାକ୍ଷ ରହି ଥିବା ବେଳେ ପ୍ରାଚୀ ନଦୀ କୂଳ ଚଉରାଶି ଗ୍ରାମ ନିକଟ ବାରାହୀ ମନ୍ଦିର ଜଗମୋହନରେ ମୋଟା ପଟିଜାଲିର ଗବାକ୍ଷ ଦେଖିବାକୁ ମିଳେ ।

ଅଧିକାଂଶ ମଧ୍ୟକାଳୀନ ମନ୍ଦିରର ଗବାକ୍ଷ ଗୁଡ଼ିକରେ ବିଭିନ୍ନ ପ୍ରକାର ଜାଲି ପରିବର୍ତ୍ତେ ଆଲମ୍ବ ଦଣ୍ଡମାନ ଦେଖାଯାଏ । ସାଧାରଣତଃ ଏହି ପ୍ରକାର ଗବାକ୍ଷଗୁଡ଼ିକରେ ପାଞ୍ଚଗୋଟି ଦଣ୍ଡ ରହୁଥିବା ବେଳେ କେତେକ ମନ୍ଦିରର ଛୋଟ ଗବାକ୍ଷଗୁଡ଼ିକରେ ଚାରି କିମ୍ବା ତିନୋଟି ଦଣ୍ଡ ମଧ ଦେଖାଯାଏ । ଅଧିକାଂଶ ସ୍ଥଳେ ଦଣ୍ଡଗୁଡ଼ିକ ଉପରେ ଅର୍ଦ୍ଧସ୍ତମ୍ଭ ଓ ଅଳସକନ୍ୟା, ବାଦକ ବାଦିକା, ମିଥୁନ ଓ ବିଭିନ୍ନ ଦେବ ଦେବୀଙ୍କ ମୂର୍ତ୍ତି ଦେଖାଯାଉଥିବା ବେଳେ କେତେକ ଗବାକ୍ଷଦଣ୍ଡ ସାଧା ବା ମଣ୍ଡନକୃତି ବିହୀନ ହୋଇଥାଏ । ଆଲମ୍ବ ଦଣ୍ଡଗୁଡ଼ିକ ମଧରେ ଥିବା ଆଲମ୍ବ ଫାଙ୍କ ଦେଇ ମନ୍ଦିର ମଧକୁ ବାୟୁ ଓ ଆଲୋକ ପ୍ରବେଶ କରେ । କିନ୍ତୁ କେତେକ ମନ୍ଦିରରେ ଏହି ଫାଙ୍କ ଗୁଡ଼ିକ ସମ୍ପୂର୍ଣ୍ଣ ବନ୍ଦ ରହିଛି ।

ଭୁବନେଶ୍ୱରରେ ଥିବା କେତେକ ମନ୍ଦିରର ଆଳମ୍ବ ଦଣ୍ଡଯୁକ୍ତ ଗବାକ୍ଷ ମଧ୍ୟରେ ରାଜାରାଣୀ ମନ୍ଦିରର ଦଣ୍ଡଗୁଡ଼ିକରେ ଅର୍ଦ୍ଧସ୍ତମ୍ଭର ନମୁନା ଖୋଦିତ ହୋଇଛି । ବ୍ରହ୍ମେଶ୍ୱର ମନ୍ଦିରର ଗବାକ୍ଷ ଦଣ୍ଡ ଗୁଡ଼ିକରୁ ପ୍ରତ୍ୟେକରେ ଜଣେ ଜଣେ ଦେବକନ୍ୟା ଦଣ୍ଡାୟମାନ ହୋଇଥିବା ବେଳେ ମଧ୍ୟଭାଗରେ ଥିବା ଏକ ଦଣ୍ଡର ଦେବୀଙ୍କ ମସ୍ତକ ଉପରେ ସପ୍ତଫଣାଯୁକ୍ତ ନାଗ ଦେଖାଯାଏ । କେଦାରେଶ୍ୱର ଓ ସିଦ୍ଧେଶ୍ୱର ମନ୍ଦିରର ଗବାକ୍ଷ ଦଣ୍ଡଗୁଡ଼ିକ ପତଳା ସ୍ତମ୍ଭ ସଦୃଶ । ଲିଙ୍ଗରାଜ ମନ୍ଦିର ପରିସର ମଧ୍ୟରେ ଥିବା ପାର୍ବତୀ ମନ୍ଦିରର ଗବାକ୍ଷ ଦଣ୍ଡ ଉପରେ ସୁଲଳିତ ଭଙ୍ଗିରେ ଦଣ୍ଡାୟମାନ ହୋଇଥିବା କେତେକ୍ କନ୍ୟାମୂର୍ତ୍ତି ଦେଖିବାକୁ ମିଳେ । ଅନନ୍ତ-ବାସୁଦେବ ମନ୍ଦିରର ଫାଙ୍କ ବନ୍ଦ ଥିବା ଗବାକ୍ଷ ଦ୍ୱୟ ଭିନ୍ନ ପ୍ରକାରର । ଏଠାରେ ଦୁଇ ସ୍ତରର ଗବାକ୍ଷ ମଧ୍ୟରୁ ତଳ ଗବାକ୍ଷଦଣ୍ଡଗୁଡ଼ିକରେ ନାଗ-ନାଗୀ ମୂର୍ତ୍ତିମାନ ରହିଥିବା ବେଳେ ଉପରର ମୁଖ୍ୟ ଗବାକ୍ଷ ଦଣ୍ଡଗଡ଼ିକରେ କେତେକ ବୈଷ୍ଣବ ଦେବତା ଲଳିତ ଭଙ୍ଗିରେ ଦଣ୍ଡାୟମାନ ହୋଇଛନ୍ତି । ଏହି ଦଣ୍ଡଗୁଡ଼ିକ ଉପରେ ଯୁଗଳ ମିଥୁନ ମୂର୍ତ୍ତିମାନ ଦେଖାଯାଏ । ଯମେଶ୍ୱର ମନ୍ଦିରର ଗବାକ୍ଷ ଦଣ୍ଡ ଗୁଡ଼ିକ ସାଧା, ଅର୍ଥାତ ମଣ୍ଡନକୃତି ବିହୀନ ।

ଭୁବନେଶ୍ୱର ଓ ଭୁବନେଶ୍ୱର ବାହାରର ଚାରିଦଣ୍ଡ ଯୁକ୍ତ କେତେକ ମନ୍ଦିର ଗବାକ୍ଷ ମଧ୍ୟରେ ମେଘେଶ୍ୱର ମନ୍ଦିରରେ ଚାରି ଗୋଟି ସାଧା ଦଣ୍ଡ ଦେଖାଯାଏ । ଭୁବନେଶ୍ୱର ନିକଟ ଗାରଡ଼ିପାଞ୍ଚଣର ବୁଦ୍ଧନାଥ ମନ୍ଦିରର ଗବାକ୍ଷଦଣ୍ଡଗୁଡ଼ିକରେ ଅଳସକନ୍ୟା ମୂର୍ତ୍ତି ରହିଥିବା ବେଳେ ଏହାର ତଳ ଭାଗରେ ଗବାକ୍ଷ ଦଣ୍ଡ ସଦୃଶ ନିର୍ମାଣ ଉପରେ ନାଗ ନାଗୀ ମୂର୍ତ୍ତିମାନ ରହିଛି । ଭୁବନେଶ୍ୱର ବ୍ୟୋମୋକେଶ୍ୱର ମନ୍ଦିର ଗବାକ୍ଷ ଦଣ୍ଡରେ ଅଳସକନ୍ୟା ମୂର୍ତ୍ତିମାନ ଦେଖା ଯାଉଥିବା ବେଳେ କୋଣାର୍କର ମହାଗାୟତ୍ରୀ ମନ୍ଦିର ଗବାକ୍ଷ ଦଣ୍ଡମାନଙ୍କରେ ବିଭିନ୍ନ ବାଦ୍ୟଯନ୍ତ୍ର ଧାରଣ କରିଥିବା କନ୍ୟାମୂର୍ତ୍ତିମାନ ସ୍ଥାନିତ ହୋଇଛି । ତିନି ଦଣ୍ଡ ଯୁକ୍ତ କ୍ୱଚିତ୍ ଗବାକ୍ଷ ମଧ୍ୟରେ ଭୁବନେଶ୍ୱର ନିକଟ କଳାରାହାଙ୍ଗ ଗ୍ରାମର ଢଳେଶ୍ୱର ଶିବ ମନ୍ଦିରର ଦୁଇ ଦଣ୍ଡରେ କୁମ୍ଭସ୍ତମ୍ଭ ଦେଖାଯାଉଥିବା ବେଳେ ମଧ୍ୟଦଣ୍ଡରେ ଏକ କନ୍ୟା ମୂର୍ତ୍ତି ରହିଛି । ଏହାର



ଦଣ୍ଡଯୁକ୍ତ ଗବାକ୍ଷ, ବ୍ରହ୍ମେଶ୍ୱର ମନ୍ଦିର

ଜଗମୋହନରେ ଥିବା ଦୁଇ ଗବାକ୍ଷ ସମ୍ପୂର୍ଣ୍ଣ ଭିନ୍ନ ଶୈଳୀର । ବୟାଳିଶିବାଟି ଗ୍ରାମର ଗଙ୍ଗେଶ୍ୱରୀ ମନ୍ଦିରର ଗବାକ୍ଷ ଦ୍ୱୟରେ ବିଭିନ୍ନ ଭଙ୍ଗିରେ ଅଳସକନ୍ୟା ଦେଖାଯାଆନ୍ତି । ବାଣପୁର ଦକ୍ଷପ୍ରଜାପତି ମନ୍ଦିରର ତ୍ରିଦଣ୍ଡ ଯୁକ୍ତ ଗବାକ୍ଷର ଦୁଇ ପାର୍ଶ୍ୱରେ ସୁନ୍ଦର ନାଗ, ନାଗୀ ମୂର୍ତ୍ତି ରହିଥିବା ବେଳେ ଦଣ୍ଡଗୁଡ଼ିକ ମଣ୍ଡନକୃତି ବିହୀନ ଅଟେ ।

ଭୁବନେଶ୍ୱରର କପିଳେଶ୍ୱର ମନ୍ଦିର ପରବର୍ତ୍ତୀ ସମୟର କୃତି ହୋଇ ଥିଲେହେଁ ଏଥିରେ ଦୁଇଟି ସୁନ୍ଦର ଶୈବଗଣ ଓ ଯୋଗୀ ମୂର୍ତ୍ତି ଯୁକ୍ତ ଗବାକ୍ଷ ରହିଛି । ଉପରୋକ୍ତ ଶୈଳୀର ଗବାକ୍ଷମାନଙ୍କ ବ୍ୟତୀତ କେତେକ ମନ୍ଦିରରେ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର ଗବାକ୍ଷ ଦେଖିବାକୁ ମିଳେ । ପଶ୍ଚିମ ଓଡ଼ିଶା, ରାଣୀପୁର-ଝରିଆଲର ସୋମେଶ୍ୱର ମନ୍ଦିରର ଗବାକ୍ଷ ଜ୍ୟାମିତିକ ଛନ୍ଦ ଉପରେ ଆଧାରିତ । ଦକ୍ଷିଣ ଓଡ଼ିଶା, ରାୟଗଡ଼ା ନିକଟ ପାଁଇକପଡ଼ା ପାତାଳେଶ୍ୱର ମନ୍ଦିରର ବର୍ଗାକାର ଗବାକ୍ଷରେ ଏକ ପଦ୍ମଛନ୍ଦ ରହିଛି । ମୁଖ୍ୟତଃ ମଧ୍ୟ ଯୁଗୀୟ ମନ୍ଦିରର ସ୍ଥପତିମାନେ ବିଭିନ୍ନ ସମୟରେ ଗବାକ୍ଷ ଗୁଡ଼ିକୁ ଭିନ୍ନ ଭିନ୍ନ ମୂର୍ତ୍ତିକଳା ତଥା ମଣ୍ଡନକୃତି ଦ୍ୱାରା ଅଲଙ୍କୃତ କରିଥିବା ବେଳେ ଗବାକ୍ଷଗୁଡ଼ିକର ଚତୁଃପାର୍ଶ୍ୱ ବନ୍ଧର ମଣ୍ଡନକୃତିକୁ ମଧ୍ୟ ବେଶ୍ ଗୁରୁତ୍ୱ ଦିଆଯାଇଥିବା ଦେଖାଯାଏ ।

## ସ୍ତମ୍ଭ ଓ ଉପସ୍ତମ୍ଭ

ଦକ୍ଷିଣ ଓ ଉତ୍ତରଭାରତର ଅନେକ ମନ୍ଦିରର ମୁଖଶାଳା ବା ମୁଖମଣ୍ଡପଗୁଡ଼ିକରେ ସ୍ତମ୍ଭ ବା ଖମ୍ବମାନଙ୍କର ବହୁଳ ବ୍ୟବହାର ଦେଖାଯାଏ । କିନ୍ତୁ କଳିଙ୍ଗ ଶୈଳୀର ମନ୍ଦିରମାନଙ୍କରେ ଖମ୍ବର ବ୍ୟବହାର ଯଥେଷ୍ଟ କମ୍ । କେତେକ ପ୍ରାଚୀନ ମନ୍ଦିରର ଜଗମୋହନ ଛାତକୁ ଧରି ରଖିବା ନିମନ୍ତେ ଭିତରେ ସ୍ୱାଧୀନ ଭାବେ ଦଣ୍ଡାୟମାନ ଖମ୍ବମାନ ରହିଛି । ଏହି ମନ୍ଦିରମାନଙ୍କ ମଧ୍ୟରେ ଭୁବନେଶ୍ୱରର ପରଶୁରାମେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିରର ଜଗମୋହନ ମଧ୍ୟରେ ଚାରୋଟିକରି ନିରାଡ଼ମ୍ବର, ଚତୁଷ୍କୋଣ ଖମ୍ବ ଦେଖାଯାଉଥିବା ବେଳେ ବାଣପୁର ନିକଟ ବଙ୍କାଡ଼ର ଭଗ୍ନ ଶିବ ମନ୍ଦିର ଜଗମୋହନ ମଧ୍ୟରେ କାରୁକଳା ଓ ମୂର୍ତ୍ତି ଯୁକ୍ତ ଆଠଗୋଟି ଚତୁଷ୍କୋଣ ଖମ୍ବ ଥିବା ସୂଚନା ମିଳେ । ଏହି ଖମ୍ବମାନଙ୍କର ନିମ୍ନ ଭାଗରେ କୁମ୍ଭ ରହିଥିବାରୁ, ଏହା ପ୍ରାଚୀନ ଭାରତୀୟ 'କୁମ୍ଭ-ସ୍ତମ୍ଭର' ଅନୁକରଣ ବୋଲି ଅନୁମାନ କରାଯାଏ ।

ପଶ୍ଚିମଓଡ଼ିଶାର ଅଧିକାଂଶ ମଧ୍ୟଯୁଗୀୟ ମନ୍ଦିର ମଧ୍ୟଭାରତୀୟ ଶୈଳୀ ଦ୍ୱାରା ପ୍ରଭାବିତ । ଏହା ମଧ୍ୟରୁ କେତେକର ଜଗମୋହନ ଭିତରେ ସୁନ୍ଦର ଖମ୍ବମାନ ରହିଛି । ପାଇକମାଳ, ନୃସିଂହନାଥ ମନ୍ଦିର ମଧ୍ୟରେ ଥିବା ଖମ୍ବଗୁଡ଼ିକ ମନ୍ଦିର ଠାରୁ ଅଧିକ ପ୍ରାଚୀନ ମନେ ହୁଏ । ଏଗୁଡ଼ିକ ମୁଖ୍ୟତଃ ଚତୁଷ୍କୋଣ ହେଲେହେଁ ଅଗ୍ରଭାଗର କେତେକାଂଶ ଅଷ୍ଟକୋଣ ଓ ଏହା ଉପରେ ମୂର୍ତ୍ତିମାନ ରହିଛି । ନିମ୍ନ ଓ ଊର୍ଦ୍ଧ୍ୱରେ ଅର୍ଦ୍ଧପଦ୍ମ ନକ୍ସା ମଧ୍ୟରେ ଲମ୍ବ ଲତାମାନ ଉତ୍କୀର୍ଣ୍ଣ ହୋଇଥିବା ଦେଖାଯାଏ । ପୂଜାରୀପାଲିର ଶିବ ମନ୍ଦିରର ଜଗମୋହନ ଖମ୍ବଗୁଡ଼ିକର ନିମ୍ନ ଭାଗରେ ପୂର୍ଣ୍ଣଘଟ, ମଧ୍ୟଭାଗରେ କେତୋଟି ପ୍ରତିମା ଓ ଊର୍ଦ୍ଧ୍ୱଭାଗରେ କୀର୍ତ୍ତିମୁଖରୁ ଲମ୍ବିପଡ଼ିଥିବା ମୁକ୍ତାମାଳା ଦେଖାଯାଏ । ବଲାଙ୍ଗିର ନିକଟ ବୈଦ୍ୟନାଥ ଗ୍ରାମର କୋଶଳେଶ୍ୱର ମନ୍ଦିର ଜଗମୋହନ ଖମ୍ବ ଗୁଡ଼ିକ ମୁଖ୍ୟତଃ ଅଷ୍ଟକୋଣ ହେଲେହେଁ ଏହାର ପାଦ

ଚତୁଷ୍କୋଣ । ମଧ୍ୟଭାଗରେ ମଲ୍ଲୀଫୁଲପାଖୁଡ଼ା ଓ ଧନୁଗଣ୍ଠି କାରୁକାର୍ଯ୍ୟ ଦେଖାଯାଉଥିବା ବେଳେ ଊର୍ଦ୍ଧ୍ୱଭାଗରେ ଦୁଇ ସ୍ତର କୀର୍ତ୍ତିମୁଖରୁ ଆଲମ୍ବ ପୁଷ୍ପ ଓ ମୁକ୍ତାମାଳାମାନ ଲମ୍ବି ପଡ଼ିଛି । ସୋନପୁର ନିକଟ ଚରଦାର ଶିବମନ୍ଦିର ସମ୍ମୁଖ ମଣ୍ଡପର ସ୍ତମ୍ଭ ଗୁଡ଼ିକ ମୁଖ୍ୟତଃ ଚତୁଷ୍କୋଣ ଓ ଊର୍ଦ୍ଧ୍ୱଭାଗ ଅଷ୍ଟକୋଣ ଅଟେ । ମଧ୍ୟଭାଗରେ ଫୁଲ ନକ୍ସାର ଦୁଇ ଧାର ବା ପଟି କାରୁ କାର୍ଯ୍ୟ ରହିଥିବା ବେଳେ ନିମ୍ନ ଓ ଊର୍ଦ୍ଧ୍ୱଭାଗରେ କୀର୍ତ୍ତିମୁଖରୁ ମୁକ୍ତାମାଳ ଝରିଛି । ଏହି ସ୍ତମ୍ଭର ଅଗ୍ରଭାଗରେ ଭାରରକ୍ଷକ ଓ ଦୁଇପାଖ ବକ୍ରବନ୍ଧନୀ ବା ବ୍ରାକେଟ୍ ଗୁଡ଼ିକରେ ଉଡ୍ଡୀୟମାନ ଗନ୍ଧର୍ବମାନଙ୍କ ମୂର୍ତ୍ତି ଶୋଭା ପାଉଛି ।

ଭିନ୍ନ ଭିନ୍ନ ଶୈଳୀର ଅନ୍ୟ ଦୁଇ ପ୍ରକାର ସୁନ୍ଦର ସ୍ତମ୍ଭ, ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ସମ୍ମୁଖ ତୋରଣରେ ଓ କଟଣୀ ନିକଟ କାକୁଡ଼ିଆ ଗ୍ରାମର ଗୋପୀନାଥ ମନ୍ଦିର ପାର୍ଶ୍ୱଦେବତାମାନଙ୍କ ନିମନ୍ତେ ଥିବା ନିଶାମନ୍ଦିରରେ ଦେଖାଯାଏ । ମୁକ୍ତେଶ୍ୱର ମନ୍ଦିର ତୋରଣର ସ୍ତମ୍ଭଗୁଡ଼ିକର ନିମ୍ନଭାଗ ବର୍ଗାକାର ଓ ଏହା ଦେହରେ ଛୋଟ ଛୋଟ ଦେଉଳର ଆକୃତି ମଧ୍ୟରେ କେତେକ ପ୍ରତିମା ଦେଖାଯାଉଥିବା ବେଳେ ଚାରି କୋଣରେ ଗଜାକ୍ରାନ୍ତ ସିଂହ ମୂର୍ତ୍ତିମାନ ରହିଛି । ଏହି ସ୍ତମ୍ଭ ମାନଙ୍କର ମଧ୍ୟଭାଗ ଷୋଡ଼ଶକୋଣ ବିଶିଷ୍ଟ ଓ ନିରାଡ଼ମ୍ବର । ଉପରଭାଗରେ କୀର୍ତ୍ତିମୁଖରୁ ଲମ୍ବିଥିବା ମୁକ୍ତାମାଳା ଓ ଝରା, ଊର୍ଦ୍ଧ୍ୱରେ ଆମଳକ







ବିଭିନ୍ନ ପ୍ରକାର ଉପସ୍ତମ୍ଭ

ସଦୃଶ ବୃତ୍ତାକାର ନିର୍ମାଣ ଓ ପଦ୍ମ ପାଖୁଡ଼ାଗୁଡ଼ିକ ଖମ୍ବର ଶୋଭା ବର୍ଦ୍ଧନ କରୁଛି । କାକୁଡ଼ିଆର ଗୋପୀନାଥ ମନ୍ଦିରର ଖମ୍ବଗୁଡ଼ିକ ମୁଖ୍ୟତଃ ଚତୁଷ୍କୋଣ ହେଲେହେଁ ପ୍ରତ୍ୟେକ ପାଖ ତ୍ରିରଥ ଶୈଳୀର ଅଟେ । ଏହାର ନିମ୍ନ ଓ ଊର୍ଦ୍ଧ୍ବଭାଗ କିଛିବ୍ ଚଉଡ଼ା ହୋଇଥିବା ବେଳେ ସମ୍ପୂର୍ଣ୍ଣ ଖମ୍ବ ବିଭିନ୍ନ ପ୍ରକାର ଡ଼ାଳି, ଲତା, ପତ୍ର, ପୁଷ୍ପ ମଣ୍ଡନକୃତିରେ ପରିପୂର୍ଣ୍ଣ ।

କେତେକ ମଧ୍ୟଯୁଗୀୟ ମନ୍ଦିରର ନାଟମଣ୍ଡପରେ ବିଭିନ୍ନ ପ୍ରକାର ଖମ୍ବ ଦେଖିବାକୁ ମିଳେ । ଏହା ମଧ୍ୟରେ ଭୁବନେଶ୍ୱର ନିକଟ କଳାରାହାଙ୍ଗର ଜଳେଶ୍ୱର ମନ୍ଦିର, ନିଆଳିର ଶୋଭନେଶ୍ୱର ମନ୍ଦିର ଭୁବନେଶ୍ୱରର ଯମେଶ୍ୱର ମନ୍ଦିର ଓ କୋଣାର୍କ ସୂର୍ଯ୍ୟ ମନ୍ଦିରର ନାଟମଣ୍ଡପ ଖମ୍ବଗୁଡ଼ିକ ଉଲ୍ଲେଖଯୋଗ୍ୟ । ଏହିସବୁ ନାଟମଣ୍ଡପଗୁଡ଼ିକର ଅସ୍ଥାୟୀ ଛାତଗୁଡ଼ିକ ଖମ୍ବମାନଙ୍କ ଉପରେ ରହିଥିବା ଜଣାଯାଏ । ନିଆଳିର ଶୋଭନେଶ୍ୱର ଓ ଭୁବନେଶ୍ୱର ଜମେଶ୍ୱରର ଭଗ୍ନ ନାଟମଣ୍ଡପ ଉପରେ ଦଣ୍ଡାୟମାନ ହୋଇଥିବା ଖମ୍ବ ଗୁଡ଼ିକର ମୂଳଭାଗ ଚତୁଷ୍କୋଣ , ମଧ୍ୟଭାଗ ଅଷ୍ଟକୋଣ ଓ ପୁଣି ଊର୍ଦ୍ଧ୍ବଭାଗ ଚତୁଷ୍କୋଣ ଅଟେ । ଯମେଶ୍ୱର ମନ୍ଦିର ଖମ୍ବଗୁଡ଼ିକର ଉଚ୍ଚତା ପ୍ରାୟ ୧.୫୦ରୁ ୨.୦୦ମିଟର । କୋଣାର୍କ ବ୍ୟତୀତ ଅନ୍ୟ ନାଟମଣ୍ଡପ ଖମ୍ବ ଗୁଡ଼ିକ ସାମାନ୍ୟ ଭିନ୍ନତା ସହ ପ୍ରାୟ ଏହି ଆକାରର । ଲିଙ୍ଗରାଜ ମନ୍ଦିର ସହିତ ଥିବା ନାଟମନ୍ଦିରର ପୀଢ ଶୈଳୀର ଛାତକୁ ଧରି ରଖିବା ପାଇଁ ଭିତରେ ଚାରିଗୋଟି ନିରାଡ଼ମ୍ବର ଚତୁଷ୍କୋଣ ଖମ୍ବ ରହିଛି । ଏହି ମନ୍ଦିରର ଭୋଗମନ୍ଦିରରେ ତ୍ରିରଥ ଶୈଳୀର ଚାରିଗୋଟି କାରୁକଳାପୂର୍ଣ୍ଣ ଖମ୍ବ ମଧ୍ୟ ଦେଖାଯାଏ । ମୟୂରଭଞ୍ଜ ଜିଲ୍ଲାର ଖିଚିଂ ଠାରେ ଏକ ସ୍ୱତନ୍ତ୍ର ମଣ୍ଡପର କେବଳ ଚଉଦଗୋଟି ଖମ୍ବ ଦଣ୍ଡାୟମାନ ହୋଇଛି । ଏଗୁଡ଼ିକ ମଧ୍ୟ ଅସ୍ଥାୟୀ ଛାତକୁ ଧରି ରଖିଥିବା ମଣ୍ଡପର ଚତୁଷ୍କୋଣ ଓ ଅଷ୍ଟକୋଣ ବିଶିଷ୍ଟ ନିରାଡ଼ମ୍ବର ଖମ୍ବ ଅଟେ ।

ଗୋଲ କିମ୍ବା କୋଣବିଶିଷ୍ଟ ମୁକ୍ତଭାବେ ଦଣ୍ଡାୟମାନ ହୋଇଥିବା ଖମ୍ବ ବ୍ୟତୀତ ମନ୍ଦିର ଦେହରେ ଅର୍ଥାତ ବାଡ଼ ସହିତ ଯୋଗ ହୋଇଥିବା ଖମ୍ବ ସଦୃଶ ନିର୍ମାଣଗୁଡ଼ିକୁ 'ଉପସ୍ତମ୍ଭ' କୁହାଯାଏ । କେତେକ ପ୍ରାଚୀନ ମନ୍ଦିର ଯଥା ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ, ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରର ପ୍ରବେଶ ଦ୍ୱାର ସହିତ ଥିବା ସମ୍ମୁଖ ତୋରଣର ଦୁଇ ପାଖ କୁଡ଼ିଗୁଡ଼ିକ ଉପସ୍ତମ୍ଭ ଅଟେ । ଏହାର ପରବର୍ତ୍ତୀ ସମୟ ଅର୍ଥାତ୍ ଖ୍ରୀ: ୮ମ-୯ମ ଶତାବ୍ଦୀର କେତେକ ବିକଶିତ ମନ୍ଦିରର ବାଡ଼ ଦେହରେ ସୁନ୍ଦର ଉପସ୍ତମ୍ଭମାନ ରହିଛି । ବୋଇତାଳ ଦେଉଳର ଏହି ପ୍ରକାର କେତୋଟି ଉପସ୍ତମ୍ଭର ନିମ୍ନ ଭାଗରେ ଖୁରା, କୁମ୍ଭ ଓ ମିଥୁନ ମୂର୍ତ୍ତି, ମଧ୍ୟଭାଗରେ ବର୍ଗାକାର ଏକ ସ୍ଥାନ ଉପରେ ତିନି ଉଦ୍ୟତସିଂହଙ୍କ ଏକ କଳାତ୍ମକ ରଚନା, ଧନୁଗଣ୍ଠି ନକ୍ସା ଉପରେ 'ଅର୍ଦ୍ଧପଦ୍ମ' ରହିଥିବା ବେଳେ ଅଗ୍ର ଭାଗର ପୂର୍ଣ୍ଣଘଟ ଉପରେ ପଦ୍ମପାଖୁଡ଼ା ଓ ତା'ରି ଉପରେ ସିଂହ ଯୁଗଳ ବିପରୀତ ମୁଖ ହୋଇ ହସ୍ତୀ ଉପରେ ବସିଥିବା ଦେଖାଯାଏ । ଶିଶିରେଶ୍ୱର ଜଗମୋହନର ସଂକୀର୍ଣ୍ଣ ଉପସ୍ତମ୍ଭଗୁଡ଼ିକର ଖୁରା, କୁମ୍ଭ, ମଧ୍ୟଭାଗରେ ରତିକେରା ଡ଼ାଳି ଓ ଉପର ଭାଗରେ ପୁନଃ ପୂର୍ଣ୍ଣଘଟ ପୁନରାବୃତ୍ତି ହୋଇଛି । ଏହି ସମୟର ଅନ୍ୟ କେତେକ ମନ୍ଦିରର ବାଡ଼ମାନଙ୍କରେ ମଧ୍ୟ ବିଭିନ୍ନ ପ୍ରକାର କାରୁକଳା ଯୁକ୍ତ ଉପସ୍ତମ୍ଭମାନ ଦେଖାଯାଏ ।

ଅଧିକାଂଶ ମଧ୍ୟଯୁଗୀୟ ମନ୍ଦିରର ପ୍ରବେଶ ତୋରଣର ଦୁଇ ପାର୍ଶ୍ୱ ଉପସ୍ତମ୍ଭ ଗୁଡ଼ିକ ଅର୍ଦ୍ଧଗୋଲାକାର ଏବଂ ଏଥିରେ ନାଗ, ନାଗୀ ମୂର୍ତ୍ତି ଦେଖାଯାଆନ୍ତି । କେତେକ ସ୍ଥଳେ ପ୍ରତ୍ୟେକ ଉପସ୍ତମ୍ଭରେ ନାଗ-ନାଗୀ ଯୁଗଳ ମଧ୍ୟ ରହିଥିବା ଦେଖାଯାଏ । ଅନ୍ୟ କେତେକ ମନ୍ଦିରର ପ୍ରବେଶ ଦ୍ୱାର ଦୁଇ ପାର୍ଶ୍ୱରେ ନାଗ-ନାଗୀ ବିହୀନ କେବଳ କାରୁକାର୍ଯ୍ୟ ଯୁକ୍ତ ଦୁଇଗୋଟି ସୁନ୍ଦର ଖମ୍ବ ଥିବାର ସୂଚନା ମିଳେ । ଭୁବନେଶ୍ୱରର ଯମେଶ୍ୱର ମନ୍ଦିରରେ ଏହି ସ୍ତମ୍ଭର ଭଗ୍ନାବଶେଷ ରହିଥିବା ବେଳେ ବଉଦ କପିଳେଶ୍ୱର ମନ୍ଦିରରେ ଏହି ପ୍ରକାର ଦୁଇଟି ସମ୍ପୂର୍ଣ୍ଣ ଖମ୍ବ ଦେଖାଯାଏ । ଏହି ସମୟର ମନ୍ଦିରମାନଙ୍କ ପାଗଗୁଡ଼ିକର କଳାତ୍ମକ ବିକାଶ ଯୋଗୁଁ ଦୁଇ ପାଗ ମଧ୍ୟସ୍ଥଳୀରେ 'ଅନ୍ତରା' ବା କନ୍ଦିମାନ ସୃଷ୍ଟି ହୋଇଥିଲା । ଅଧିକ ଆକର୍ଷଣୀୟ କରିବା ନିମନ୍ତେ ଏହି ସ୍ଥାନ ଗୁଡ଼ିକରେ ଉପସ୍ତମ୍ଭ ସଦୃଶ ଅନ୍ତରାପାଗମାନଙ୍କର ପରିକଳ୍ପନା କରାଯିବା ସଙ୍ଗେ ସଙ୍ଗେ ଏଥିରେ ନାଗ, ନାଗୀ ପ୍ରତିମାମାନ ଯୋଗ କରାଯାଇଛି । କେତେକ ସ୍ଥଳେ ଏହି ଉପସ୍ତମ୍ଭମାନଙ୍କରେ ଅନ୍ୟ ମଣ୍ଡନକୃତି ମଧ୍ୟ ଦେଖିବାକୁ ମିଳେ । ପୀଢ଼ ଶୈଳୀର ଜଗମୋହନ, ଭୋଗମନ୍ଦିର ଓ ନାଟମନ୍ଦିର ଭିତରପାଖ ବାଡ଼ ସହିତ ମଧ୍ୟ ସାଧା କିମ୍ବା ସ୍ୱଳ୍ପମଣ୍ଡନକଳା ଯୁକ୍ତ ଉପସ୍ତମ୍ଭମାନ ଦେଖାଯାଏ ।

## ତୋରଣ

ଦକ୍ଷିଣ ଓ ଉତ୍ତରଭାରତୀୟ ମନ୍ଦିର ସ୍ଥାପତ୍ୟରେ ବିଭିନ୍ନ ଆକାର ପ୍ରକାରର ତୋରଣ ବହୁଳ ଭାବରେ ଦେଖାଯାଉଥିବା ବେଳେ କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ଏହାର ବ୍ୟବହାର ଯଥେଷ୍ଟ କମ୍ । ତେବେ ଓଡ଼ିଶାର ମନ୍ଦିରମାନଙ୍କ ସହିତ ଦେଖା ଯାଉଥିବା ଅଳ୍ପ ସଂଖ୍ୟକ ତୋରଣକୁ ମୁଖ୍ୟତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା- ମଣ୍ଡନଧର୍ମୀ ତୋରଣ ଓ ସ୍ଥାପତ୍ୟର ଅଙ୍ଗ ଭାବେ ନିର୍ମିତ ତୋରଣ । ପ୍ରଥମ ପ୍ରକାର ମଣ୍ଡନଧର୍ମୀ ତୋରଣ ଗୁଡ଼ିକ ମନ୍ଦିର ଦେହର ବାଡ଼ରେ, ଗଣ୍ଡିରେ କିମ୍ବା ଦେବ ଦେବୀ ମୂର୍ତ୍ତିର ପଶ୍ଚାତ୍ ଭାଗରେ ଅନୁଚ୍ଚ ଶୈଳୀରେ ଖୋଦିତ ହୋଇଥାଏ । ଏଗୁଡ଼ିକ ମୁଖ୍ୟତଃ ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଉଦ୍ଦିଷ୍ଟ । ଦ୍ୱିତୀୟ ପ୍ରକାର ତୋରଣଗୁଡ଼ିକ, ଦଣ୍ଡାୟମାନ ଦୁଇ ଖମ୍ବ କିମ୍ବା ବାଡ଼ରେ ଥିବା ପ୍ରବେଶ ଦ୍ୱାର ସହିତ ଦେଖାଯାଏ । ପ୍ରତ୍ୟେକ ତୋରଣର ଉପର ଭାଗ ଅର୍ଦ୍ଧଚନ୍ଦ୍ରାକାର କିମ୍ବା ବିଭିନ୍ନ ଭାଙ୍ଗ ଦ୍ୱାରା ବିଭକ୍ତ ହୋଇଥିବା ବେଳେ ଅଧିକାଂଶ ସ୍ଥଳେ ଏହି ତୋରଣମାନଙ୍କର ଦୁଇ ପାର୍ଶ୍ୱରେ ମାତଙ୍ଗ-ମକର ମୁଖ ଓ ଊର୍ଦ୍ଧ୍ୱର କେନ୍ଦ୍ରରେ କୀର୍ତ୍ତିମୁଖ ମଣ୍ଡନକୃତି ରହିଥାଏ ।

ପ୍ରାଚୀନ ନିର୍ମାଣ ମଧ୍ୟରେ, ଭୁବନେଶ୍ୱରର ବୋଇତାଳ ଦେଉଳ ବକ୍ରମସ୍ତକର ପରିକଳ୍ପନା ବାଡ଼ ଓ ଗଣ୍ଡି ଉପରେ ତୋରଣାକୃତି ମଣ୍ଡନକୃତି ସହିତ ଦେଖାଯାଏ । ଲିଙ୍ଗରାଜ ମନ୍ଦିର ଭୋଗ ମନ୍ଦିରର ସମ୍ମୁଖ ଓ ଦୁଇ ପାର୍ଶ୍ୱର ପ୍ରବେଶ ଦ୍ୱାରଗୁଡ଼ିକ ଅର୍ଦ୍ଧ-ଗୋଲାକର ଉପସ୍ତମ୍ଭ ଓ ତ୍ରିଭଙ୍ଗ ତୋରଣ ମଧ୍ୟରେ ରହିଛି । କୋଣାର୍କ ସୂର୍ଯ୍ୟମନ୍ଦିରର ଗବାକ୍ଷ ଓ ଏହାର ସମସାମୟିକ ବୟାଳିଶିବାଟୀ ଗ୍ରାମର ଗଙ୍ଗେଶ୍ୱରୀ ଦେବୀଙ୍କ ମନ୍ଦିରର ଜଗମୋହନର ପ୍ରବେଶ ଦ୍ୱାର ଓ ଗବାକ୍ଷ ଦ୍ୱୟ ଉପରେ କମନୀୟ, ତ୍ରିଭଙ୍ଗ ତୋରଣ ଦେଖାଯାଏ । ବାଲେଶ୍ୱର ଜିଲ୍ଲା ପାଳିଆର ବିରଞ୍ଚିନାରାୟଣ ମନ୍ଦିରରେ ମଧ୍ୟ ଏହି ପ୍ରକାର ମଣ୍ଡନଧର୍ମୀ

ତୋରଣ ରହିଛି । ଏହି ଶ୍ରେଣୀୟ ଅନ୍ୟ ପ୍ରକାର ତୋରଣ ଗୁଡ଼ିକ ସାଧାରଣତଃ ଦେବ ଦେବୀଙ୍କ ପଶ୍ଚାତ ଭାଗରେ ଦେଖାଯାଏ । ଅନୁଚ୍ଚ ବା ରିଲିଫ୍ ଶୈଳୀରେ ଖୋଦିତ ଏହି ପ୍ରକାର ତୋରଣଗୁଡ଼ିକରେ ଅଧିକାଂଶ ସ୍ଥଳେ ଉର୍ଦ୍ଧ୍ୱରେ କୀର୍ତ୍ତିମୁଖ ଓ ଦୁଇ ପାର୍ଶ୍ୱରେ 'ମାତଙ୍ଗ-ମକର' ମୁଖ ସ୍ଥାନିତ ହୋଇଥିବା ସହିତ ଅଙ୍ଗ ପ୍ରତ୍ୟଙ୍ଗରେ ବିଭିନ୍ନ କାରୁକାର୍ଯ୍ୟ ରହିଥାଏ । ଦ୍ୱିତୀୟ ପ୍ରକାର ଅର୍ଥାତ୍ ସ୍ଥାପତ୍ୟର ଅଙ୍ଗଭାବେ ନିର୍ମିତ ତୋରଣ ମଧ୍ୟରେ ଲିଙ୍ଗରାଜ ମନ୍ଦିରର ନାଟମନ୍ଦିର ଭିତର ତୋରଣ ଗୁଡ଼ିକ ଉଲ୍ଲେଖଯୋଗ୍ୟ । ଏଠାରେ କୋଠରୀ ମଧ୍ୟର ଚାରିଖମ୍ବ ଉପରେ, ଚାରିଦିଗକୁ ଚାରିଗୋଟି ତୋରଣ ନିର୍ମିତ ହୋଇଛି । ଏହାର ପରବର୍ତ୍ତୀ ସମୟରେ ନିର୍ମିତ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ବେଢ଼ା ମଧ୍ୟରେ ଥିବା ଅନେକ ନିର୍ମାଣରେ ବିଭିନ୍ନ ପ୍ରକାର ତୋରଣ ଦେଖାଯାଏ । ଏହା ବ୍ୟତୀତ ଖ୍ରୀ:୧୪ଶ ଶତାବ୍ଦୀ ପରେ ନିର୍ମିତ ବହୁ ମଠ ମଣ୍ଡପ ଓ ମନ୍ଦିର ସହିତ ବିଭିନ୍ନ ପ୍ରକାର ତୋରଣ ରହିଛି । ଏଥି ମଧ୍ୟରୁ କେତେକ ବାଡ଼ ଉପର ପ୍ରବେଶ ପଥ କିମ୍ବା ମଣ୍ଡପମାନଙ୍କ ଖମ୍ବ ଉପରେ ନିର୍ମିତ ହୋଇଥିବା ବେଳେ ଅନ୍ୟ ପ୍ରକାର ତୋରଣଗୁଡ଼ିକ ଖମ୍ବ ଉପରେ ସ୍ୱାଧୀନ ଭାବେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ ।



ମୂର୍ତ୍ତି ପଥର ତୋରଣ



ମୁକ୍ତେଶ୍ୱର ମନ୍ଦିରର ପ୍ରବେଶ ତୋରଣ

ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ସମ୍ମୁଖରେ ଥିବା କମନୀୟ ମଣ୍ଡନକୃତି ଯୁକ୍ତ ତୋରଣଟି କଳିଙ୍ଗ ମନ୍ଦିର ସ୍ଥାପତ୍ୟର ଏକମାତ୍ର କୃତି କହିଲେ ଭୁଲ ହେବନାହିଁ । ଏକ ଅନୁଚ୍ଚ ବେଦୀ ଉପରେ ଦଣ୍ଡାୟମାନ ତୋରଣଟିର ଦୁଇ ପାର୍ଶ୍ୱ ଖମ୍ବର ମୂଳଭାଗ ଚତୁଷ୍କୋଣ ଓ ମଧ୍ୟଭାଗ ଷୋଡ଼ଶ କୋଣ । ମୂଳଭାଗର କୋଣଗୁଡ଼ିକରେ ଛୋଟ ଛୋଟ କ୍ରୀଡ଼ାରତ ଗଜସିଂହ ମୂର୍ତ୍ତିମାନ ସ୍ଥାନିତ ହୋଇଥିବା ବେଳେ ଏହାର ପାର୍ଶ୍ୱରେ ଥିବା ଖାକରାମୁଣ୍ଡିଗୁଡ଼ିକରେ ବିଭନ୍ନ ଭଙ୍ଗିରେ କନ୍ୟା ମୂର୍ତ୍ତିମାନ ଦେଖିବାକୁ ମିଳେ । ଖମ୍ବର ଉର୍ଦ୍ଧ୍ୱରେ, ଆଲମ୍ବ ମୁକ୍ତାମାଳା ଝୁଲୁଥିବା କୀର୍ତ୍ତିମୁଖ ଉପରେ ଯଥାକ୍ରମେ ଅଁଳା, ପଟି ଓ ବିସ୍ତାରିତ ଚକ୍ରାକାର ନିର୍ମାଣରେ ପଦ୍ମପାଖୁଡ଼ାର ମଣ୍ଡନକୃତି ରହିଛି । ତୋରଣ ଉପର, ଅର୍ଦ୍ଧଚକ୍ରାକାର ନିର୍ମାଣ ଉପର ଦୁଇ

ପାର୍ଶ୍ୱରେ ଶୟନ ଭଙ୍ଗିରେ ଥିବା ଅପ୍‌ସରାମାନଙ୍କ ମୂର୍ତ୍ତି ସୁନ୍ଦର ଦେଖାଯାଏ । ଏହା ସହିତ କୌତୁକପୂର୍ଣ୍ଣ ଭଙ୍ଗିରେ ମର୍କଟମାନଙ୍କ ପିତୁଳା ଓ ଅନ୍ୟାନ୍ୟ ମଣ୍ଡନକୃତି ରହିଛି । ତୋରଣର ମଧ୍ୟଭାଗ ଓ ଦୁଇ ପାର୍ଶ୍ୱରେ ଥିବା ଚୈତ୍ୟପଦକମାନଙ୍କରେ 'ଦେବମସ୍ତକ' ରହିଥିବା ବେଳେ ଏହା ସହିତ ବିପରୀତ ମୁଖ ହୋଇ ରହିଥିବା ମାତଙ୍ଗ-ମକର ଦ୍ୱୟ ତୋରଣର ପକ୍ଷ ସଦୃଶ ଦେଖାଯାଆନ୍ତି । ଅର୍ଦ୍ଧଗୋଲାକାର ତୋରଣର ପୃଷ୍ଠଭାଗରେ ପ୍ରଶସ୍ତ କୁଟିଳ ନକ୍‌ସା, ଦୁଇପାର୍ଶ୍ୱରେ ରଙ୍ଗଣି ଫୁଲର ପଟି ଶୋଭା ବର୍ଦ୍ଧନ କରୁଥିବା ସହ ଏହାର ଶିଖରରେ ଚମ୍ପକପତ୍ର ମଣ୍ଡନକୃତି ଓ ଏକ କଳସ ସ୍ଥାନିତ ହୋଇଛି । କମନୀୟ କାରୁକଳା ଓ ମୂର୍ତ୍ତିକଳା ଯୁକ୍ତ ଏହି ତୋରଣ ଖମ୍ୱର ଚତୁଷ୍କୋଣ ମୂଳଭାଗ ପ୍ରତ୍ୟେକ ପାଖର ଚଉଡ଼ା ୦.୭୫ ମିଟର, ଷୋଡ଼ଶ କୋଣ ମଧ୍ୟଭାଗର ଗୋଲେଇ ୨.୩୦ ମିଟର, ପ୍ରତ୍ୟେକ ଖମ୍ୱର ଉଚ୍ଚତା ୨.୧୦ ମିଟର, ଉପର ଅର୍ଦ୍ଧଚକ୍ରାକାର ତୋରଣ ଅଂଶ ପ୍ରାୟ ୨.୦୦ ମିଟର, ହୋଇ ଥିବା ବେଳେ ପ୍ରବେଶ ପଥଟିର ପ୍ରସ୍ଥ ୧.୪୮ ମିଟର ଓ ଉଚ୍ଚତା ପ୍ରାୟ ୨.୩୫ ମିଟର ଅଟେ । ଏକ ଅନୁଚ୍ଚ ବେଦୀ ଉପରେ ଥିବା କୃତିଟିରର ମୋଟ ଉଚ୍ଚତା ପ୍ରାୟ ୪.୪୦ ମିଟର ଅଟେ ।

ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ସଙ୍ଗେ ସଙ୍ଗେ ରାଧା-କୃଷ୍ଣଙ୍କ ଝୁଲଣ ଯାତ୍ରା ଲୋକପ୍ରିୟ ହୋଇଥିଲା । ଏହି ଯାତ୍ରା ନିମନ୍ତେ ମଣ୍ଡପ ଉପରେ ନିର୍ମିତ ତୋରଣଗୁଡ଼ିକ ଓଡ଼ିଶାର ବିଭିନ୍ନ ମନ୍ଦିର ପରିସରରେ ଦେଖାଯାଏ । ମଧ୍ୟଯୁଗରେ ନିର୍ମିତ ଏହିପରି ଏକ ଝୁଲଣ ମଣ୍ଡପର ତୋରଣ ଭୁବନେଶ୍ୱରର ବୋଇତାଳ ଦେଉଳ ନିକଟରେ ରହିଛି । ଏହା କଳିଙ୍ଗ ମନ୍ଦିର କଳାର ପାରମ୍ପରିକ ଶୈଳୀରେ ନିର୍ମିତ । ତେବେ ଅନୁଧ୍ୟାନରୁ ଜଣାଯାଏ ଯେ, ତୋରଣ ପ୍ରାଚୀନ କଳିଙ୍ଗର ମନ୍ଦିର ସ୍ଥାପତ୍ୟରେ ଏକ ଅନିବାର୍ଯ୍ୟ ଅଙ୍ଗ ନୁହେଁ ।

## ଛାତତଳ ବା ସିଲିଂ

କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ଛାତତଳ ବା ସିଲିଂର ମଣ୍ଡନକୃତିକୁ ଗୁରୁତ୍ୱ ଦିଆ ଯାଇନଥାଏ । ଏଣୁ ଅଧିକାଂଶ ମନ୍ଦିରର ସିଲିଂ ନିରାଡ଼ମ୍ବର ଅର୍ଥାତ୍ ମଣ୍ଡନକୃତି ବିହୀନ । ରେଖ ଦେଉଳରେ ପ୍ରଥମ ମୁଦ୍‌ର ତଳଭାଗ ସିଲିଂର କାର୍ଯ୍ୟ କରିଥାଏ । ଶାସ୍ତ୍ରୀୟ ମତରେ ଏଥିରେ ଏକ ଅଷ୍ଟଦଳପଦ୍ମର ଚିତ୍ର ରହିବା ବିଧିଅଛି । କିନ୍ତୁ ଏହି ସ୍ଥାନଟି ଗଭୀର ଅନ୍ଧକାର ମଧ୍ୟରେ ରହୁଥିବାରୁ ଦୃଷ୍ଟ୍ୟ ହୁଏନାହିଁ । କେତେକ ମନ୍ଦିରର ଭଗ୍ନାବଶେଷରେ ଏହି ପଦ୍ମଟି ଦେଖିବାକୁ ମିଳେ । ପୀଢ଼ ଦେଉଳର ଛାଟତଳ ପିରାମିଡର ତଳପାଖ ଭଳି ଗହିରିଆ ବା ଓଲଟା ପାହାଚ ସଦୃଶ । ଏଣୁ ଏହିପରି କ୍ୱଚିତ୍ ସିଲିଂର ତଳଧାରରେ ସ୍ୱଳ୍ପ ମଣ୍ଡନକୃତି ଦେଖାଯାଏ । ଖାକରା ଦେଉଳ ସହିତ ଥିବା ଦୁଇଚାଳିଆ ଜଗମୋହନର ଛାତତଳ ମଧ୍ୟ ନିରାଡ଼ମ୍ବର ।

ଭୁବନେଶ୍ୱର, ମୁକ୍ତେଶ୍ୱର ମନ୍ଦିର, ଜଗମୋହନର ନହଟାଳିଆ ଛାତର ତଳଭାଗ ବା ସିଲିଂ ଏକ ଭିନ୍ନ ଶୈଳୀର ଅଟେ । ଏହି ଆୟତାକାର କୋଠରୀର ସିଲିଂଟି ମଧ୍ୟ ଆୟତାକାର । ଜ୍ୟାମିତିକ ଶୈଳୀରେ ଗହିରିଆ ଏହି କ୍ଷେତ୍ରର ମଧ୍ୟଭାଗରେ ଏକ ବର୍ଗାକାର ରଚନା ରହିଛି ଏବଂ ଏହା ମଧ୍ୟରେ ରହିଛି ଏକ ଚକ୍ରାକାର ଅଷ୍ଟଦଳପଦ୍ମ । ଏହାର ଆଠଟି ପାଖୁଡ଼ାରେ ସ୍ଥାନିତ ହୋଇଛି ସପ୍ତମାତୃକା ଓ ବିରଭଦ୍ର ଶିବଙ୍କ ଉପବିଷ୍ଟ ଭଙ୍ଗିର ସୁନ୍ଦର ମୂର୍ତ୍ତି । ଅଷ୍ଟଦଳ ପଦ୍ମର କେଶର ଅର୍ଥାତ୍ ସିଲିଂର କେନ୍ଦ୍ରରେ ଏକ ଶତଦଳପଦ୍ମ



ମୁକ୍ତେଶ୍ୱର ମନ୍ଦିର ଛାତତଳର ନକ୍ସା



ଗୋଟିଏ ପୀଢ଼ ଦେଉଳ ଛାତତଳର ନକ୍ସା

ଉତ୍କୀର୍ଣ୍ଣ ହୋଇଛି । ବର୍ଗକ୍ଷେତ୍ରର ବାହାର ଦୁଇ ପାର୍ଶ୍ୱରୁ ଗୋଟିଏ ପାର୍ଶ୍ୱରେ ପରିଚାରକ, ପରିଚାରିକାଙ୍କ ଗହଣରେ ରାଜଲୀଳାସନରେ ବସିଥିବା କାର୍ତ୍ତିକେୟଙ୍କ ମୂର୍ତ୍ତି ଓ ଅପର ପାର୍ଶ୍ୱରେ ନୃତ୍ୟ ଭଙ୍ଗିରେ ଗଣେଶଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ବର୍ଗକ୍ଷେତ୍ରର କୋଣମାନଙ୍କରେ ନାଗ-ନାଗୀଙ୍କ ଯୁଗଳ ପ୍ରତିମା ରହିଥିବା ବେଳେ ଆୟତକ୍ଷେତ୍ରର କୋଣଗୁଡ଼ିକରେ ବିଭିନ୍ନ ଭଙ୍ଗିରେ ନର୍ତ୍ତକୀ ଓ ବାଦକ ବାଦିକାଙ୍କ ବର୍ଣ୍ଣନାତ୍ମକ ମୂର୍ତ୍ତିମାନ ସିଲିଂର ଶୋଭାବର୍ଦ୍ଧନ କରୁଛି । ସମ୍ପୂର୍ଣ୍ଣ ରଚନାର ଧାରଗୁଡ଼ିକ ବିଭିନ୍ନ ମଣ୍ଡନକୃତିରେ ପରିପୂର୍ଣ୍ଣ । ଛାତତଳର ଏହି ପ୍ରକାର ଉଚ୍ଚକୋଟୀର, କଳାତ୍ମକ ନିର୍ମାଣ କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ଅଦ୍ୱିତୀୟ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱଳ୍ପ ମଣ୍ଡନକୃତି ଥିବା ଛାତତଳ ମଧ୍ୟରେ ଭୁବନେଶ୍ୱରର ବହ୍ଲେଶ୍ୱର ମନ୍ଦିର ଜଗମୋହନ ଅନ୍ୟତମ । ଏହାର ସିଲିଂ ମଧ୍ୟଭାଗରେ ଥିବା, ପ୍ରସ୍ଫୁଟିତ ପଦ୍ମର ଚାରିପାଖରେ ଚାରି ନାଗ ଦେବତାଙ୍କ ମୂର୍ତ୍ତି ରହିଥିବା ବେଳେ ଛାତର ତଳ ଧାରରେ କେତେକ ବର୍ଣ୍ଣନାତ୍ମକ ମୂର୍ତ୍ତି ଦେଖିବାକୁ ମିଳେ ।



ଏକ ପୀଢ଼ଦେଉଳ ତଳ ଛାତର ନକ୍ସା

# ବାହନ ସ୍ତମ୍ଭ

ଶିବଙ୍କ ବାହନ ବୃଷଭ, ବିଷ୍ଣୁଙ୍କ ବାହନ ଗରୁଡ଼ ଓ ସୂର୍ଯ୍ୟଙ୍କ ରଥର ସାରଥି ଅରୁଣ ଅଟନ୍ତି । ସେହିପରି ଦେବୀ ଦୁର୍ଗାଙ୍କ ବାହନ ସିଂହ । ଏହି ଦେବ, ଦେବୀମାନଙ୍କ ଜଗମୋହନ ମଧ୍ୟରେ କିମ୍ବା ମନ୍ଦିର ସମ୍ମୁଖରେ ଉପରୋକ୍ତ ବାହନମାନଙ୍କ ମୂର୍ତ୍ତି ଥିବା ସ୍ତମ୍ଭ ଦେଖାଯାଏ । ଏଗୁଡ଼ିକ ସାଧାରଣତଃ 'ବାହନ-ସ୍ତମ୍ଭ' ନାମରେ ପରିଚିତ । ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କ ସମ୍ମୁଖରେ ଏହି ପ୍ରକାର ବାହନ ସ୍ଥାନିତ କରିବା ବ୍ୟବସ୍ଥା ନଥିବା ବେଳେ କେତେକ ମନ୍ଦିରରେ ପରବର୍ତ୍ତୀ ସମୟରେ ଏକ ପୀଠ ଉପରେ କିମ୍ବା ସ୍ତମ୍ଭ ଉପରେ ବାହନ ମୂର୍ତ୍ତି ସ୍ଥାନିତ ହୋଇଥିବା ଦେଖାଯାଏ । ଗଙ୍ଗବଂଶ ରାଜତ୍ୱ ସମୟରୁ ପ୍ରଚଳିତ ଏହା ଦକ୍ଷିଣଭାରତୀୟ ପରଂପରାର ପ୍ରଭାବ ଭଳି ମନେହୁଏ ।

ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଜଗମୋହନରେ ଥିବା ଗରୁଡ଼ ସ୍ତମ୍ଭଟି ଗଙ୍ଗରାଜତ୍ୱ ସମୟରେ ସ୍ଥାପିତ ହୋଇଥିଲେହେଁ, ଏହା ଏକ ଅତି ପ୍ରାଚୀନ ବସ୍ତୁ । ଏଠାରେ ଭକ୍ତଜନ ଦେବତାଙ୍କ ନିମନ୍ତେ ଦୀପଦାନ କରି ଭକ୍ତି ଓ ଶ୍ରଦ୍ଧାରେ ସ୍ତମ୍ଭଟିକୁ ଆଲିଙ୍ଗନ କରିଥାଆନ୍ତି । ପାଟବସ୍ତ୍ରରେ ଆବୃତ ଖମ୍ବଟିକୁ ସର୍ବସାଧାରଣ ପଥର ନିର୍ମିତ ବୋଲି ମନେ କରୁଥିବା ବେଳେ, ଖମ୍ବଟି ଲକ୍ଷାଧିକ ବର୍ଷ ପ୍ରାଚୀନ ଏକ ବୃକ୍ଷାସ୍ମ ବା Wood fossil । ଏହା ଦେହରେ ବୃକ୍ଷର ଗଣ୍ଠିଗୁଡ଼ିକ ମଧ୍ୟ ସ୍ପଷ୍ଟ । ତେବେ ଏହି ଦୁର୍ଲଭ ପଦାର୍ଥଟି କେବେ, କେଉଁଠାରୁ, କିପରି ଭାବେ ପ୍ରାପ୍ତ ହୋଇଥିଲା ତା'ର ସୂଚନା ମିଳୁନଥିବା ବେଳେ ଏହା ଉପରର ଗରୁଡ଼ ମୂର୍ତ୍ତିଟି ଗଙ୍ଗମାନଙ୍କ ସମୟର କୃତି । ବୋଧ ହୁଏ ବୃକ୍ଷାସ୍ମଟି ଶ୍ରୀଜଗନ୍ନାଥଙ୍କ ପ୍ରାଚୀନତମ ମୂର୍ତ୍ତି ସହିତ ରହିଥିବା ସମ୍ଭବ ।

ଯାଜପୁରରେ ଶୁଭସ୍ତମ୍ଭ ନାମରେ ଏକ କୃତି ରହିଛି । କାରୁକାର୍ଯ୍ୟ ଓ ମୂର୍ତ୍ତିକଳା ଯୁକ୍ତ ଏହାର ମୂଳ ବା ପୀଠ ଭାଗର ଉଚ୍ଚତା ପ୍ରାୟ ୧.୭୫ ମିଟର । ଷୋଡ଼ଶ କୋଣ ବିଶିଷ୍ଟ, ଗୋଟିଏ ମୁଗୁନି ପଥରରେ ଗଢ଼ା ଏହାର ମଧ୍ୟଭାଗର ଲମ୍ବ ପ୍ରାୟ ୬.୦୦ ମିଟର । ଉପରର ଆସନ ଭାଗର ଉଚ୍ଚତା ପ୍ରାୟ ୩.୦୦ମିଟରରୁ ସାମାନ୍ୟ କମ୍ । ଅର୍ଥାତ ସ୍ତମ୍ଭଟି ମୋଟ ୧୦.୫୦ ମିଟର ଉଚ୍ଚତା ବିଶିଷ୍ଟ ଅଟେ । ବର୍ତ୍ତମାନ ଏହା ଉପରେ କୌଣସି ମୂର୍ତ୍ତି ନଥିବା ବେଳେ ସ୍ଥାନୀୟ ଏସ.ଡ଼ି.ଓଙ୍କ କାର୍ଯ୍ୟାଳୟ ପରିସରରେ ଥିବା ସୁନ୍ଦର ଗରୁଡ଼ ମୂର୍ତ୍ତିଟି ଏହାର ଅଂଶ ବିଶେଷ ବୋଲି ଜଣାଯାଏ । ଲିଙ୍ଗରାଜ ମନ୍ଦିର ସମ୍ମୁଖରେ ଥିବା ଗୋଲ ବାହନ ସ୍ତମ୍ଭଟି ଏକାଧିକ କଟା ହୋଇଥିବା କନ୍ଦାପଥରରେ ନିର୍ମିତ । ଏହାର ଉଚ୍ଚତା ପ୍ରାୟ ୭ ମିଟର । ଲିଙ୍ଗରାଜଙ୍କୁ ହରିହର ଭାବେ ପୂଜା କରାଯାଉଥିବାରୁ ସ୍ତମ୍ଭ ଉପରେ ବୃଷଭ ସହିତ ଏକ ଛୋଟ ଗରୁଡ଼ ପ୍ରତିମା ମଧ୍ୟ ସ୍ଥାନିତ ହୋଇଛି । ଲିଙ୍ଗରାଜମନ୍ଦିର ପରିସରରେ ଥିବା ଭୁବନେଶ୍ୱରୀ ଦେବୀଙ୍କ ମନ୍ଦିର ସମ୍ମୁଖ ସ୍ତମ୍ଭ ଉପର ପୀଢ଼ଦେଉଳ ମଧ୍ୟରେ ଦୁର୍ଗାଙ୍କ ବାହନ ସିଂହର ମୂର୍ତ୍ତି ଦେଖିବାକୁ ମିଳେ । ନାଲି କନ୍ଦା ପଥର ନିର୍ମିତ ସ୍ତମ୍ଭଟି ଛୋଟ ଓ ନିରାଡ଼ମ୍ବର ହେଲେହେଁ ସୁନ୍ଦର । ଏହି ବେଢ଼ା ମଧ୍ୟରେ ଥିବା କାର୍ତ୍ତିକେୟଙ୍କ ମନ୍ଦିର ସମ୍ମୁଖରେ ଥିବା ସ୍ତମ୍ଭରେ ତାଙ୍କ ବାହାନ ମୟୂରକୁ ସ୍ଥାନିତ କରାଯାଇଛି । ଯମେଶ୍ୱରଙ୍କ ବାହନ ସ୍ତମ୍ଭ ଉଚ୍ଚରେ ସାମାନ୍ୟ ଅଧିକ । ସ୍ତମ୍ଭର ଗୋଲ ମଧ୍ୟଭାଗର ପରିଧି ୨.୦୦ ମିଟର ହୋଇଥିବା

ବେଢେ ଏହା ଉପରେ ଆଶିଂକ ଭଗ୍ନ ପାଦ୍ମ ବେଦିକା ସମେତ ସ୍ତମ୍ଭଟିର ଉଚ୍ଚତା ପ୍ରାୟ ୩.୦୦ ମିଟର । ସତ୍ୟବାଦୀର ସାକ୍ଷୀଗୋପୀନାଥଙ୍କ ମନ୍ଦିର ସମ୍ମୁଖରେ ଏକ ସୁଉଚ୍ଚ ଗରୁଡ଼ସ୍ତମ୍ଭ ରହିଛି । କୃତିଟି ନିମ୍ନମାନର କନ୍ଦା ପଥରରେ ନିର୍ମିତ ।

କୋଣାର୍କ ସୂର୍ଯ୍ୟମନ୍ଦିର ସମ୍ମୁଖରେ ଥିବା ଅରୁଣ ସ୍ତମ୍ଭଟି ସ୍ଥାନାନ୍ତରିତ ହୋଇ ପୁରୀ ଶ୍ରୀଜଗନ୍ନାଥଙ୍କ ମନ୍ଦିର ସମ୍ମୁଖରେ ସ୍ଥାପିତ ହୋଇଛି । କିନ୍ତୁ ଏହା ଉପର ମୂଳ ଅରୁଣ ମୂର୍ତ୍ତି ପରିବର୍ତ୍ତେ ଗରୁଡ଼ଙ୍କ ପ୍ରତିମା ସ୍ଥାନିତ ହୋଇଛି । ସ୍ତମ୍ଭର ଚତୁଷ୍କୋଣ କାରୁକଳା ଓ ମୂର୍ତ୍ତିକଳା ପୂର୍ଣ୍ଣ ପୀଠ ଭାଗର ଉଚ୍ଚତା ୨.୫୦ ମିଟର । ଷୋଡ଼ଶକୋଣ ବିଶିଷ୍ଟ, ଗୋଟିଏ କଳା ମୁଗୁନି ପଥରରେ ନିର୍ମିତ ମଧ୍ୟଭାଗର ଉଚ୍ଚତା ପ୍ରାୟ ୭.୫୦ ମିଟରେ, ଅର୍ଥାତ୍ ସ୍ତମ୍ଭଟିର ମୋଟ ଉଚ୍ଚତା ପ୍ରାୟ ୧୦ ମିଟରେ । ଏହି ପରି ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ନିର୍ମିତ କେତେକ ମଧ୍ୟଯୁଗୀୟ ଓ ପରବର୍ତ୍ତୀ ସମୟରେ ନିର୍ମିତ ମନ୍ଦିର ସମ୍ମୁଖରେ ବିଭିନ୍ନ ଆକାର ପ୍ରକାରର ବାହନ ସ୍ତମ୍ଭ ଦେଖାଯାଏ । କେତେକ ଶିଳ୍ପପୋଥିରେ ଏହାକୁ ଧ୍ୱଜାସ୍ତମ୍ଭ ବୋଲି ଉଲ୍ଲେଖ ହୋଇଛି । କିନ୍ତୁ ଏଥିରେ ଧ୍ୱଜା ବନ୍ଧାଯାଉନଥିବାରୁ, ଏହି ପ୍ରକାର ନାମର କୌଣସି ଯଥାର୍ଥତା ନାହିଁ । ଧ୍ୱଜାସ୍ତମ୍ଭଗୁଡ଼ିକ ସାଧାରଣତଃ ଦକ୍ଷିଣ ଭାରତୀୟ ମନ୍ଦିର ସମ୍ମୁଖରେ ଦେଖାଯାଏ ।





କୋଣାର୍କ ସୂର୍ଯ୍ୟ ମନ୍ଦିର ଅରୁଣ ସ୍ତମ୍ଭ, ବର୍ତ୍ତମାନ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ସମ୍ମୁଖରେ ରହିଛି

# ମନ୍ଦିର ଦେହର ମୂର୍ତ୍ତି

କଳିଙ୍ଗରେ ମୂର୍ତ୍ତିକଳାର ପ୍ରାରମ୍ଭ ଭିନ୍ନ ହେଲେହେଁ, ମନ୍ଦିରର ଏହା ଏକ ଅନିବାର୍ଯ୍ୟ ଅଙ୍ଗ ହୋଇଥିବାରୁ ମନ୍ଦିର ସ୍ଥାପତ୍ୟ ସହିତ ଏହାର ବହୁବିଧ ବିକାଶ ଘଟିଥିବା ଲକ୍ଷ୍ୟ କରାଯାଏ । ମନ୍ଦିରରେ ମୁଖ୍ୟ ଦେବତାଙ୍କ ବ୍ୟତୀତ ଶାସ୍ତ୍ର ମତରେ କେତେକ ମୂର୍ତ୍ତି ମନ୍ଦିରର ନିର୍ଦ୍ଦିଷ୍ଟ ଅଙ୍ଗରେ ସ୍ଥାନିତ କରା ଯାଉଥିବା ବେଳେ ଅନ୍ୟ କେତେକ ପ୍ରତିମା ମୁଖ୍ୟତଃ ମନ୍ଦିର ଦେହର ଶୂନ୍ୟ ସ୍ଥାନ ପୂରଣ କରି ସ୍ଥାପତ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଉଦ୍ଦିଷ୍ଟ । ମନ୍ଦିର ଦେହର ନିର୍ଦ୍ଦିଷ୍ଟ ଅଙ୍ଗରେ ରହୁଥିବା ମୂର୍ତ୍ତିଗୁଡ଼ିକ ମଧ୍ୟରେ ଦ୍ୱାରବନ୍ଧର ମୂଳଭାଗରେ ଦ୍ୱାରପାଳ, ଗଙ୍ଗାଯମୁନା, ପ୍ରଥମ ତୋରଣର ପାଟପଥର ଉପରେ ନବଗ୍ରହ, ପ୍ରବେଶ ଦ୍ୱାରର ଉପରବନ୍ଧ ମଧ୍ୟଭାଗ ଅର୍ଥାତ ଲଲାଟବିମ୍ବ ଉପରେ କୌଣସି ଦେବ, ଦେବୀଙ୍କ ମୂର୍ତ୍ତି ବ୍ୟତୀତ ଦେଉଳ ତିନି ପାର୍ଶ୍ୱ ରାହାରେ ପାର୍ଶ୍ୱଦେବତାଙ୍କ ମୂର୍ତ୍ତିଗୁଡ଼ିକ ମୁଖ୍ୟତଃ ଶାସ୍ତ୍ରୀୟ ମତରେ ସ୍ଥାନିତ ହୋଇଥାଏ । ସ୍ଥାପତ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଉଦ୍ଦିଷ୍ଟ ମୂର୍ତ୍ତିମାନଙ୍କ ମଧ୍ୟରେ ମୁଖ୍ୟତଃ ବିଭିନ୍ନ ପ୍ରକାର ଗଜସିଂହ , ନାଗ, ନାଗୀ, ବିଭିନ୍ନ ଭଙ୍ଗିରେ ନାରୀ, ମିଥୁନ ଓ ମୈଥୁନ ପ୍ରତିମା ପୌରାଣିକ, ରାଜକୀୟ ଓ ସାମାଜିକ ବିଷୟ ଅନ୍ତର୍ଭୁକ୍ତ । ପରବର୍ତ୍ତୀ ସମୟ ଅର୍ଥାତ ମଧ୍ୟଯୁଗରେ କେତେକ ଗଣ, ଉପଦେବତା, ମୈଥୁନ ମୂର୍ତ୍ତିକୁ ମଧ୍ୟ ଶାସ୍ତ୍ରୀୟତା ସହିତ ସଂଯୋଗ କରା ଯାଇଥିବା ଦେଖାଯାଏ । ଏହି ଶ୍ରେଣୀୟ ମୂର୍ତ୍ତି ମଧ୍ୟରେ ଦିକ୍‌ପାଳ, ଦିକ୍‌ପାଳିକାଙ୍କ ସମେତ କେତେକ ଗଣ ଓ ତାନ୍ତ୍ରୀକ ମୂର୍ତ୍ତି ଅନ୍ୟତମ । ଏଣୁ କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ଏହି ମୂର୍ତ୍ତିମାନଙ୍କ ସ୍ଥିତିର ସୂଚନା ନିମ୍ନରେ ଦିଆଗଲା ।

## ଦ୍ୱାରପାଳ, ଦ୍ୱାରପାଳିକା

ଅନେକ ପୁରାଣ ଓ କାବ୍ୟମାନଙ୍କରେ ପ୍ରାସାଦ ତଥା ଦେବତାମାନଙ୍କ ଦ୍ୱାରପାଳଙ୍କ ଭୂମିକା ବିଷୟରେ ବର୍ଣ୍ଣନାମାନ ଦେଖିବାକୁ ମିଳେ । ଏହି ମର୍ମରେ ଦେବାଳୟମାନଙ୍କ ଦ୍ୱାରଦେଶରେ ସେହି ଦେବତାଙ୍କ ଦ୍ୱାରପାଳଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବା ଦୃଷ୍ଟିଗୋଚର ହୁଏ । ଶିବଙ୍କର ମୁଖ୍ୟ ଦ୍ୱାରପାଳ ହେଲେ ନନ୍ଦୀ, ଭୃଙ୍ଗୀ ବା କାଳ ଓ ମହାକାଳ । ଏମାନେ ସର୍ବ ଦୁର୍ବିପାକ ବିନାଶକ ବୋଲି ବିଶ୍ୱାସ କରାଯାଏ । ଏମାନଙ୍କ ମୂର୍ତ୍ତି ସାଧାରଣତଃ ପ୍ରବେଶ ଦ୍ୱାରର ନିମ୍ନ ଭାଗରେ ରହିଥାଏ । ଅଧିକାଂଶ ସ୍ଥଳେ ଏମାନେ ଚତୁର୍ଭୁଜ ହୋଇଥିବା ବେଳେ କେତେକ ଦ୍ୱିଭୁଜ ପ୍ରତିମା ମଧ୍ୟ ଦେଖିବାକୁ ମିଳେ । କେତେକ ସ୍ଥଳେ ଦ୍ୱାରପାଳଙ୍କ ସହିତ ଏକ କିମ୍ବା ଦୁଇ ପରିଚାରକ ଓ ପରିଚାରୀକା ଦେଖାଯାଆନ୍ତି । ପ୍ରବେଶ ଦ୍ୱାରର ଦକ୍ଷିଣ ପାର୍ଶ୍ୱରେ ମହାକାଳଙ୍କ ମୂର୍ତ୍ତି ସାଧାରଣତଃ ଶାନ୍ତ ହୋଇଥିବା ବେଳେ ବାମ ପାର୍ଶ୍ୱର ନନ୍ଦୀଙ୍କ ମୁଖ ମଣ୍ଡଳ ଉଗ୍ର ହୋଇଥାଏ । ଏମାନଙ୍କୁ କାଳ ଓ ମହାକାଳ ମଧ୍ୟ କୁହାଯାଏ । ପ୍ରାଚୀନ ଲକ୍ଷ୍ମଣେଶ୍ୱର ମନ୍ଦିରର ଦ୍ୱାରପାଳଙ୍କ ମୂର୍ତ୍ତି ସୁନ୍ଦର । ଚତୁର୍ଭୁଜ ମୂର୍ତ୍ତି ଗୁଡ଼ିକର ବେଶପୋଷାକ ଶିବଙ୍କ ଭଳି ହୋଇଥିବା ବେଳେ ଭରତେଶ୍ୱରର ଦ୍ୱାରପାଳ ମୂର୍ତ୍ତି ଗୁଡ଼ିକ ଦ୍ୱିଭୁଜ ଏବଂ କଳାକୃତି ପୂର୍ବ ମୂର୍ତ୍ତି ଅପେକ୍ଷା ନ୍ୟୁନମାନର ମନେ ହୁଏ । ପରଶୁରାମେଶ୍ୱର ମନ୍ଦିରର ଦ୍ୱାରପାଳ ମଧ୍ୟ ଚତୁର୍ଭୁଜ ଅଟନ୍ତି । ଏଠାରେ ଏମାନଙ୍କ ସହିତ ଅନୁଚର

କିମ୍ବା ଅନୁଚରୀ ଦେଖାଯାଆନ୍ତି ନାହିଁ । ଭୁବନେଶ୍ୱରର ଶିଶିରେଶ୍ୱର ମନ୍ଦିରର ଦ୍ୱାରପାଳଙ୍କ ସହିତ ନାଗ ଦେବତାଙ୍କ ଉପସ୍ଥିତି ଉଲ୍ଲେଖଯୋଗ୍ୟ । ଗଞ୍ଜାମ ଜିଲ୍ଲାର ବଡ଼ଗାଁର ଶିବ ମନ୍ଦିରରେ ମଧ୍ୟ ଏହି ଅନୁରୂପ ମୂର୍ତ୍ତି ରହିଛି । ଶିଶିରେଶ୍ୱର ମନ୍ଦିରର ଏକ ପ୍ରବେଶଦ୍ୱାର ଓ ବୋଇତାଳ ଦେଉଳର ଏକ ପ୍ରବେଶଦ୍ୱାରରେ ଚାମରଧାରିଣୀ ନାରୀ ମୂର୍ତ୍ତିମାନଙ୍କୁ ଦ୍ୱାରପାଳିକା ଭାବେ ସ୍ଥାନିତ କରାଯାଇଛି । ମୁଖଲିଙ୍ଗମର ମନ୍ଦିର ପୁଞ୍ଜ ମଧ୍ୟରୁ କେତେକରେ କାଳ ଓ ମହାକାଳଙ୍କ ମୂର୍ତ୍ତି ଦ୍ୱାରପାଳ ଭାବେ ସ୍ଥାନିତ ହୋଇଥିବା ବେଳେ ଅନ୍ୟ କେତେକ ମନ୍ଦିରର ପ୍ରବେଶ ଦ୍ୱାରରେ ଏମାନଙ୍କ ଶକ୍ତି ବା ନାରୀ ମୂର୍ତ୍ତିମାନଙ୍କୁ ଦ୍ୱାରପାଳିକା ଭାବେ ଦେଖିବାକୁ ମିଳେ । ଏମାନେ ସାଧାରଣତଃ ଚତୁର୍ଭୁଜା । ଏହି ଦ୍ୱାରପାଳିକା ମାନଙ୍କ ବେଶପୋଷାକ ଓ ଆୟୁଧ ଶୈବ ଦେବୀଙ୍କ ଭଳି ।

ମଧ୍ୟଯୁଗ ଓ ପରବର୍ତ୍ତୀ ସମୟର ମନ୍ଦିରମାନଙ୍କ ବିକଶିତ ମୂର୍ତ୍ତିକଳାରେ ବହୁ ସୁନ୍ଦର ଦ୍ୱାରପାଳ ମୂର୍ତ୍ତି ଦେଖିବାକୁ ମିଳେ । ଭୁବନେଶ୍ୱରର କୋଟିତୀର୍ଥେଶ୍ୱର ଓ ମେଘେଶ୍ୱର, କଳାରାହାଙ୍ଗର ଜଳେଶ୍ୱର ମନ୍ଦିର, ଟାଙ୍ଗି ନିକଟସ୍ଥ ଚଣ୍ଡେଶ୍ୱରଙ୍କ ମନ୍ଦିର ଓ ବରଗଡ଼ ଜିଲ୍ଲାର ପାଇକମାଳର ନୃସିଂହନାଥ ମନ୍ଦିରର ଦ୍ୱାରପାଳଙ୍କ ସହ ଦକ୍ଷିଣ ପାଖରେ ଗଙ୍ଗା ଓ ବାମ ପାଖରେ ଯମୁନାଙ୍କ ମୂର୍ତ୍ତି ସ୍ଥାନିତ ହୋଇଛି । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ଓ ପାଇକମାଳ ନୃସିଂହନାଥଙ୍କ ଅନ୍ୟ ଏକ ଦ୍ୱାରରେ ପ୍ରତ୍ୟେକ ଦ୍ୱାରପାଳଙ୍କ ସହିତ ଚାମରଧାରିଣୀ ଜଣେ ଅନୁଚରୀ ରହିଛନ୍ତି । ଖିଚିଂର କୁଟେଇତୁଣ୍ଡି ମନ୍ଦିରରେ ଉଭୟ ପାର୍ଶ୍ୱରେ ଦ୍ୱାରପାଳ ଓ ଦ୍ୱାରପାଳିକା ଯୁଗଳ ଦେଖାଯାଆନ୍ତି । ମୁଖଲିଙ୍ଗମର ଏକ ମନ୍ଦିରର ପ୍ରବେଶ ଦ୍ୱାରରେ, ରାଣୀପୁର - ଝରିଆଲର ସୋମେଶ୍ୱର ମନ୍ଦିର ଓ ବାଲେଶ୍ୱର ଜିଲ୍ଲା, ପାଳିଆର ବିରଞ୍ଚିନାରାୟଣ ମନ୍ଦିରରେ ଦ୍ୱାରପାଳମାନଙ୍କୁ ନୃତ୍ୟ ଭଙ୍ଗିରେ ଦେଖିବାକୁ ମିଳେ ।


ଶିବମନ୍ଦିରର ଦ୍ୱାରପାଳ


ବିଷ୍ଣୁମନ୍ଦିରର ଦ୍ୱାରପାଳ

ଶୈବ-ଦ୍ୱାରପାଳମାନେ ଶିବଙ୍କ ଅନୁରୂପ ଦେଖାଯାଉଥିବା ବେଳେ ବୈଷ୍ଣବ ମନ୍ଦିରର ଦ୍ୱାରପାଳମାନେ ବିଷ୍ଣୁଙ୍କଭଳି ଦେଖାଯାଆନ୍ତି । ଏମାନେ ସାଧାରଣତଃ ଜୟ, ବିଜୟ ନାମରେ ପରିଚିତ । ଭୁବନେଶ୍ୱରର ଅନନ୍ତ - ବାସୁଦେବ ଓ ପୁରୀର ଶ୍ରୀଜଗନ୍ନାଥ ମନ୍ଦିରର ଦ୍ୱାରପାଳଗଣ ଚତୁର୍ଭୁଜ ଅଟନ୍ତି । ପ୍ରତ୍ୟେକଙ୍କ ଉପର ଦକ୍ଷିଣ ହସ୍ତରେ ଚକ୍ର ଓ ବାମ ହସ୍ତରେ ଶଙ୍ଖ ଦେଖାଯାଉଥିବା ବେଳେ ନିମ୍ନର ଦକ୍ଷିଣ ହସ୍ତ ସାଧାରଣତଃ ଅଭୟ ମୁଦ୍ରାରେ ଥାଏ ଏବଂ ବାମହସ୍ତରେ ଏକ ନିମ୍ନମୁଖୀ ମୁଦ୍‌ଗର ଧାରଣ କରି ଥାଆନ୍ତି । ଶାକ୍ତମନ୍ଦିରମାନଙ୍କରେ ସାଧାରଣତଃ ଶୈବ ଦ୍ୱାରପାଳଙ୍କ ଭଳି ମୂର୍ତ୍ତି କିମ୍ବା ନାରୀ ମୂର୍ତ୍ତି ଦ୍ୱାରପାଳିକା ଭାବେ ଦେଖିବାକୁ ମିଳେ ।

## ଗଙ୍ଗା, ଯମୁନା

ଭାରତୀୟ ଜନଜୀବନ ଓ ଧର୍ମଧାରଣାରେ ଦୁଇ ଚିରସ୍ରୋତା, ନଦୀ ଗଙ୍ଗା ଓ ଯମୁନାଙ୍କ ସ୍ଥାନ ଅତି ଉଚ୍ଚରେ । ଏମାନେ ପବିତ୍ର ତଥା ମୁକ୍ତିଦାତ୍ରୀ ବୋଲି ବିଶ୍ୱାସ କରାଯାଏ । ଏହି ପରିପ୍ରେକ୍ଷୀରେ ମନ୍ଦିରରେ ପ୍ରବେଶ କରୁଥିବା ଭକ୍ତଙ୍କୁ ପବିତ୍ରତା ପ୍ରଦାନ ନିମନ୍ତେ ଗଙ୍ଗା, ଯମୁନାଙ୍କ ମୂର୍ତ୍ତି ମନ୍ଦିରର ପ୍ରବେଶ ଦ୍ୱାରରେ ସ୍ଥାନିତ କରାଯାଇଥିବା ସମ୍ଭବ । ପ୍ରାଚୀନ ମନ୍ଦିର ମାନଙ୍କର ମୂର୍ତ୍ତିକଳାରେ ଏହି ଦେବୀମାନେ ହସ୍ତରେ ଏକ ପୁଷ୍ପ ଧାରଣ କରି ସାଧାରଣ ଭାବେ ଦଣ୍ଡାୟମାନ ହୋଇଥିବା ଦେଖାଯାଉଥିବା ବେଳେ ମଧ୍ୟବର୍ତ୍ତୀ କାଳର ଅଧିକାଂଶ ମନ୍ଦିର ଗାତ୍ରରେ ଏମାନେ ସାବଲୀଳ ଭଙ୍ଗିରେ ଦଣ୍ଡାୟମାନ ହୋଇଥାନ୍ତି । ଦେବୀମାନେ ବିଭିନ୍ନ ବସ୍ତ୍ରାଳଙ୍କାରରେ ଭୂଷିତା । ଗଙ୍ଗା ମନ୍ଦିର ଦ୍ୱାରଦେଶର ବାମ ପାର୍ଶ୍ୱରେ, ମକର ଉପରେ ଏବଂ ଯମୁନା ଦକ୍ଷିଣ ପାର୍ଶ୍ୱରେ, କଚ୍ଛପ ଉପରେ ଦଣ୍ଡାୟମାନ ହୋଇଥାଆନ୍ତି । ଏହି ସମୟର





ଗଙ୍ଗା, ଯମୁନା

ମୂର୍ତ୍ତିକଳାରେ ଗଙ୍ଗାଙ୍କ ବାମ ହସ୍ତରେ ଏବଂ ଯମୁନାଙ୍କ ଦକ୍ଷିଣ ହସ୍ତରେ ଉର୍ଦ୍ଧ୍ୱକୁ ଟେକି କାନ୍ଧ ନିକଟରେ ଏକ କଳସ ଧାରଣ କରିଥିବା ଦେଖାଯାଏ । ଏହି ସମୟରେ ସେମାନଙ୍କ ଅନ୍ୟ ହସ୍ତ ସାବଲୀଳ ଭଙ୍ଗିରେ ଜଂଘ ଉପରେ ରହିଥାଏ । ଏମାନେ ଅଧିକାଂଶ ସ୍ଥଳେ ନିଜ ନିଜର ପରିଚାରିକା ବା ସଖୀମାନଙ୍କୁ ସ୍ନେହ ଭାବ ପ୍ରଦର୍ଶନ ଭଙ୍ଗିରେ ଦେଖାଯାଆନ୍ତି । କେତେକ ସ୍ଥଳେ ଦେବୀଙ୍କ ମସ୍ତକ ଉପରେ ଛତ୍ର ରହିଥାଏ ।

ପ୍ରାଚୀନ ପରଶୁରାମେଶ୍ୱର ମନ୍ଦିରର, ଜଗମୋହନର ସମ୍ମୁଖ ବାଡ଼ ଅର୍ଥାତ୍ ପ୍ରବେଶଦ୍ୱାରର ଗୋଟିଏ ପାଖରେ ଗଙ୍ଗା ଓ ଅନ୍ୟ ପାଖରେ ଯମୁନାଙ୍କୁ ବର୍ଣ୍ଣନାତ୍ମକ ମୂର୍ତ୍ତିକଳାରେ ଦେଖିବାକୁ ମିଳେ । ଭଗ୍ନ ମୂର୍ତ୍ତି ଗୁଡ଼ିକ ମରାମତି ବେଳେ ନୂତନ ପଥର ସଂଯୋଗ ହୋଇ ଥିବାରୁ ଏଗୁଡ଼ିକ ଆଂଶିକ ସ୍ପଷ୍ଟ । ଏଠାରେ ଦେବୀମାନେ ପ୍ରବାହିତ ଜଳ ମଧ୍ୟରେ ସଖୀମାନଙ୍କ ସହିତ ଦଣ୍ଡାୟମାନ ହୋଇଥିବା ଦେଖାଯାଏ । ଅଳ୍ପ କେତେକ ପ୍ରାଚୀନ ମନ୍ଦିରର ପ୍ରବେଶ ଦ୍ୱାରରେ ଗଙ୍ଗା-ଯମୁନା ଦେଖା ଯାଉନଥିବା ବେଳେ ତାଳଚେର ନିକଟ କୁଆଲୋ ଗ୍ରାମର କନକେଶ୍ୱର ମନ୍ଦିର ଓ ଗଞ୍ଜାମ ଜିଲ୍ଲା ବଡ଼ଗାଁର ଶିବ ମନ୍ଦିରର ବାଡ଼ରେ ଆବରଣଦେବତାଙ୍କ ମଧ୍ୟରେ, ପ୍ରବେଶ ତୋରଣ କିମ୍ବା ପ୍ରବେଶଦ୍ୱାରର ନିମ୍ନ ଭାଗରେ, ଏମାନଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବା ଦେଖାଯାଏ । ଭୁବନେଶ୍ୱରର ତାଳେଶ୍ୱର, ବ୍ୟୋମକେଶ୍ୱର, ବରଗଡ଼ ଜିଲ୍ଲାର ନୃସିଂହନାଥ ମନ୍ଦିର ଭଳି କେତେକ ସ୍ଥାନରେ ପ୍ରଥମ ତୋରଣର ଗୋଟିଏ ପାଖରେ ଗଙ୍ଗା ଓ ଅନ୍ୟ ପାଖରେ ଯମୁନା ରହିଥିବା ବେଳେ ଦ୍ୱାରବନ୍ଧର ନିମ୍ନ ଭାଗରେ ଦ୍ୱାରପାଳଙ୍କ ମୂର୍ତ୍ତି ରହିଛି । ଭୁବନେଶ୍ୱରର କୋଟିତୀର୍ଥେଶ୍ୱର, ତୀର୍ଥେଶ୍ୱର ନିକଟ ଏକ ମନ୍ଦିର, ମେଘେଶ୍ୱର, ରାମେଶ୍ୱର, ଭୁବନେଶ୍ୱର ନିକଟ କଳାରାହାଙ୍ଗର ଜଳେଶ୍ୱର ମନ୍ଦିର ଓ ଟାଙ୍ଗି ନିକଟସ୍ଥ ଚଣ୍ଡେଶ୍ୱରଙ୍କ ମନ୍ଦିର ପ୍ରବେଶଦ୍ୱାରର ନିମ୍ନ ଖୋପମାନଙ୍କରେ ଦ୍ୱାରପାଳଙ୍କ ସହିତ ଗଙ୍ଗା, ଯମୁନା ଦେଖାଯାଆନ୍ତି । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ପରିସରର ମରିଚୀକୁଣ୍ଡ, ମହାନଦୀ ଟାପୁର ସିଂହନାଥ, ମୟୂରଭଞ୍ଜ ଜିଲ୍ଲା ଖିଚିଂର କୀଚ଼କେଶ୍ୱରୀମନ୍ଦିରର ଦ୍ୱାରଦେଶରେ କେବଳ ଗଙ୍ଗା, ଯମୁନାଙ୍କ ମୂର୍ତ୍ତି ଦେଖିବାକୁ ମିଳୁଥିବା ବେଳେ ଏହି ସ୍ଥାନଗୁଡ଼ିକ ଦ୍ୱାରପାଳ ବିହୀନ ଅଟେ ।

## ନାଗ, ନାଗୀ

ବହୁ ପ୍ରାଚୀନ କାଳରୁ ଭାରତୀୟ ଧର୍ମଧାରଣାରେ ନାଗ ପୂଜା ପ୍ରଚଳିତ ଥିବା ଜଣାଯାଏ । ନାଗ,ନାଗୀ ସୁରକ୍ଷା ତଥା ସମୃଦ୍ଧିର ଦେବତା ବୋଲି ବିଶ୍ୱାସ କରାଯାଏ । ତେବେ ଏମାନେ ଉପଦେବତା ଶ୍ରେଣୀୟ ଅଟନ୍ତି । ପ୍ରାଚୀନ ବୌଦ୍ଧ ମୂର୍ତ୍ତିକଳା ଓ ସ୍ଥାପତ୍ୟମାନଙ୍କରେ ବିଭିନ୍ନ ଭାବରେ ନାଗ, ନାଗୀଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଓଡ଼ିଶାର କେତେକ ପ୍ରାଚୀନ ମନ୍ଦିରମାନଙ୍କ ଦ୍ୱାରବନ୍ଧର ଦୁଇ ପାର୍ଶ୍ୱର ନିମ୍ନ ଭାଗରେ ଦ୍ୱାରପାଳ ଓ ଦ୍ୱାରପାଳିକା ଭାବରେ ନାଗ, ନାଗୀଙ୍କ ପ୍ରତିମା ଦେଖାଯାଉଥିବା ବେଳେ ପରବର୍ତ୍ତୀ ସମୟର ବିକଶିତ ରଥକ ଦେଉଳମାନଙ୍କ 'ଅନ୍ତରାପାଗ ଅର୍ଥାତ୍ ଦୁଇ ରଥକ ମଧ୍ୟର କନ୍ଦି ସ୍ଥାନଗୁଡ଼ିକରେ, ସରୁ ଉପସ୍ତମ୍ଭ ସଦୃଶ ନିର୍ମାଣ ମାନଙ୍କରେ ନାଗ, ନାଗୀଙ୍କ ମୂର୍ତ୍ତି ସଂଖ୍ୟା ବୃଦ୍ଧି ପାଇଥିବା ଦେଖାଯାଏ । ଏହା ବ୍ୟତୀତ ପ୍ରବେଶଦ୍ୱାରର ପ୍ରଥମତୋରଣର ଦୁଇ ପାର୍ଶ୍ୱ ଉପସ୍ତମ୍ଭମାନଙ୍କରେ ନାଗ, ନାଗୀଙ୍କ ସୁଉଚ୍ଚ ପ୍ରତିମା ସ୍ଥାନିତ କରିବା ମଧ୍ୟଯୁଗୀୟ ମନ୍ଦିରମାନଙ୍କର ଏକ ସାଧାରଣ ଶୈଳୀ । ଭାରତର ଯେକୌଣସି

ଅଞ୍ଚଳର ମନ୍ଦିର ଅପେକ୍ଷା କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ନାଗ, ନାଗୀଙ୍କ ମୂର୍ତ୍ତି ସଂଖ୍ୟା ଅଧିକ । ବିଭିନ୍ନ ସମୟରେ ନିର୍ମିତ କେତେକ ମନ୍ଦିରର ନାଗ-ନାଗୀ ମୂର୍ତ୍ତିଗୁଡ଼ିକ ଅନୁଧ୍ୟାନ କଲେ ଏହାର କ୍ରମ ବିକାଶ ସ୍ପଷ୍ଟ ପରିଲକ୍ଷିତ ହୁଏ । ଓଡ଼ିଶାର ପ୍ରଥମ ପର୍ଯ୍ୟାୟ ଅର୍ଥାତ ଖ୍ରୀ: ୬-୭ମ ଶତାବ୍ଦୀର ମନ୍ଦିରମାନଙ୍କ ମଧ୍ୟରୁ ଭୁବନେଶ୍ୱରର ଭରତେଶ୍ୱର ଓ ସ୍ୱର୍ଣ୍ଣଜଳେଶ୍ୱରମନ୍ଦିରର ପ୍ରବେଶଦ୍ୱାର ଦୁଇପାର୍ଶ୍ୱରେ ନାଗ, ନାଗୀଙ୍କୁ ପ୍ରତ୍ୟକ୍ଷ ଭାବେ ଗୁରୁତ୍ୱ ଦିଆଯାଇନାହିଁ । ଏଠାରେ ଦ୍ୱାରବନ୍ଧ ନିମ୍ନ ଭାଗରେ ଗଳାରେ ନାଗ ଧାରଣ କରିଥିବା ଶିବଗଣ ଦ୍ୱାରପାଳ ଭାବେ ଦେଖାଯାଆନ୍ତି । ଏହାର ପରବର୍ତ୍ତୀ ସମୟ ଅର୍ଥାତ ଖ୍ରୀ: ୮ମ-୯ମ ଶତାବ୍ଦୀରେ ନିର୍ମିତ ମନ୍ଦିରମାନଙ୍କର ଦ୍ୱାରବନ୍ଧ ନିମ୍ନଭାଗରେ ଶିବଗଣ ଦ୍ୱାରପାଳଙ୍କ ସହିତ ସମ୍ପୂର୍ଣ୍ଣ ମନୁଷ୍ୟ ଶରୀର, ମସ୍ତକ ଉପରେ ପ୍ରସାରିତ ପଞ୍ଚଫଣା ଯୁକ୍ତ ନାଗ, ନାଗୀ ମୂର୍ତ୍ତି ରହିଛି । ଭୁବନେଶ୍ୱରର ଶିଶିରେଶ୍ୱର ଏବଂ ଗଞ୍ଜାମ, ବଡ଼ଗାଁର ଶିବ ମନ୍ଦିରରେ ଏହି ପ୍ରକାର କୃତି ଦେଖାଯାଏ ।

ଦଶମ, ଏକାଦଶ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟର ଅଧିକାଂଶ ମନ୍ଦିରର ପ୍ରବେଶ ଦ୍ୱାର, ପ୍ରଥମତୋରଣର ଦୁଇ ପାର୍ଶ୍ୱସ୍ତମ୍ଭମାନଙ୍କରେ ଆକର୍ଷଣୀୟ ଭଙ୍ଗିରେ ନାଗ, ନାଗୀଙ୍କ ମୂର୍ତ୍ତିମାନ ସ୍ଥାନିତ ହୋଇଥିବା ବେଳେ କେତେକ ମନ୍ଦିରର ଅନ୍ତରାପାଗର ସଂକୀର୍ଣ୍ଣ ସ୍ଥାନମାନଙ୍କରେ ନାଗ-ନାଗୀ ଯୁକ୍ତ ଉପସ୍ତମ୍ଭମାନଙ୍କର ପରିକଳ୍ପନା କରାଯାଇଥିବା ଲକ୍ଷ୍ୟ କରାଯାଏ । ଏହି ମୂର୍ତ୍ତି ଗୁଡ଼ିକରେ ସମ୍ପୂର୍ଣ୍ଣ ମନୁଷ୍ୟ ଶରୀର ପରିବର୍ତ୍ତେ ନାଗ ନାଗୀଙ୍କ କଟିଠାରୁ ଉର୍ଦ୍ଧ୍ୱକୁ ମନୁଷ୍ୟ ଶରୀର ଓ ନିମ୍ନଭାଗ ସର୍ପ ଶରୀର ଦେଖାଯାଉଥିବା ବେଳେ ମସ୍ତକ ଉପରେ ପ୍ରସାରିତ ପଞ୍ଚ ବା ସପ୍ତଫଣା ଯୁକ୍ତ ନାଗ ରହିଛି । ନାନା ବସ୍ତ୍ରାଳଙ୍କାରରେ ଭୂଷିତ ହୋଇଥିବା ଏହି ମୂର୍ତ୍ତିଙ୍କ ମୁଖରେ ସ୍ମିତହାସ୍ୟ ପ୍ରକାଶ ପାଇଥାଏ । ଏମାନଙ୍କ ହସ୍ତରେ ରତ୍ନମାଳା କିମ୍ବା ଅମୃତକଳସ ଓ ଅକ୍ଷମାଳା ଦେଖାଯାଏ । କେତେକ ସ୍ଥଳେ ଏମାନେ ଏକ କମନୀୟ କ୍ଷୁଦ୍ରଦଣ୍ଡ ମଧ ଧାରଣ କରିଥାଆନ୍ତି ।



ଶିଶିରେଶ୍ୱର ମନ୍ଦିରର ଦ୍ୱାରପାଳ ସହିତ ନାଗ



ମଧ୍ୟଯୁଗୀୟ ମୂର୍ତ୍ତିକଳାରେ ନାଗ, ଖିଚିଂ

ଭୁବନେଶ୍ୱର ବାହାରେ ଥିବା ଖ୍ରୀ: ୯ମ-୧୦ମ ଶତାବ୍ଦୀର କେତେକ ମନ୍ଦିର ଯଥା- ଗନ୍ଧରାଡ଼ିର ନୀଳମାଧବ, ରାଣୀପୁର-ଝରିଆଲର ଇଟା ନିର୍ମିତ ଇନ୍ଦ୍ରଲାଥ ମନ୍ଦିର, ଚଉରାଶିର ବାରାହୀ ମନ୍ଦିର ସମେତ ଅନ୍ୟ କେତେକ ମନ୍ଦିରରେ ନାଗ, ନାଗୀଙ୍କ ମସ୍ତକ ଉପରେ ପ୍ରସାରିତ ସପ୍ତଫଣା ଦେଖା ଯାଉଥିବା ବେଳେ ଭୁବନେଶ୍ୱରର ତୀର୍ଥେଶ୍ୱର, ଗୌରୀ, ମୁକ୍ତେଶ୍ୱର, ପାର୍ବତୀ ଓ ଅନନ୍ତ-ବାସୁଦେବଙ୍କ ମନ୍ଦିରର ନାଗ, ନାଗୀଙ୍କ ମସ୍ତକ ଉପରେ ପ୍ରସାରିତ ପଞ୍ଚଫଣା ମାତ୍ର ଦେଖାଯାଏ । ବୋଧ ହୁଏ ଏହା ବୌଦ୍ଧ ନାଗ, ନାଗୀ ମୂର୍ତ୍ତିକଳାର ପ୍ରଭାବ । କିନ୍ତୁ ପରବର୍ତ୍ତୀ ସମୟରେ ଖ୍ରୀ: ୧୧ଶ ୧୨ଶ ଶତାବ୍ଦୀରେ ପରିବର୍ତ୍ତନ ଘଟି ଭୁବନେଶ୍ୱରର ରାଜାରାଣୀ ଓ ମେଘେଶ୍ୱର ଇତ୍ୟାଦି ମନ୍ଦିରମାନଙ୍କ ନାଗ, ନାଗୀ ମୂର୍ତ୍ତିରେ ପୁନଃ ସପ୍ତଫଣା ଥିବା ଲକ୍ଷ୍ୟକରାଯାଏ । ପ୍ରତ୍ୟେକ ନାଗ ନାଗୀଙ୍କ ପଞ୍ଚଫଣା କିମ୍ବା ସପ୍ତଫଣା ଏକ ସାଧାରଣ ଶୈଳୀ ହୋଇ ଥିବା ବେଳେ, କୋଣାର୍କ ନିକଟ ବିଷ୍ଣୁପୁରର ଶିବମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିରର କେତେକ କୃତିରେ ଗୋଟିଏ ସପ୍ତଫଣା ସହିତ ନାଗ-ନାଗୀ ଯୁଗଳ ଦେଖାଯାଆନ୍ତି । ଭୁବନେଶ୍ୱରର ଚିତ୍ରକାରିଣୀ ମନ୍ଦିର ଗାତ୍ରରେ ତିନିଫଣା ଯୁକ୍ତ ନାଗ-ନାଗୀ ମୂର୍ତ୍ତି ମଧ୍ୟ ପରିକଳ୍ପନା କରାଯାଇଛି । ଅନ୍ୟ ଏକ ଭିନ୍ନ ଶୈଳୀର ନାଗ, ନାଗୀ ମୂର୍ତ୍ତି ଦେଖାଯାଏ ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର, ଗୌରୀ ଦେବୀଙ୍କ ମନ୍ଦିର ତଥା ସମଗୋଷ୍ଠୀ ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ଅନ୍ୟ କେତୋଟି ମନ୍ଦିରରେ । ଅନ୍ୟ ସ୍ଥାନରେ ନାଗ, ନାଗୀମାନେ ସ୍ତମ୍ଭର ନିମ୍ନରୁ ଊର୍ଦ୍ଧ୍ୱକୁ ଉଠୁଥିବା ବେଳେ ଏହି ମନ୍ଦିରମାନଙ୍କ ମୂର୍ତ୍ତିକଳାରେ ନାଗ, ନାଗୀ ଉର୍ଦ୍ଧ୍ୱରୁ ନିମ୍ନକୁ ଅବତରଣ କରି ପୁନଃ ଉର୍ଦ୍ଧ୍ୱମୁଖ ହୋଇ ରହିଛନ୍ତି ।

କୋଣାର୍କର ସୂର୍ଯ୍ୟ ମନ୍ଦିର ଖ୍ରୀ: ୧୩ ଶ ଶତାବ୍ଦୀର କୃତି । ଏହାର ଅନ୍ୟାନ୍ୟ ମୂର୍ତ୍ତି ସହିତ ନାଗ, ନାଗୀ ମୂର୍ତ୍ତିଗୁଡ଼ିକ ଚରମ ଉତ୍କର୍ଷ ଲାଭ କରିଛି । ଜଗମୋହନ ପ୍ରବେଶ ଦ୍ୱାରରେ ନାଗ-ନାଗୀ 'ଯୁଗଳବନ୍ଧ' ସୃଷ୍ଟିକରି ଦ୍ୱାରର ଦୁଇ ପାର୍ଶ୍ୱ ତଥା ଉର୍ଦ୍ଧ୍ୱ ଭାଗକୁ ସୁନ୍ଦର ଭାବେ ରଜ୍ଜୁ ସଦୃଶ ମଣ୍ଡନ କରିଛନ୍ତି । ପୀଠର ବାଡ଼ ତଥା ବିଭିନ୍ନ ଅନ୍ତରାପାଗମାନଙ୍କରେ ବିଭିନ୍ନ କମନୀୟ ଶୈଳୀର ନାଗ, ନାଗୀ ପ୍ରତିମାମାନ ଦେଖିବାକୁ ମିଳେ । ଉପସ୍ତମ୍ଭମାନଙ୍କରେ ନାଗ-ନାଗୀ ଯୁଗଳ ଆଲିଙ୍ଗନ ଭଙ୍ଗିରେ ଦେଖାଯାଉଥିବା ବେଳେ ତାଙ୍କ ନିମ୍ନ ଭାଗରେ ପଞ୍ଚଫଣା ଯୁକ୍ତ ନାଗ, ନାଗୀ ଅନୁଚର ଗଣ ଯୋଡ଼ ହସ୍ତରେ ରହିଥିବା ଦେଖାଯାଏ । ଅନ୍ୟ କେତେକ ସ୍ତମ୍ଭରେ ଜଣେ ନାଗ ସହିତ ଦୁଇଜଣ ନାଗୀ ପ୍ରେମାଲିଙ୍ଗନ ଭଙ୍ଗିରେ ରହିଥିବା ବେଳେ ନିମ୍ନ ଭାଗରେ ଏକାଧିକ ନାଗ, ନାଗୀ ଅନୁଚରଗଣ ବିଭିନ୍ନ ଭଙ୍ଗିରେ ରହିଛନ୍ତି । ସର୍ପଜାତି ବାଦ୍ୟ ଓ ସଙ୍ଗୀତ ପ୍ରିୟ । ଏଣୁ କୋଣାର୍କର ନାଟମଣ୍ଡପ ପୀଠର ବାଡ଼ରେ ନାଗ, ନାଗୀମାନେ ବିଭିନ୍ନ ବାଦ୍ୟଯନ୍ତ୍ର ବାଦନ କରୁଥିବା ଭଙ୍ଗିରେ ବହୁ ସଂଖ୍ୟାରେ ଦେଖାଯାଆନ୍ତି ।

ମଧ୍ୟଯୁଗର ନାଗ,ନାଗୀ ଉପସ୍ତମ୍ଭଗୁଡ଼ିକ ମନ୍ଦିର ସ୍ଥାପତ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ପଡ଼ିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏଣୁ ଏଗୁଡ଼ିକୁ ଅଧିକ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ଆକର୍ଷଣୀୟ କରିବା ନିମନ୍ତେ ଅଧିକାଂଶ ସ୍ଥଳେ ଉପସ୍ତମ୍ଭଗୁଡ଼ିକର ନିମ୍ନଭାଗରେ ବିଭିନ୍ନ ଶୈଳୀର ଗଜସିଂହ ମୂର୍ତ୍ତିମାନ ସଂଯୋଗ କରାଯାଇଛି । ଚଉରାଶିର ବାରାହୀ ମନ୍ଦିରର ନାଗ, ନାଗୀ ସ୍ତମ୍ଭର ନିମ୍ନ ଭାଗରେ ଗୋଟିଏ କରି ଗଜସିଂହ ମୂର୍ତ୍ତି ରହିଥିବା ବେଳେ ଭୁବନେଶ୍ୱରର ମୁକ୍ତେଶ୍ୱର ଓ ଗୌରୀ ମନ୍ଦିରର ଉପସ୍ତମ୍ଭମାନଙ୍କରେ ଦୁଇଟିକରି ଓ ରାଜାରାଣୀ ମନ୍ଦିରର ପ୍ରବେଶଦ୍ୱାର ନାଗ, ନାଗୀ ଉପସ୍ତମ୍ଭମାନଙ୍କ ନିମ୍ନରେ ତିନୋଟି କରି ଗଜସିଂହ ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି ।

# ନବଗ୍ରହପାଟ

ଗ୍ରହମାନେ ମନୁଷ୍ୟ ତଥା ପ୍ରାଣୀଜଗତର ଭାଗ୍ୟ ନିୟନ୍ତା ଅଟନ୍ତି । ଜ୍ୟୋତିଷ ଶାସ୍ତ୍ର ଅନୁଯାୟୀ ଏମାନଙ୍କ ଶୁଭ ଦୃଷ୍ଟି ମନୁଷ୍ୟ ପାଇଁ ଅପରିହାର୍ଯ୍ୟ । ଏଣୁ ଦେବତାଙ୍କ ଦର୍ଶନ ପୂର୍ବରୁ ଦେଉଳର ପ୍ରବେଶ ଦ୍ୱାର ପ୍ରଥମତୋରଣ ବା ପାଟପଥର ଉପରେ ସ୍ଥାନିତ ଏମାନଙ୍କ ପ୍ରତିମା ଦର୍ଶନୀୟ ଅଟେ । ପ୍ରାଚୀନ ମନ୍ଦିରମାନଙ୍କର ପାଟପଥର ଉପରେ ତତ୍‌କାଳୀନ ପରମ୍ପରା ଅନୁଯାୟୀ ଅଷ୍ଟଗ୍ରହଙ୍କ ମୂର୍ତ୍ତି ସ୍ଥାନିତ ହେଉଥିଲା । ଏହି ବିଧିରେ କେତୁଙ୍କୁ ଏକ ଭିନ୍ନ ଗ୍ରହ ଭାବେ ଗ୍ରହଣ କରାଯାଉନଥିଲା । କିନ୍ତୁ ଖ୍ରୀ:୬ଷ୍ଠ ଶତାବ୍ଦୀରେ ପ୍ରଖ୍ୟାତ ଜ୍ୟୋତିଷଶାସ୍ତ୍ର ବିଶାରଦ ବରାହ ମିହିରଙ୍କ 'ବୃହତ୍ ସଂହିତା'ରେ ନବଗ୍ରହଙ୍କୁ ଗୁରୁତ୍ୱ ଦିଆ ଯିବାରୁ ଏହା ଧୀରେ ଧୀରେ ଲୋକପ୍ରିୟ ହେବା ସଙ୍ଗେ ସଙ୍ଗେ ଏହାର ପରବର୍ତ୍ତୀ ସମୟର ମନ୍ଦିରମାନଙ୍କରେ କେତୁଙ୍କୁ ଗ୍ରହଣ କରାଯାଇ ନବଗ୍ରହମାନ ସ୍ଥାପିତ ହେଲେ । ଏହି ମୂର୍ତ୍ତିଗୁଡ଼ିକ ମନ୍ଦିରର ପ୍ରବେଶଦ୍ୱାର ପ୍ରଥମତୋରଣର ଉପର ଭାଗରେ ଏକ ଲମ୍ବ ପଥରରେ, ପ୍ରସ୍ଥ ଭାବରେ ଖୋଦିତ ହୋଇଥାଆନ୍ତି । ମନ୍ଦିର ସ୍ଥାପତ୍ୟରେ ଏହି ଅଂଶ 'ନବଗ୍ରହପାଟ' ନାମରେ ପରିଚିତ ।

ଏହି ନବଗ୍ରହ ହେଲେ ରବି ବା ସୂର୍ଯ୍ୟ, ସୋମ ବା ଚନ୍ଦ୍ର, ପୃଥିବୀ ପୁତ୍ର ନାମରେ ପରିଚିତ ମଙ୍ଗଳ, ଚନ୍ଦ୍ରଙ୍କ ପୁତ୍ର ବୁଧ, ଦେବତାମାନଙ୍କ ଗୁରୁ ବୃହସ୍ପତି, ଭୃଗୁଙ୍କ ପୁତ୍ରତଥା ଅସୁରମାନଙ୍କ ଗୁରୁ ଶୁକ୍ର, ସୂର୍ଯ୍ୟ ଓ ଛାୟାଙ୍କ ପୁତ୍ର ଶନି, ସିଂହ ପୁତ୍ର ରାହୁ, ଶୁକ୍ରଙ୍କ ପୁତ୍ର କେତୁ ଓ ସେ ରାହୁଙ୍କ ଖଣ୍ଡିତ ଅଂଶ ଅଟନ୍ତି । ସାତୋଟି ଗ୍ରହ ସାଧାରଣତଃ ପଦ୍ମଆସନରେ ବସିଥିବା ବେଳେ ହସ୍ତରେ ନିଜ ନିଜର ଆୟୁଧ ଓ ବସ୍ତୁ ଧାରଣ କରିଥାନ୍ତି । କିନ୍ତୁ ରାହୁ ଏକ ଅସୁରର ମସ୍ତକ ଏବଂ କେତୁଙ୍କ ନିମ୍ନଭାଗ ସର୍ପ ଶରୀର ଦେଖାଯାଏ ।

ପ୍ରତ୍ୟେକ ମନ୍ଦିରରେ ନବଗ୍ରହପାଟ ଏକ ମୁଖ୍ୟ ଅଂଶ ହୋଇଥିବା ବେଳେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର, ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ ନିମାପଡ଼ା ନିକଟ ବିଷ୍ଣୁପୁର ଗ୍ରାମର ଶିବ ମନ୍ଦିରରୁ ଚ୍ୟୁତ ହୋଇଥିବା ନବଗ୍ରହ ପାଟର କଳାଶୈଳୀ ଉଲ୍ଲେଖଯୋଗ୍ୟ । କୋଣାର୍କ ସୂର୍ଯ୍ୟମନ୍ଦିରର ମୁଖ୍ୟ ନବଗ୍ରହପାଟଟି ସ୍ଥାନାନ୍ତରିତ ହୋଇ ବର୍ତ୍ତମାନ କୋଣାର୍କ ମନ୍ଦିର ନିକଟ ଏକ କୋଠାଘରେ ସଂରକ୍ଷିତ ହୋଇଛି । ଗୋଟିଏ କଳା ମୁଗୁନି ପଥରରେ ନିର୍ମିତ ପାଟପଥରଟି ବ୍ରିଟିସ୍ ଶାସନ ସମୟରେ କେତେ ଖଣ୍ଡରେ ବିଭକ୍ତ କରାଯାଇଛି ଏବଂ ଏହାର ଓଜନ ହ୍ରାସ କରିବା ନିମନ୍ତେ ପୃଷ୍ଠ ଭାଗରୁ କେତେକାଂଶ କାଟି ଦିଆଯାଇଛି । ଏହି ମୂଳ ପାଟପଥରଟିର ଲମ୍ବ ପ୍ରାୟ ୬.୦୦ ମିଟର, ପ୍ରସ୍ଥ ୧.୪୦ ମିଟର ଓ ଉଚ୍ଚତା ୧.୧୦ ମିଟର ଥିବା ଜଣାଯାଏ । ଏଥିରେ ଖୋଦିତ ନବଗ୍ରହଙ୍କ ମୂର୍ତ୍ତିର କଳାଶୈଳୀ ଉଚ୍ଚକୋଟୀର । ସମସ୍ତ ଗ୍ରହ ଦ୍ୱିଭୁଜ । ରାହୁ ଓ କେତୁଙ୍କ ବ୍ୟତୀତ ଅନ୍ୟ ସମସ୍ତ ଗ୍ରହ ପଦ୍ମାସନରେ ଉପବିଷ୍ଟ । ରବିଙ୍କ ଦୁଇ ହସ୍ତରେ ପଦ୍ମ ରହିଥିବା ବେଳେ ରାହୁଙ୍କ ଦୁଇ ହସ୍ତରେ ଅର୍ଦ୍ଧଚନ୍ଦ୍ର ଓ କେତୁଙ୍କ ହସ୍ତରେ ଖଡ୍ଗ ଏବଂ ଅଗ୍ନିପାତ୍ର ରହିଛି । ଅନ୍ୟ ଛ' ଗ୍ରହଙ୍କ ହସ୍ତରେ ଜପମାଳା ଓ କମଣ୍ଡଳୁ ଦେଖିବାକୁ ମିଳେ । କୋଣାର୍କ ମନ୍ଦିର ପରିସରର ଅନ୍ୟ କୌଣସି ଏକ ପାଟପଥର, ପୁରୀର ଗୁଣ୍ଡିଚା ମନ୍ଦିରର ପ୍ରବେଶ ଦ୍ୱାର ଉପରେ ସ୍ଥାନିତ ହୋଇଛି ।



ଲକ୍ଷ୍ମଣେଶ୍ୱର ମନ୍ଦିରର ଅଷ୍ଟଗ୍ରହପାଟ



କୋଣାର୍କ ସୂର୍ଯ୍ୟମନ୍ଦିରର କେତେକ ଗ୍ରହମୂର୍ତ୍ତି

# ପାର୍ଶ୍ୱଦେବତା

ମୁଖ୍ୟ ଦେଉଳର ପ୍ରବେଶ ଦ୍ୱାର ବ୍ୟତୀତ ତିନି ପାର୍ଶ୍ୱବାଡ଼ର ରାହାପାଗରେ ଥିବା ଖୋପ ବା ଠଣାମାନଙ୍କରେ ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ସ୍ଥାନିତ ହୋଇଥାଏ । ଏମାନେ ଗର୍ଭଗୃହ ମଧ୍ୟରେ ଥିବା ମୁଖ୍ୟ ଦେବତାଙ୍କ ପାର୍ଶ୍ୱରେ ରହୁଥିବାରୁ 'ପାର୍ଶ୍ୱଦେବତା' ଭାବେ ପରିଚିତ ହୁଅନ୍ତି । ଅନ୍ୟ ଭାବରେ ଏମାନେ ମୁଖ୍ୟ ଦେବତାଙ୍କ ପରିବାରର ଅନ୍ୟ ଦେବଦେବୀ କିମ୍ବା ମୁଖ୍ୟ ଦେବତାଙ୍କ ଅନ୍ୟ ଅବତାର ହୋଇଥିବା ଜଣାଯାଏ । ଶିବ ମନ୍ଦିରର ପାର୍ଶ୍ୱଦେବତା ଭାବେ ଦେଉଳର ଦକ୍ଷିଣ ପାର୍ଶ୍ୱରେ ଗଣେଶ, ପଶ୍ଚାଦ୍ ଭାଗରେ କାର୍ତ୍ତିକେୟଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବା ବେଳେ ବାମ ପାର୍ଶ୍ୱରେ ଶିବଙ୍କ ବାମା, ପାର୍ବତୀଙ୍କ ମୂର୍ତ୍ତି ଦେଖାଯାଏ । ବିଷ୍ଣୁ ବା ବୈଷ୍ଣବ ମନ୍ଦିରମାନଙ୍କର ଦକ୍ଷିଣ ପାର୍ଶ୍ୱରେ ବିଷ୍ଣୁଙ୍କ ବରାହ ଅବତାର, ପଶ୍ଚାତ୍ ଭାଗରେ ନୃସିଂହ ଓ ବାମ ପାର୍ଶ୍ୱରେ ତ୍ରିବିକ୍ରମ ବା ବାମନ ଅବତାର ମୂର୍ତ୍ତି ରହିଥାଏ । ଶକ୍ତି ମନ୍ଦିରମାନଙ୍କରେ ପାର୍ଶ୍ୱଦେବତାଙ୍କ କୌଣସି ନିର୍ଦ୍ଦିଷ୍ଟତା ଦେଖାଯାଏ ନାହିଁ । ଏଠାରେ ସାଧାରଣତଃ ସୂର୍ଯ୍ୟ, ଗଣେଶ ଓ ଦେବୀଙ୍କ ଅନ୍ୟ ରୂପ ଦେଖିବାକୁ ମିଳେ ।

ପ୍ରାଚୀନ ମନ୍ଦିରମାନଙ୍କ ଦେହରେ ଖୋପ ଓ ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ଏକତ୍ର ଖୋଦିତ ହେଉଥିଲା । ଏଣୁ ମୂର୍ତ୍ତିଗୁଡ଼ିକ ଭଗ୍ନ ଅବସ୍ଥାରେ ହେଲେହେଁ ମନ୍ଦିର ଗାତ୍ରରେ ସ୍ଥାୟୀ ଭାବେ ରହିଥିବା ଦେଖାଯାଏ । ମଧ୍ୟଯୁଗରେ ମୂର୍ତ୍ତିକୁ ଭିନ୍ନ ଭାବରେ ନିର୍ମାଣ କରି ଖୋପରେ ସ୍ଥାପନ କରିବା ବ୍ୟବସ୍ଥା ଦ୍ୱାରା, ପରବର୍ତ୍ତୀ ସମୟରେ ଚୋରମାନେ ମୂର୍ତ୍ତିଟି ଖୋପରୁ କାଢ଼ି ଅପହରଣ କରିବା ସହଜ ହୋଇଥିଲା । ଏଣୁ ଭୁବନେଶ୍ୱରର ଅଧିକାଂଶ ମଧ୍ୟଯୁଗୀୟ ମନ୍ଦିରର ପାର୍ଶ୍ୱଦେବତା ଖୋପଗୁଡ଼ିକ ଶୂନ୍ୟ ପଡ଼ିଥିବା ଦେଖାଯାଏ । ପ୍ରାଚୀନ ଶିବ ମନ୍ଦିରମାନଙ୍କରେ ଗଣେଶ ଅର୍ଦ୍ଧପାରାୟଣିକ ଭଙ୍ଗିରେ ଭୂମି ଉପରେ ଉପବିଷ୍ଟ, କାର୍ତ୍ତିକେୟ ଦଣ୍ଡାୟମାନ କିମ୍ବା ଆସନ ଉପରେ, ଲଳିତାସନରେ ଉପବିଷ୍ଟ ଭଙ୍ଗିରେ ଦେଖା ଯାଉଥିବା ବେଳେ ପାର୍ବତୀ ସାଧାରଣତଃ ସମଭଙ୍ଗରେ ଦଣ୍ଡାୟମାନ ହୋଇଥାଆନ୍ତି । କେତେକ ପ୍ରାଚୀନ ମନ୍ଦିର ଗାତ୍ରରେ ପାର୍ବତୀଙ୍କ ପରିବର୍ତ୍ତେ ମହିଷମର୍ଦ୍ଦିନୀ ଦୁର୍ଗା କିମ୍ବା ଉମା-ମହେଶ୍ୱରଙ୍କ ଯୁଗଳ ପ୍ରତିମା ଦେଖାଯାଏ । ମଧ୍ୟଯୁଗୀୟ ଶିବ ମନ୍ଦିର ମାନଙ୍କରେ ସାଧାରଣତଃ ଗଣେଶ ଦଣ୍ଡାୟମାନ କିମ୍ବା ନୃତ୍ୟ ଭଙ୍ଗିରେ ରହିଥାଆନ୍ତି । କାର୍ତ୍ତିକେୟ ମୟୂର ସହିତ କୁକ୍କୁଟ ଧାରଣ କରି ସରଳ ଭଙ୍ଗିରେ ଦଣ୍ଡାୟମାନ ହୋଇଥିବା ବେଳେ ପାର୍ବତୀ ମଧ ଏହି ଭଙ୍ଗିରେ ଦଣ୍ଡାୟମାନ ହୋଇଥିବା ଦେଖାଯାଆନ୍ତି । କଳା ମୁଗୁନି ପଥରରେ ଗଢ଼ା ଲିଙ୍ଗରାଜ ମନ୍ଦିରର ମନୁଷ୍ୟାକୃତି ଏହି ପ୍ରକାର ପାର୍ଶ୍ୱଦେବତା ମୂର୍ତ୍ତିଗୁଡ଼ିକ ଆକର୍ଷଣୀୟ । କନ୍ଦାପଥରରେ ଗଢ଼ା ଭାସ୍କରେଶ୍ୱର ମନ୍ଦିରର ପାର୍ଶ୍ୱଦେବତା ମୂର୍ତ୍ତିଗୁଡ଼ିକ ଭଗ୍ନ ଓ ଅବକ୍ଷୟ ଅବସ୍ଥାରେ ସ୍ୱ ସ୍ୱ ସ୍ଥାନରେ ରହିଛନ୍ତି । କେତେକ ମନ୍ଦିରରେ ଶିବଙ୍କ ଅବତାର ଲକୁଳୀଶଙ୍କୁ ମଧ ପାର୍ଶ୍ୱଦେବତା ଭାବେ ଦେଖିବାକୁ ମିଳେ । ଶିଶିରେଶ୍ୱର ମନ୍ଦିର ଜଗମୋହନ ବାଡ଼ରେ ଲକୁଳୀଶଙ୍କ ବିରାଟ ପ୍ରତିମା ସ୍ଥାନିତ ହୋଇଛି । ଭୁବନେଶ୍ୱରର କ୍ୱଚିତ୍ ମନ୍ଦିରରେ ତିନି ଦେବତାଙ୍କ ମୂର୍ତ୍ତି ଦେଖିବାକୁ ମିଳୁଥିବା ବେଳେ ଅଧିକାଂଶ ସ୍ଥଳେ କେବଳ ଗୋଟିଏ କିମ୍ବା ଦୁଇଟି ମୂର୍ତ୍ତି ତିଷ୍ଠି ରହିଛି ।



ପାର୍ଶ୍ୱଦେବତା, ଗଣେଶ



ପାର୍ଶ୍ୱଦେବତା, ବରାହ

ଭୁବନେଶ୍ୱରର ପ୍ରଖ୍ୟାତ ବୈଷ୍ଣବ ମନ୍ଦିର, ଅନନ୍ତ-ବାସୁଦେବଙ୍କ ତିନି ପାର୍ଶ୍ୱଦେବତାଙ୍କ ମଧ୍ୟରୁ ପଶ୍ଚାତ ଭାଗର ନୃସିଂହ ପ୍ରତିମା ସ୍ଥାନାନ୍ତରିତ ହୋଇଥିବା ବେଳେ ମନ୍ଦିରର ବାମପାର୍ଶ୍ୱରେ ବରାହ ଓ ଦକ୍ଷିଣପାର୍ଶ୍ୱରେ ପରମ୍ପରା ଅନୁଯାୟୀ ତ୍ରିବିକ୍ରମଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଅନନ୍ତ-ବାସୁଦେବ ଏକ ପଶ୍ଚିମମୁଖୀ ମନ୍ଦିର । ପୁରୀର ଶ୍ରୀଜଗନ୍ନାଥ ମନ୍ଦିର, ପ୍ରାଚୀନଦୀ କୂଳ ମାଧବ ଗ୍ରାମର ମାଧବାନନ୍ଦଙ୍କ ମନ୍ଦିର, ସାକ୍ଷୀଗୋପାଳର ଗୋପୀନାଥ ମନ୍ଦିର ସମେତ ମଧ୍ୟକାଳୀନ ବହୁ ବୈଷ୍ଣବ ମନ୍ଦିରରେ ପୂର୍ବ ବର୍ଣ୍ଣିତ ପାରମ୍ପରିକ ରିତୀରେ ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ଦେଖାଯାଏ । ଅଧିକାଂଶ ସ୍ଥଳେ ନୃସିଂହ ଯୋଗାସନରେ ରହିଥିବା ବେଳେ ଲକ୍ଷ୍ମୀ ତାଙ୍କ ବାମ ଜାନୁ ଉପରେ ବସି ଥାଆନ୍ତି । କ୍ୱଚିତ୍ ମନ୍ଦିରରେ ନୃସିଂହ ହିରଣ୍ୟକଶ୍ୟପୁକୁ ବିଦାରଣ କରୁଥିବା ଦୃଶ୍ୟ ଦେଖିବାକୁ ମିଳେ । କେତେକ ସ୍ଥଳେ ବରାହ ଭୂମାତାଙ୍କୁ ବାହୁରେ ବସାଇ ଅଳିଧ ଭଙ୍ଗିରେ ରହି ଥାଆନ୍ତି । ତ୍ରିବିକ୍ରମଙ୍କ ଗୋଟିଏ ପାଦ ଉର୍ଦ୍ଧ୍ୱକୁ ରହିଥିବା ବେଳେ ମୂର୍ତ୍ତିର ନିମ୍ନରେ, ବଳୀ ବାମନଙ୍କୁ ଦାନ ଦେଉଥିବା ଦୃଶ୍ୟ କ୍ଷୁଦ୍ର ଆକାରରେ ଉତ୍କୀର୍ଣ୍ଣ ହୋଇଥାଏ । ସାଧାରଣତଃ ମଧ୍ୟଯୁଗୀୟ ଏହି ମୂର୍ତ୍ତିଗୁଡ଼ିକ କଳା କିମ୍ବା ଧୂସରିଆ ମୁଗୁନି ପଥରରେ ନିର୍ମିତ ।

ଭୁବନେଶ୍ୱରର ପ୍ରଖ୍ୟାତ ଖାକରା ଶୈଳୀର ଦେବୀ ମନ୍ଦିର, ବୋଇତାଳ ଦେଉଳର ପାର୍ଶ୍ୱଦେବତାଙ୍କ ମଧ୍ୟରେ, ପୂର୍ବମୁଖୀ ମନ୍ଦିରର ପଶ୍ଚାତ ଭାଗରେ ଅର୍ଦ୍ଧନାରୀଶ୍ୱର, ଦକ୍ଷିଣପାର୍ଶ୍ୱରେ ପାର୍ବତୀ ଓ ବାମ ପାର୍ଶ୍ୱରେ ମହିଷମର୍ଦ୍ଦିନୀଙ୍କ ମୂର୍ତ୍ତି ରହିଛି । ପ୍ରାଚୀ ନଦୀ କୂଳ ଚଉରାଶି ଗ୍ରାମର ବାରାହୀ ଦେବୀଙ୍କ ମନ୍ଦିର ପାର୍ଶ୍ୱଦେବତା ଭାବେ ପଶ୍ଚିମ ବା ପଶ୍ଚାଦ୍ ଭାଗରେ ସୂର୍ଯ୍ୟ ଦକ୍ଷିଣରେ ଗଣେଶ ଓ ବାମ ପାର୍ଶ୍ୱରେ ପାର୍ବତୀଙ୍କୁ ଦେଖିବାକୁ ମିଳେ । କୋଣାର୍କ ନିକଟ ବୟାଳିଶିବାଟୀ ଗ୍ରାମର ଗଙ୍ଗେଶ୍ୱରୀ ଦେବୀଙ୍କ ଦକ୍ଷିଣମୁଖୀ ମନ୍ଦିରରେ ପଶ୍ଚାତ୍ ଭାଗର ଶୂନ୍ୟ ଖୋପଟିରେ ପାର୍ବତୀଙ୍କ ମୂର୍ତ୍ତି ଥିବା ଅନୁମାନ କରାଯାଏ । ଏହାର ପଶ୍ଚିମ ଦିଗରେ ଗଣେଶ ଓ ପୂର୍ବ ଦିଗରେ ପାର୍ଶ୍ୱଦେବୀ ଭାବେ ବାରାହୀଙ୍କ ଭୟଙ୍କର ଓ ସୁନ୍ଦର, ଦଣ୍ଡାୟମାନ ପ୍ରତିମା ସ୍ଥାନିତ ହୋଇଛି ।

## ଆବରଣଦେବତା

ଦେଉଳ ବାଡ଼ରେ ଥିବା ତିନି ପାର୍ଶ୍ୱଦେବତାଙ୍କ ବ୍ୟତୀତ ମନ୍ଦିରର ଅନ୍ୟାନ୍ୟ ସ୍ଥାନରେ ବିଭିନ୍ନ ଦେବ, ଦେବୀ ପ୍ରତିମା ଦେଖିବାକୁ ମିଳେ । ଏହି ଦେବ ଦେବୀମାନେ ମନ୍ଦିର ଦେହର, ବାହାର ଆବରଣରେ ସ୍ଥାନିତ ହୋଇଥିବାରୁ ଏମାନଙ୍କୁ 'ଆବରଣଦେବତା' କୁହାଯାଏ । ପ୍ରାଚୀନ ମନ୍ଦିରମାନଙ୍କ ଗର୍ଭଗୃହରେ ସ୍ଥାପିତ ହୋଇଥିବା ମୁଖ୍ୟ ଦେବତାଙ୍କ ବିଭିନ୍ନ ରୂପ କିମ୍ବା ସେହି ଗୋଷ୍ଠୀର ଅନ୍ୟ ଦେବ, ଦେବୀ ମୂର୍ତ୍ତି ଆବରଣଦେବତା ଭାବେ ଦେଖାଯାଉଥିବା ବେଳେ ଗ୍ରହମାନଙ୍କ ମୂର୍ତ୍ତି, ଦ୍ୱାରବନ୍ଧ ଉପର ଦେବ ଦେବୀ, ଗଙ୍ଗା, ଯମୁନା, ନାଗ, ନାଗୀ ଓ ଦ୍ୱାରପାଳ ମୂର୍ତ୍ତିଗୁଡ଼ିକ ମଧ୍ୟ ଆବରଣଦେବତା ଶ୍ରେଣୀୟ ଅଟନ୍ତି ।

କେତେକ ଶିଳ୍ପ ଶାସ୍ତ୍ରରେ ଆବରଣଦେବତାମାନଙ୍କ ମଧ୍ୟରେ ଅଷ୍ଟଦିକ୍‌ପାଳଙ୍କ ବ୍ୟତୀତ ଗନ୍ଧର୍ବ, ଗୁହ୍ୟକ, ଯକ୍ଷ, କିନ୍ନର, ପିଶାଚ ଓ ସିଦ୍ଧଙ୍କ ଭଳି ଉପଦେବତାଙ୍କୁ ସ୍ଥାନିତ କରିବା ନିମନ୍ତେ ମନ୍ଦିର ଦେହରେ ନିର୍ଦ୍ଦିଷ୍ଟ ସ୍ଥାନ ବା ଦିଗର ସୂଚନା ଦିଆଯାଇଛି । କିନ୍ତୁ ବାସ୍ତବ କ୍ଷେତ୍ରରେ କେବଳ ଦିକ୍‌ପାଳଙ୍କ ବ୍ୟତୀତ ଅନ୍ୟ ଉପଦେବତାଙ୍କ ମୂର୍ତ୍ତିମାନ ଶାସ୍ତ୍ର ଅନୁସାରେ ସ୍ଥାନିତ ହୋଇଥିବା ଦେଖାଯାଏନାହିଁ । ତେବେ ଏହି ସବୁ ଉପଦେବତା ମନ୍ଦିର ଗାତ୍ରରେ ବିଭିନ୍ନ ରୂପରେ ଓ ବିଭିନ୍ନ ଭାବରେ ରହିଥାଆନ୍ତି ।

ଅନୁଧ୍ୟାନରୁ ଦେଖା ଯାଏଁ ଯେ ମନ୍ଦିର ନିର୍ମାଣ ସମୟରେ ଶାସକ ରାଜା ଯେଉଁ ଦେବ ଦେବୀଙ୍କ ପ୍ରତି ଅଧିକ ଅନୁରକ୍ତ କିମ୍ବା ଯେଉଁ ଦେବ ଦେବୀ ସମାଜରେ ଅଧିକ ଲୋକପ୍ରିୟ, ସେହି ପ୍ରଭାବ ହିଁ ଆବରଣ ଦେବତା ଭାବରେ ମନ୍ଦିରରେ ; ପ୍ରତିଫଳିତ ହୋଇଥାଏ । ପ୍ରଥମ ପର୍ଯ୍ୟାୟ ଅର୍ଥାତ୍ ଖ୍ରୀ: ୬-୭ମ ଶତାବ୍ଦୀରେ ଶୈବ ଧର୍ମ ଲୋକପ୍ରିୟ ହୋଇଥିବା ଯୋଗୁଁ ଅନେକ ଶିବ ମନ୍ଦିର ଗଢ଼ି ଉଠିବା ସହିତ ମନ୍ଦିର ଗାତ୍ରରେ ଆବରଣ ଦେବତା ରୂପେ ଶିବଙ୍କର ବିଭିନ୍ନ ଲୀଳାମୂର୍ତ୍ତି ଯଥା:- ଶିବ ବିବାହ ବା କଲ୍ୟାଣସୁନ୍ଦର ମୂର୍ତ୍ତି, ଶିବଙ୍କ ଭିକ୍ଷାଟନ ମୂର୍ତ୍ତି, ରାବଣର କୈଳାସ ଉତ୍‌ପାଟନ ଦୃଶ୍ୟ, ଉତ୍ୟାଦି ସହିତ ଶିବ-ପାର୍ବତୀଙ୍କ ଯୁଗଳ ପ୍ରତିମା, ଅର୍ଦ୍ଧନାରୀଶ୍ୱର, ଶିବ-ପାର୍ବତୀ ଓ ଦୁର୍ଗାଙ୍କ ବିଭିନ୍ନ ଭଙ୍ଗିର ମୂର୍ତ୍ତି, ନଟରାଜ, ଭୈରବ, ଶୈବଗୁରୁ ଲକୁଳୀଶଙ୍କୁ ମଧ୍ୟ ଦେଖିବାକୁ ମିଳେ । କେତେକ ପ୍ରାଚୀନ ଶିବମନ୍ଦିରର ଆବରଣଦେବଦେବୀଙ୍କ ମଧ୍ୟରେ ସପ୍ତମାତୃକାଙ୍କ ସହିତ ବୀରଭଦ୍ର ଶିବ ଓ ଗଣେଶ ଦେଖାଯଥାନ୍ତି । ଖ୍ରୀ: ୮ମ-୯ମ ଶତାବ୍ଦୀରେ ଶିବଙ୍କ ବ୍ୟତୀତ ଶକ୍ତି ପୂଜା ବା ତନ୍ତ୍ରପୂଜା ସମାଜରେ ପ୍ରାଧାନ୍ୟ ବିସ୍ତାର କଲା । ଏହାର ଫଳସ୍ୱରୂପ କେତେକ ଶକ୍ତି ମନ୍ଦିର ଗଢ଼ିଉଠିବା ସହିତ ଉଭୟ ମନ୍ଦିରରେ ଦେବୀଙ୍କ ବିଭିନ୍ନ ରୂପ ସହିତ କାପାଳିକ, କାପାଳିକା, ଭୈରବ, ଚାମୁଣ୍ଡା, ଇତ୍ୟାଦି ଦେବଦେବୀ ପ୍ରତିମା ଆବରଣ ଦେବତାମାନଙ୍କ ମଧ୍ୟରେ ସ୍ଥାନ ପାଇଲା । ତେବେ ସୂର୍ଯ୍ୟଙ୍କୁ ଶକ୍ତି ପରମ୍ପରା ମଧ୍ୟରେ ଗ୍ରହଣ କରାଯିବାରୁ କେତେକ ଦେବୀ ମନ୍ଦିରର ପାର୍ଶ୍ୱଦେବତା କିମ୍ବା ଆବରଣଦେବତା ଭାବେ ତାଙ୍କ ମୂର୍ତ୍ତିକୁ ସ୍ଥାନିତ କରାଯାଇଥିବା ଦେଖାଯାଏ । ଏହାର ପରବର୍ତ୍ତୀ ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ଲୋକପ୍ରିୟତା ବୃଦ୍ଧି ପାଇଥିଲା । ଏହା ଦ୍ୱାରା ବିଷ୍ଣୁ ମନ୍ଦିରର ଆବରଣ ଦେବତାମାନଙ୍କ ମଧ୍ୟରେ ଶିବ ଓ ହରିହରଙ୍କ କେତେକ ମୂର୍ତ୍ତି ସ୍ଥାନ ପାଇଥିବା ବେଳେ ଶିବ ମନ୍ଦିରର ଆବରଣ ଦେବତା ମଧ୍ୟରେ କେତେକ ବୈଷ୍ଣବ ଦେବ ଦେବୀଙ୍କ ପ୍ରତିମା ଦେଖାଗଲା । ଏହି ସମୟରେ ସମାଜରେ ଶକ୍ତି ପୂଜାର ଲୋକପ୍ରିୟତା ଯୋଗୁଁ ଉଭୟ ମନ୍ଦିରର ଦିକ୍‌ପାଳ ମୂର୍ତ୍ତିର ଉର୍ଦ୍ଧ୍ୱରେ ସେମାନଙ୍କ ଶକ୍ତି ଅର୍ଥାତ ଦିକ୍‌ପାଳିକାମାନଙ୍କୁ ସ୍ୱତନ୍ତ୍ର ସ୍ଥାନ ଦିଆଯାଇଥିବା ଦେଖାଯାଏ ।



ଆବରଣଦେବତାରେ ଶିବ-ପାର୍ବତୀ

# ଦିକ୍‌ପାଳ, ଦିକ୍‌ପାଳିକା

ଦିକ୍‌ପାଳମାନେ ବୈଦିକ ଦେବତା, ବିଭିନ୍ନ ଧର୍ମଶାସ୍ତ୍ର ଓ ପୁରାଣମାନଙ୍କରେ ଏମାନଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ଏମାନେ ବିଭିନ୍ନ ଦିଗର ରକ୍ଷାକର୍ତ୍ତା ତଥା ଲୋକପାଳ ଶ୍ରେଣୀୟ ଉପଦେବତା ଅଟନ୍ତି । ଦିକ୍‌ପାଳମାନଙ୍କ ସଂଖ୍ୟା ଦଶ ହୋଇଥିଲେହେଁ, ବିଶ୍ୱରୂପୀ ମନ୍ଦିର ଗାତ୍ରରେ ଏମାନଙ୍କ ଅଷ୍ଟ ମୂର୍ତ୍ତି ଦୃଶ୍ୟମାନ ହୁଏ । ଏମାନଙ୍କ ଅବସ୍ଥିତି ଚାରି ଦିଗ ଓ ଚାରି କୋଣ । ତେବେ ମନ୍ଦିରର ଭୂପତନ ତଳେ ବାସ୍ତୁନାଗ ଭାବରେ ପାତାଳର ରକ୍ଷାକର୍ତ୍ତା 'ଅନନ୍ତ' ସ୍ଥାନିତ ହୋଇଥାଆନ୍ତି ଏବଂ ଆକାଶର ରକ୍ଷାକର୍ତ୍ତା ଭାବେ ମୁଦପଥରରେ ଅଙ୍କିତ ଅଷ୍ଟଦଳପଦ୍ମ ବ୍ରହ୍ମାଙ୍କୁ ସଙ୍କେତ କରେ । ଏହି ଅଷ୍ଟଦିକ୍‌ପାଳଙ୍କ ନାମ, ସେମାନଙ୍କ ବାହନ ଓ ମୁଖ୍ୟ ଆୟୁଧର ସୂଚନା ନିମ୍ନରେ ଦଆଗଲା :-

| ନାମ | ଦିଗ ବା କୋଣ | ବାହନ | ମୁଖ୍ୟ ଆୟୁଧ |
|---|---|---|---|
| ଇନ୍ଦ୍ର | ପୂର୍ବ ଦିଗ | ଐରାବତ ହସ୍ତୀ | ବଜ୍ର ଓ ଅଙ୍କୁଶ |
| ଅଗ୍ନି | ଦକ୍ଷିଣ-ପୂର୍ବ | ମେଷ କିମ୍ୱା ଛାଗ | ଅଗ୍ନି ଓ ଶ୍ମଶ୍ରୁ |
| ଯମ | ଦକ୍ଷିଣ | ମହିଷ | ଦଣ୍ଡ ଓ ପାଶ |
| ନୈରତ | ଦକ୍ଷିଣ-ପଶ୍ଚିମ | ମନୁଷ୍ୟ ଶବ | ଛିନ୍ନ ମସ୍ତକ, ଖଡ୍‌ଗ |
| ବରୁଣ | ପଶ୍ଚିମ | ମକର | ପାଶ, ଅଭୟମୁଦ୍ରା |
| ବାୟୁ | ଉତ୍ତର-ପଶ୍ଚିମ | ମୃଗ | ପତାକା |
| କୁବେର | ଉତ୍ତର | ମନୁଷ୍ୟ କିମ୍ୱା ହସ୍ତୀ | ନିଧି ଭାଣ୍ଡ |
| ଇଶାନ | ଉତ୍ତର-ପୂର୍ବ | ବୃଷଭ | ତ୍ରିଶୂଳ, ଡମ୍ବରୁ |



ଦିକ୍‌ପାଳ, ଇଶାନ



କୁବେରଙ୍କ ଶକ୍ତି

ପ୍ରାଚୀନ ମନ୍ଦିରମାନଙ୍କରେ ନିର୍ଦ୍ଦିଷ୍ଟ ଭାବେ ଦିକ୍‌ପାଳମାନଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବା ଦେଖାଯାଏ ନାହିଁ । କେତେକ ମନ୍ଦିରର ଆବରଣ ଦେବତାଙ୍କ ମଧ୍ୟରେ ଇନ୍ଦ୍ର, ବରୁଣ, କୁବେର ଓ ଅଗ୍ନିଙ୍କ ପ୍ରତିମା ବିଭିନ୍ନ ସ୍ଥାନରେ ଦେଖାଯାଏ । ଏହାର ପରବର୍ତ୍ତୀ ସମୟର ମନ୍ଦିରମାନଙ୍କରେ ଶାସ୍ତ୍ରମତେ ଅଷ୍ଟଦିକ୍‌ପାଳଙ୍କ ସ୍ଥାନ ନିର୍ଣ୍ଣୟ ହୋଇଥିବା ଲକ୍ଷ୍ୟ କରାଯାଏ । ଅଧିକାଂଶ କ୍ଷେତ୍ରରେ ଦିକ୍‌ପାଳମାନଙ୍କ ମୂର୍ତ୍ତି ଦେଉଳ ବାଡ଼ର କନିକ ପାଗରେ ସ୍ଥାନିତ ହୋଇଥିବା ବେଳେ କେତେକ ମନ୍ଦିରର ରାହାପାଗ ବ୍ୟତୀତ ଅନ୍ୟ ପାଗମାନଙ୍କରେ ଦିକ୍‌ପାଳମାନଙ୍କୁ ଦେଖିବାକୁ ମିଳେ । ଅଧିକାଂଶ ସ୍ଥଳେ ଏମାନେ ଚଉକି ଉଚ୍ଚତାର ଏକ ଆସନ ଉପରେ ଲଳିତ ଭଙ୍ଗିରେ କିମ୍ବା ନିଜ ବାହନ ଉପରେ ବିଭିନ୍ନ ଭଙ୍ଗିରେ ବସିଥିବା ଦେଖାଯାଏ । କିନ୍ତୁ ରାଜାରାଣୀ ମନ୍ଦିରର ଦେଉଳ ବାଡ଼ରେ ଏମାନେ କମନୀୟ ଲତା, ପତ୍ର ଓ ପୁଷ୍ପର ରଚନା ଉପରେ ସାବଲୀଳ ଭଙ୍ଗିରେ ଦଣ୍ଡାୟମାନ ହୋଇଛନ୍ତି । ଓଡ଼ିଶାର ବିଭିନ୍ନ ସ୍ଥାନର ଦିକ୍‌ପାଳ ମୂର୍ତ୍ତିମଧ୍ୟରେ ଏଗୁଡ଼ିକ ଚରମ ଉତ୍କର୍ଷ ଲାଭ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । କେତେକ ସ୍ଥାନରେ ଦେଉଳ ବ୍ୟତୀତ ଜଗମୋହନ ବାଡ଼ରେ ମଧ୍ୟ ଦିକ୍‌ପାଳଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବା ଦେଖାଯାଏ । ମଧ୍ୟଯୁଗରେ ଶକ୍ତି ପୂଜା ଲୋକପ୍ରିୟ ହେବା ଦ୍ୱାରା ଦିକ୍‌ପାଳଙ୍କ ସହିତ ସେମାନଙ୍କ ଶକ୍ତି ବା ପତ୍ନୀମାନଙ୍କ ପରିକଳ୍ପନା କରାଯାଇଥିଲା । ଏହି କ୍ଷେତ୍ରରେ ଦିକ୍‌ପାଳମାନଙ୍କୁ ଦେଉଳର ତଳ ଜଂଘରେ ଓ ଦିକ୍‌ପାଳିକାମାନଙ୍କୁ ଉପର ଜଂଘରେ ସ୍ଥାନିତ କରାଯାଇଥିବା ଦେଖାଯାଏ । ଏହି ଦିକ୍‌ପାଳିକାମାନେ ନିଜ ସ୍ୱାମୀଙ୍କ ବାହନ ଉପରେ ବସିଥିବା ବେଳେ ସେମାନଙ୍କ ଆୟୁଧ ମଧ୍ୟ ଧାରଣ କରିଥାଆନ୍ତି ।

## ଗଜସିଂହ

ପ୍ରାଚୀନ ଭାରତୀୟ ବୌଦ୍ଧ ମୂର୍ତ୍ତିକଳା ଓ ସ୍ଥାପତ୍ୟରେ ଗଜ, ସିଂହ ଓ ଗଜ-ସିଂହ ମିଳିତ ମୂର୍ତ୍ତିର ଅନେକ ରଚନା ଦେଖିବାକୁ ମିଳେ । ତେବେ କଳିଙ୍ଗ ମନ୍ଦିରର କଳା ଓ ସ୍ଥାପତ୍ୟରେ ଏଗୁଡ଼ିକର ବହୁବିଧ ବିକଶିତ ରଚନା ବହୁଳ ଭାବରେ ବ୍ୟବହୃତ ହୋଇଛି । ଗଜ ସିଂହର ଏହି ମୂର୍ତ୍ତିଗୁଡ଼ିକୁ ଓଡ଼ିଶାର ଶିଳ୍ପୀମାନେ ଦେଶୀୟ ଭାଷାରେ ଗଜ-ବିଡାଳ, ଝାମ୍ପସିଂହ, ଖେପାସିଂହ ଓ ଛଡାଉଡ଼ା ସିଂହ ଭଳି କେତେକ ଶବ୍ଦ କହୁଥିବାବେଳେ ''ଶିଳ୍ପ ପ୍ରକାଶ''ରେ ଏଗୁଡ଼ିକ ନିମନ୍ତେ ଶୁଦ୍ଧ ସଂସ୍କୃତ ଶବ୍ଦମାନ ବ୍ୟବହାର ହୋଇଛି, ଯେପରିକି-ଗଜାକ୍ରାନ୍ତ, ବିରାଳ, ଜାଗ୍ରତ ଓ ଉଦ୍ୟତ । ତେବେ ସର୍ବଭାରତୀୟ ସ୍ତରରେ ଏଗୁଡ଼ିକ 'ଭୟାଳ' ନାମରେ ପରିଚିତ । କଳିଙ୍ଗର ମଧ୍ୟଯୁଗୀୟ ମନ୍ଦିର ମାନଙ୍କରେ ଏହାର ବହୁଳ ବ୍ୟବହାର ହୋଇଥିବା ବେଳେ ସ୍ଥଳ ବିଶେଷରେ ଏହି ମୂର୍ତ୍ତିମାନଙ୍କର ଉପସ୍ଥାପନାରେ ବହୁ ଭିନ୍ନତା ପରିଲକ୍ଷିତ ହୁଏ ।





ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରୁ ଲକ୍ଷ୍ମଣେଶ୍ୱର ମନ୍ଦିରପୁଞ୍ଜ, ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱରର ପାଭାଗ ଉପରେ, ଆବରଣ ଦେବତାଙ୍କ ଖୋପର ନିମ୍ନ ଧାଡିରେ ଥିବା ବର୍ଗାକାର କ୍ଷେତ୍ର ମାନଙ୍କରେ ଗଜ ଓ ସିଂହର କେବଳ ମସ୍ତକ କିମ୍ବା ବିଭିନ୍ନ ଭଙ୍ଗିରେ ପୂର୍ଣ୍ଣ ଅବୟବ ମୂର୍ତ୍ତି ଦେଖିବାକୁ ମିଳେ । ପରଶୁରାମେଶ୍ୱରର ବିଭିନ୍ନ ମଣ୍ଡନକୃତିର ଚୈତ୍ୟପଦକମାନଙ୍କରେ ବିଭିନ୍ନ ପ୍ରକାର ସିଂହ ମୁଖ ଓ ବିଭିନ୍ନ ଭଙ୍ଗିରେ ସିଂହଙ୍କ ରଚନା ସମେତ କନିକପାଗରେ ଏକ ମୁଖ ଓ ଦୁଇ-ପଶ୍ଚାତଭାଗ ଥିବା କେତେକ ଦ୍ୱିପିଚ୍ଛା 'ଗଜସିଂହ' ମୂର୍ତ୍ତି ଦେଖାଯାଏ । ଏହାର କିଞ୍ଚିତ ପରବର୍ତ୍ତୀ ସମୟର ବୋଇତାଳ ଓ ଶିଶିରେଶ୍ୱର ଦେଉଳର ଉପସ୍ତମ୍ଭମାନଙ୍କ ଉପରେ ବିଭିନ୍ନ ଭାବରେ ଥିବା ହସ୍ତୀ ଯୁଗଳ ଉପରେ ବିପରୀତ ଦିଗକୁ ମୁଖ କରି ଚାରି ଗୋଡମାଡି ବସିଥିବା ସିଂହ ଯୁଗଳ ଦେଖାଯାଆନ୍ତି । ଏହା ବ୍ୟତୀତ ବିଭିନ୍ନ ଭଙ୍ଗିର ଗଜ ଓ ସିଂହ ମୂର୍ତ୍ତି ମନ୍ଦିରର ବିଭିନ୍ନ ଅଙ୍ଗରେ ସ୍ଥାନିତ ହୋଇଛି। ପରଶୁରାମେଶ୍ୱର ସମେତ ବୋଇତାଳ ଓ ଶିଶିରେଶ୍ୱର ଭଳି କେତେକ ମନ୍ଦିର ଦେହର ଉପସ୍ତମ୍ଭମାନଙ୍କର ଏକ ବର୍ଗକ୍ଷେତ୍ର ମଧ୍ୟରେ ଥିବା କୀର୍ତ୍ତିମୁଖର ଦୁଇ ପାର୍ଶ୍ୱରେ ବିପରୀତମୁଖୀ ଦୁଇ 'ଉଦ୍ୟତସିଂହ' ଦେଖିବାକୁ ମିଳେ । ବୋଇତାଳ ଦେଉଳ ଉପସ୍ତମ୍ଭରେ ଏହି ପ୍ରକାର କେତୋଟି ରଚନା ଅତି କମନୀୟ ।

ମଧ୍ୟଯୁଗର ପ୍ରାରମ୍ଭ ଅର୍ଥାତ୍ ଖ୍ରୀଃ ୧୦ମ ଶତାବ୍ଦୀର କେତେକ ମନ୍ଦିରରେ ଗଜ ଓ ସିଂହକୁ ନେଇ ବହୁ ନୂତନ ରଚନା ଦେଖିବାକୁ ମିଳେ । ମୁକ୍ତେଶ୍ୱର ମନ୍ଦିରର ଏହି ପ୍ରକାର କେତେକ କୃତି ଉଲ୍ଲେଖଯୋଗ୍ୟ । ଏହାର ଅନ୍ୟ ଗଜସିଂହ ମୂର୍ତ୍ତି ବ୍ୟତୀତ ସନ୍ଧିସ୍ଥଳରେ ଥିବା ଉଦ୍ୟତସିଂହ ଓ ଗଜବିଡ଼ାଲ ମୂର୍ତ୍ତି ଉନ୍ନତ ଶୈଳୀର ଅଟେ । ଏହି ସମୟରେ ଦେଉଳ ଦେହରେ ସୃଷ୍ଟି ହୋଇଥିବା ସଂକୀର୍ଣ୍ଣ ଅନ୍ତରାପାଗ ଗୁଡ଼ିକର ମଣ୍ଡନ ନିମନ୍ତେ ଗଜସିଂହକୁ ନେଇ କେତେକ ଆଲମ୍ବ ରଚନା କରାଯାଇଥିବା ଦେଖାଯାଏ । ଏଗୁଡ଼ିକ ମଧ୍ୟରେ ବିରାଜ, ଜାଗ୍ରତ, ଉଦ୍ୟତ ଓ କୌତୂହଳ ଭଳି କେତେକ ମୂର୍ତ୍ତି ଅନ୍ତର୍ଭୁକ୍ତ । ଏହି ରଚନାଗୁଡ଼ିକର ସଂକ୍ଷିପ୍ତ ସୂଚନା ଏଠାରେ ଦିଆଗଲା ।

**ଗଜାକ୍ରାନ୍ତ :** ଏକ ଭୟଭୀତ, ସଙ୍କୁଚିତ ହସ୍ତୀ ଉପରେ ଏହି ସିଂହ ପଛ ଦୁଇ ଗୋଡ଼ ଭାଙ୍ଗି, ସମ୍ମୁଖର ଏକ ଗୋଡ଼ ସଳଖଭାବେ ରଖି ଅନ୍ୟ ଗୋଡ଼ର ପଞ୍ଝା ଟେକି ଗଜକୁ ଆକ୍ରମଣ ବା ଆକ୍ରାନ୍ତ କରିବା ଭଙ୍ଗିରେ ଥାଏ । ମଧ୍ୟଯୁଗୀୟ ମନ୍ଦିରର ବିଭିନ୍ନ ସ୍ଥାନରେ ବିଭିନ୍ନ ଶୈଳୀର ଏହି ପ୍ରକାର ମୂର୍ତ୍ତି ଦେଖା ଯାଉଥିବା ବେଳେ ମୁଖ୍ୟତଃ ପ୍ରବେଶ ଦ୍ୱାରମାନଙ୍କ ନାଗ, ନାଗୀ ସ୍ତମ୍ଭର ନିମ୍ନ ଭାଗରେ ଏମାନଙ୍କର ଗୋଟିଏ, ଦୁଇଟି କିମ୍ବା ତିନି ମୂର୍ତ୍ତି ଏକତ୍ର ସ୍ଥାନିତ ହୋଇଥାଏ ।

**ବିରାଜ :** ପଛ ଦୁଇ ଗୋଡ଼ରେ ମନୁଷ୍ୟ ସଦୃଶ ଦଣ୍ଡାୟମାନ ହୋଇ, ସମ୍ମୁଖ ଦୁଇ ଗୋଡ଼କୁ ହସ୍ତ ସଦୃଶ ବକ୍ଷ ନିକଟରେ ରଖିଥାଏ । ଗ୍ରୀବା ବକ୍ର କରି ପୃଷ୍ଠଦେଶକୁ ଚାହିଁଥିବାବେଳେ ପୁଚ୍ଛ ବକ୍ର ହୋଇ ଦୁଇ ଗୋଡ଼ ମଧ୍ୟ ଦେଇ ଅଙ୍କୁଶ ସଦୃଶ ସମ୍ମୁଖକୁ ଝୁଲିପଡ଼ିଥାଏ । କେତେକ ସ୍ଥଳେ ଏହି ସିଂହ ଆତଙ୍କିତ ଅର୍ଥାତ୍ ଏକ ସଙ୍କୁଚିତ ହସ୍ତୀ ଉପରେ କିମ୍ବା ଅନ୍ୟ କେତେକ ସ୍ଥଳେ କଳାତ୍ମକ ଲତା-ପତ୍ର ଓ ପୁଷ୍ପଗୁଚ୍ଛ ଉପରେ ଉଭା ହୋଇଥାଏ ।



ଗଜାକ୍ରାନ୍ତ ସିଂହ



ବିରାଜ ସିଂହ



ଜାଗ୍ରତ ସିଂହ



ଉଦ୍ୟତ ସିଂହ

**ଜାଗ୍ରତ** : ଉପରୋକ୍ତ ବିରାଳ ସଦୃଶ ଦଣ୍ଡାୟମାନ ହୋଇଥିଲେହେଁ ପୃଷ୍ଠଭାଗକୁ ଚାହିଁବା ପରିବର୍ତ୍ତେ ଏହାର ଦୃଷ୍ଟି ସମ୍ମୁଖକୁ ଥାଏ । ଏହା ଉପରେ ଆରୋହଣ କରିଥିବା ଜଣେ ବୀରାଙ୍ଗନା କିମ୍ବା ବୀର ପୁରଷ ଉତ୍ତୋଳିତ ଦକ୍ଷିଣହସ୍ତରେ ଖଡ୍‌ଗ କିମ୍ବା ଏକ ବୃକ୍ଷଡାଳ ଧାରଣ କରିଥିବା ବେଳେ ଅନ୍ୟ ହସ୍ତରେ ସିଂହର ମୁଖକୁ ଯୋଗ କରୁଥିବା ନିୟନ୍ତ୍ରଣ-ରଜ୍ଜୁ ଧାରଣ କରିଥାନ୍ତି । ସିଂହର ମୁଖରୁ ନିର୍ଗତ ହୋଇ ତଳକୁ ଝୁଲିପଡ଼ିଥାଏ ପଦକଯୁକ୍ତ ତିନି ଧାରର ମୁକ୍ତାମାଳା । ଦେଉଳ ଓ ଜଗମୋହନମାନଙ୍କ ମଧ୍ୟସ୍ଥାନ ଅର୍ଥାତ ସନ୍ଧିସ୍ଥଳଗୁଡ଼ିକରେ ଏହି ପ୍ରକାର ସିଂହ ସମତଳ ସ୍ଥାନରେ ଦଣ୍ଡାୟମାନ ହୋଇଥିବା ବେଳେ ଅନ୍ତରାମାନଙ୍କରେ ଥିବା ମୂର୍ତ୍ତିଗୁଡ଼ିକ କେତେକ ସ୍ଥାନରେ ସଙ୍କୁଚିତ ହସ୍ତୀ ଉପରେ ତ, ଅନ୍ୟ କେତେକ ସ୍ଥାନରେ ଜଣେ ଯୁଦ୍ଧରତ କିମ୍ବା ପରାଜିତ ଯୋଦ୍ଧା ଉପରେ ଉଭା ହୋଇଥିବା ଦେଖାଯାଏ ।

**ଉଦ୍ୟତ** : ଶିଳ୍ପପ୍ରକାଶ ଅନୁଯାୟୀ ଉଦ୍ୟତ ସିଂହ ସର୍ବଶ୍ରେଷ୍ଠ । ଦେଉଳ ଗଣ୍ଡିରୁ ବାହାରିଥିବା ସମତଳ ପୀଠ ଉପରେ ଥିବା ଏକ ସଙ୍କୁଚିତ ହସ୍ତୀ ଉପରେ ପଛ ଦୁଇ ଗୋଡ଼ ଭରାଦେବା ସଙ୍ଗେ ସଙ୍ଗେ ସମ୍ମୁଖ ଦୁଇ ଗୋଡ଼ ଉର୍ଦ୍ଧ୍ୱକୁ ଉତ୍ତୋଳନ କରି ଲମ୍ଫଦେବା ନିମନ୍ତେ ଉଦ୍ୟତ ହେଉଥିବା ଭଙ୍ଗିରେ ରହିଥାଏ ।

ଗଜାକ୍ରାନ୍ତ ଓ ଉଦ୍ୟତ ମୂର୍ତ୍ତିଗୁଡ଼ିକ ମୁଖ୍ୟତଃ ମନ୍ଦିର ସ୍ଥାପତ୍ୟରେ ଗଣ୍ଡିରୁ ବାହାରି ଶୂନ୍ୟରୁ ଏକ ଭୂ-ସମାନ୍ତରାଳ ସୃଷ୍ଟିକରି ଗଣ୍ଡିର ସମତା ଭଙ୍ଗ କରିବା ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଆନ୍ତି । ପରବର୍ତ୍ତୀ ସମୟରେ ଏହି ମୂର୍ତ୍ତିମାନ ମନ୍ଦିର ଦ୍ୱାରଦେଶରେ ସ୍ଥାପନ କରାଯାଇ ସିଂହଦ୍ୱାରର ମର୍ଯ୍ୟାଦା ଦିଆଯାଇଥିଲା । ପୁରୀ, ଶ୍ରୀଜଗନ୍ନାଥ ମନ୍ଦିରର ପ୍ରବେଶଦ୍ୱାରମାନଙ୍କରେ ଗଜାକ୍ରାନ୍ତ ମୂର୍ତ୍ତିମାନ ସ୍ଥାପନ କରାଯାଇଥିବା ବେଳେ କୋଣାର୍କ ସୂର୍ଯ୍ୟ ମନ୍ଦିରର ନାଟମଣ୍ଡପର ପ୍ରବେଶ ପଥରେ ବିଶାଳକାୟ ଉଦ୍ୟତ ସିଂହ ମୂର୍ତ୍ତିମାନ ଶୋଭା ପାଉଛି ।

**କୌତୂହଳ** : ବିରାଳ ଓ ଜାଗ୍ରତ ଶୈଳୀର ଅନ୍ୟ ଦୁଇ ପ୍ରକାର ସିଂହ ହେଲା 'ଗଜ-ବିଡ଼ାଳ' ଓ 'ନର-ବିଡ଼ାଳ' । ଏଗୁଡ଼ିକ ଅପ୍ରାକୃତିକ ହୋଇ କୌତୂହଳ ସୃଷ୍ଟି କରୁଥିବାରୁ 'କୌତୂହଳ' କୁହାଯାଏ । ସର୍ବଭାରତୀୟ ସ୍ତରରେ ଏହି ପ୍ରକାର ମୂର୍ତ୍ତିଗୁଡ଼ିକ 'ଭୟାଳ' ନାମରେ ପରିଚିତ । ସିଂହ ମସ୍ତକ ପରିବର୍ତ୍ତେ ଗଜ-ବିଡ଼ାଳ ମୂର୍ତ୍ତିରେ ଗଜ ମସ୍ତକ ଦେଖାଯାଏ । ନିଜ ଶୁଣ୍ଢରେ ଏକ ଯୋଦ୍ଧାକୁ ଧାରଣ କରିଥିବା ବେଳେ ପାଦତଳେ ଏକ ସଙ୍କୁଚିତ ହସ୍ତୀ କିମ୍ବା ଏକ ପରାଜିତ ଯୋଦ୍ଧା ଦେଖାଯାଏ । ନର-ବିଡ଼ାଳ ମୂର୍ତ୍ତିଗୁଡ଼ିକରେ ସିଂହର ଶରୀର ହେଲେହେଁ ମନୁଷ୍ୟର ମସ୍ତକ ରହିଥାଏ । ଆଗ ଦୁଇଗୋଡ଼ ମନୁଷ୍ୟର ହସ୍ତ ସଦୃଶ କିଞ୍ଚିତ ଲମ୍ବ ହୋଇଥିବା ବେଳେ ଅଧିକାଂଶ କ୍ଷେତ୍ରରେ ମୁଖ ମଧ୍ୟରୁ ଜିହ୍ୱାଟି ବାହାରକୁ ଝୁଲି ପଡ଼ିଥିବା ଓ ଶ୍ୱାନ ଦନ୍ତ ମଧ ଦେଖା ଯାଉଥିବାରୁ ଏହା ଏକ ପିଶାଚ କିମ୍ବା ଅସୁର ଭଳି ମନେହୁଏ । ନିମ୍ନରେ ଥିବା ଏକ ପରାଜିତ ଯୋଦ୍ଧାର ମସ୍ତକ ଉପରେ ଏକ ପାଦ ରଖି ମୂର୍ତ୍ତିଟି ସମ୍ମୁଖକୁ ଚାହିଁଥାଏ । ଅନ୍ୟ କେତେକ ରଚନାରେ ଦଣ୍ଡାୟମାନ ସିଂହ ଦେହରେ ଅନ୍ୟ ପଶୁ ପକ୍ଷୀର ମସ୍ତକ ଯୋଗ ହୋଇଥାଏ । ଏଠାରେ ଯେଉଁ ପ୍ରାଣୀର ମସ୍ତକ ଥାଏ କୃତିଟି ସେହି ପ୍ରକାର 'ବିଡ଼ାଳ' ନାମରେ ପରିଚିତ ହୁଏ । ବିରାଳ ଓ ଜାଗ୍ରତ ସଦୃଶ ଏମାନେ ଆଲମ୍ବଭାବେ ଅନ୍ତରାମାନଙ୍କରେ ସ୍ଥାନିତ ହୋଇଥାଆନ୍ତି । ଏହା ବ୍ୟତୀତ ଏହି ପ୍ରକାର କ୍ଷୁଦ୍ର ମୂର୍ତ୍ତିମାନ ବିଭିନ୍ନ ମଣ୍ଡନକୃତି ସହିତ ଦେଖିବାକୁ ମିଳେ ।

# ସ୍ଥାପତ୍ୟ ସମ୍ପର୍କୀୟ ମୂର୍ତ୍ତି

**ବେକିପ୍ରତିମା :** ସ୍ଥାପତ୍ୟରେ କେତେକ ଅଂଶର ଭାର ବହନ କରିବା ନିମନ୍ତେ କିମ୍ବା ଶୂନ୍ୟ ସ୍ଥାନ ପୂରଣ ନିମନ୍ତେ କେତେକ ଛୋଟ ନିର୍ମାଣ ଆବଶ୍ୟକ ହୋଇଥାଏ । ତେବେ ଏଗୁଡ଼ିକୁ ଆକର୍ଷଣୀୟ କରିବା ନିମନ୍ତେ ବିଭିନ୍ନ ମୂର୍ତ୍ତିର ରୂପ ଦିଆ ଯାଇଥିବା ଦେଖାଯାଏ । ଏଣୁ ଏହି ମୂର୍ତ୍ତିଗୁଡ଼ିକ ସ୍ଥାପତ୍ୟର ଅଙ୍ଗ ବିଶେଷ ଅଟେ । ଏହିପରି କେତେକ ମୂର୍ତ୍ତି ମଧ୍ୟରେ ଭାରବାହକ ବା ଭାରରକ୍ଷକ, ମନ୍ଦିରଚାରିଣୀ, ବେକିଭୈରବ , ଓ କେତେକ ସିଂହ ଏବଂ ଗଜସିଂହ ମୂର୍ତ୍ତି ଅନ୍ତର୍ଭୁକ୍ତ । ଅଧିକାଂଶ ପ୍ରାଚୀନ ମନ୍ଦିର ମାନଙ୍କରେ ଏହି ପ୍ରକାର କୃତି ଦେଖା ଯାଉନଥିବା ବେଳେ ମଧ୍ୟଯୁଗ ଓ ପରବର୍ତ୍ତୀ ସମୟର ମଧ୍ୟମ ଓ ସୁଉଚ୍ଚ ମନ୍ଦିରମାନଙ୍କରେ ଉପରୋକ୍ତ ମୂର୍ତ୍ତିମାନ ଦେଖିବାକୁ ମିଳେ ।

**ଭାରବାହକ:** ଏମାନଙ୍କ ଶରୀର କୁସିତ, ଲମ୍ବୋଦର ଏବଂ ପୃଥୁଳ ଅଟେ । ସାଧାରଣତଃ ମନ୍ଦିର ଦେହର ସ୍ତମ୍ଭ; ଉପସ୍ତମ୍ଭ, ବାଡ଼ର ଉପର ଭାଗ ଏବଂ କେତେକ ସ୍ଥଳେ ପୀଠ ଦେହରେ ମଧ ଏହି ମୂର୍ତ୍ତି ଦେଖିବାକୁ ମିଳେ । ମସ୍ତକ ଓ ଉତ୍ତୋଳିତ ଦୁଇ ହସ୍ତରେ ସ୍ଥାପତ୍ୟର କୌଣସି ଅଂଶର ଭାର ବହନ କରୁଥିବା ଭଙ୍ଗିରେ, ଦୁଇପାଦ ପ୍ରସାରିତ କରି ବସିଥିବା ଦେଖାଯାଏ । ଅନ୍ୟ କେତେକ ସ୍ଥଳେ 'ବନ୍ଧ ଭଙ୍ଗିରେ ' ଏମାନଙ୍କ ଏକ କିମ୍ବା ଯୁଗଳ ମୂର୍ତ୍ତି ରହିଥାଏ ।

**ମନ୍ଦିରଚାରିଣୀ :** ଉର୍ଦ୍ଧ୍ୱରେ ଥିବା କୌଣସି ଗୁରୁ ପଦାର୍ଥର ଭାର ସମ୍ଭାଳିବା ନିମନ୍ତେ ଲମ୍ବ ଭାବେ ଯେଉ କାଷ୍ଠ, ବ୍ୟବହାର କରାଯାଏ ତାହକୁ 'ଚାର' କହନ୍ତି । ଏହି ମର୍ମରେ ମନ୍ଦିର ସ୍ଥାପତ୍ୟର ଏକ ଅଂଶର ଭାର ବହନ କରୁଥିବା ନାରୀ ମୂର୍ତ୍ତିକୁ 'ମନ୍ଦିରଚାରିଣୀ' କୁହାଯାଏ । ଏମାନେ କୁରୂପା, ମସ୍ତକରେ ଚକ୍ରାକାର କୁଞ୍ଚିତ କେଶ, କାନ୍ଧ ଓ ମସ୍ତକରେ ଭାର ବହନ କରୁଥିବା ଭଙ୍ଗିରେ, ଦୁଇ ପ୍ରସାରିତ ପାଦ ଓ ଦୁଇହସ୍ତ ଏକତ୍ର ଭୂମିରେ ଭରାଦେଇ ବସିଥିବା ଦେଖାଯାଏ । ଏହି ମୂର୍ତ୍ତି ସାଧାରଣତଃ ଆମଳକଶିଳାର ଭାରବହନ ନିମନ୍ତେ, ରାହାପାଗ ଉପରେ, ବେକି ନିକଟରେ ଅର୍ଥାତ ଆମଳକଶିଳାର ନିମ୍ନରେ ସ୍ଥାନିତ ହୋଇଥାଏ ।


ଭାରବାହକ


ମନ୍ଦିରଚାରିଣୀ



ଦ୍ୱିପିଚାସିଂହ



ବେକିଭୈରବ

**ଦ୍ୱିପିଚାସିଂହ:** ଏକ ଆବକ୍ଷ ମୁଖ ଅର୍ଥାତ ସମ୍ମୁଖଭାଗ ଏବଂ ଦୁଇଟି ପୃଷ୍ଠଭାଗ ବା ପିଚା ଥିବା ସିଂହମୂର୍ତ୍ତିକୁ ଦ୍ୱିପିଚାସିଂହ କୁହାଯାଏ । ଏମାନେ ପୃଷ୍ଠଭାଗର ଗୋଡ଼ ଭାଙ୍ଗି ଏବଂ ସମ୍ମୁଖ ଗୋଡ଼ ସଳଖ ଭାବରେ ରଖି ଦୃଢ଼ତାର ସହ ବସିଥିବା ଦେଖାଯାଏ । ମନ୍ଦିରଚାରିଣୀ ଭଳି ଏହି ମୂର୍ତ୍ତିଗୁଡ଼ିକ ମଧ୍ୟ ଆମଳକଶିଳାର ଭାର ବହନ କରିବା ନିମନ୍ତେ, କନିକପାଗର ଉପରେ , ବେକି ନିକଟରେ ସ୍ଥାନିତ ହୋଇଥାଏ । ଛୋଟ ମନ୍ଦିରରେ ଏମାନଙ୍କର ସରଳ ଓ ସୁଉଚ୍ଚ ମନ୍ଦିରମାନଙ୍କ ବେକୀରେ ଆଡ଼ମ୍ବରପୂର୍ଣ୍ଣ ମୂର୍ତ୍ତିମାନ ଦେଖିବାକୁ ମିଳେ ।

**ବେକି-ଭୈରବ:** ଭୟଙ୍କର ରବ କର୍ତ୍ତା ଶିବଙ୍କୁ 'ଭୈରବ' କୁହାଯାଏ । କଣ୍ଠ ଦେଶରୁ ଶବ୍ଦ ବ୍ରହ୍ମର ସୃଷ୍ଟି । ଏହି ମର୍ମରେ କେତେକ ଦେଉଳର କଣ୍ଠ ଅର୍ଥାତ ବେକି ନିକଟରେ 'ବେକିଭୈରବ' ମୂର୍ତ୍ତିମାନ ସ୍ଥାନିତ ହୋଇଥାଏ । ଏହି ମୂର୍ତ୍ତିଗୁଡ଼ିକୁ ଭୈରବ କୁହାଯାଉଥିବା ବେଳେ ଅଧିକାଂଶ ସ୍ଥଳେ ଯୋଗାସନରେ ଶିବଙ୍କ ମୂର୍ତ୍ତି ଦେଖାଯାଏ । ଏମାନେ ଚତୁର୍ଭୁଜ , ଷଡ଼ଭୁଜ କିମ୍ବା ଅଷ୍ଟଭୁଜ ହୋଇଥିବା ବେଳେ ହସ୍ତରେ ତ୍ରିଶୂଳ, ଜପମାଳା, କମଣ୍ଡଳୁ, ଖଟ୍ୱାଙ୍ଗ, ଖଡ୍ଗ, ବିଲ୍ୱଫଳ ଇତ୍ୟାଦି ଧାରଣ କରିଥାଆନ୍ତି । କେତେକ ସ୍ଥଳେ ହରି-ହର ଓ ଶିବ-ସୂର୍ଯ୍ୟଙ୍କ ମୂର୍ତ୍ତି ରହିଥାଏ । ଏମାନେ ହସ୍ତରେ ଯଥାକ୍ରମେ ଶଂଖ ଚକ୍ର, ଗଦା କିମ୍ବା ସୂର୍ଯ୍ୟଙ୍କ ସଙ୍କେତ ପଦ୍ମ ଧାରଣ କରିଥିବା ଦେଖାଯାଏ । କେତେକ ଦେବୀ ମନ୍ଦିରର ବେକିରେ ଭୈରବ ମୂର୍ତ୍ତି ପରିବର୍ତ୍ତେ ଦେବୀ କିମ୍ବା ଭୈରବୀ ମୂର୍ତ୍ତି ସ୍ଥାନିତ ହୋଇଥାଏ । ଏମାନଙ୍କ ସ୍ଥାନ ମୁଖ୍ୟତଃ ରାହାପାଗ ଉପରେ । ତେବେ କୋଣାର୍କର ସୂର୍ଯ୍ୟ ମନ୍ଦିର ଜଗମୋହନ ଛାତ କାନ୍ଧିରେ ନୃତ୍ୟ ଭଙ୍ଗିରେ ପ୍ରକୃତ ତ୍ରିକାଳ ଭୈରବଙ୍କ ମନୁଷ୍ୟାକୃତି ଚମତ୍କାର ପ୍ରତିମାମାନ ଦେଖିବାକୁ ମିଳେ ।

ଭୁବନେଶ୍ୱରର କେତେକ ଶିବମନ୍ଦିରର ବେକୀ ପ୍ରତିମା ଅନୁଧ୍ୟାନ କଲା ବେଳେ ଜଣାଯାଏ ଯେ-ପ୍ରାଚୀନ ମନ୍ଦିରମାନଙ୍କ ବେକୀରେ ପ୍ରାୟ କୌଣସି ମୂର୍ତ୍ତି ଦେଖାଯାଏନାହିଁ। ତେବେ ପରଶୁରାମେଶ୍ୱର ମନ୍ଦିର ବେକୀରେ ଥିବା ଦ୍ୱିପିଚାସିଂହଗୁଡ଼ିକ ବ୍ରିଟିସ୍ ଅମଳରେ ମରାମତି ବେଳେ ସ୍ଥାନିତ ହୋଇଥିବା ଜଣାଯାଏ । ଏଣୁ ଏଗୁଡ଼ିକ ପରବର୍ତ୍ତୀ ସମୟର ଅନ୍ୟ କୌଣସି ମନ୍ଦିରର ଅଂଶ ହୋଇଥିବା ସମ୍ଭବ । ତେବେ ମଧ୍ୟଯୁଗୀୟ ସୁଉଚ୍ଚ ମନ୍ଦିରମାନଙ୍କ ବେକିରେ ଉପରୋକ୍ତ ମୂର୍ତ୍ତିମାନ ବହୁଳ ଭାବରେ ଦେଖାଯାଏ । ମଧ୍ୟଯୁଗର ପ୍ରାରମ୍ଭରେ ନିର୍ମିତ ମୁକ୍ତେଶ୍ୱର ମନ୍ଦିର ବେକୀରେ କୌଣସି ପ୍ରତିମା ନଥିବା ବେଳେ ଏହାର କିଞ୍ଚିତ ପରବର୍ତ୍ତୀ ସମୟର ରାଜାରାଣୀ ଓ ବ୍ରହ୍ମେଶ୍ୱର ମନ୍ଦିରର ଅମଳକଶିଳା ତଳେ, ରାହାପାଗ ଉପରେ କେବଳ ମନ୍ଦିରଚାରିଣୀ ମୂର୍ତ୍ତି ସ୍ଥାନିତ ହୋଇଛି । ଲିଙ୍ଗରାଜ ମନ୍ଦିର ସମ୍ମୁଖ ରାହା ଉପରେ ଶିବ-ସୂର୍ଯ୍ୟଙ୍କ ମୂର୍ତ୍ତି ରହିଥିବା ବେଳେ ଅନ୍ୟ ରାହାଗୁଡ଼ିକ ଉପରେ ହରିହରଙ୍କ ଯୋଗାସନ ମୂର୍ତ୍ତି ଦେଖିବାକୁ ମିଳେ । ଏହାର କନିକ ପାଗମାନଙ୍କରେ କାରୁକଳା ପୂର୍ଣ୍ଣ ଦ୍ୱିପିଚାସିଂହ ମୂର୍ତ୍ତି ରହିଛି । ଯମେଶ୍ୱର, ସାରୀ ଦେଉଳ, ବକ୍ରେଶ୍ୱର, କପିଳେଶ୍ୱର ଇତ୍ୟାଦି ମନ୍ଦିର ମାନଙ୍କର ବେକିରେ ଏହି ପ୍ରକାର ଭୈରବ ଓ ଦ୍ୱିପିଚାସିଂହ ଦେଖାଯାଉଥିବା ବେଳେ ପୂର୍ବମୁଖ ରାହାପାଗ ଉପରେ ସାଧାରଣତଃ ଶିବ-ସୂର୍ଯ୍ୟ ମୂର୍ତ୍ତି ସ୍ଥାନିତ ହୋଇଥାଆନ୍ତି । ମେଘେଶ୍ୱର ମନ୍ଦିରର ରାହାପାଗମାନଙ୍କରେ ଏହି ପ୍ରକାର ଶିବଙ୍କ ପ୍ରତିମା ରହିଥିବା ବେଳେ କନିକପାଗ ଉପରେ ଦ୍ୱିପିଚାସିଂହ ପରିବର୍ତ୍ତେ ମନ୍ଦିରଚାରିଣୀ ସ୍ଥାନପାଇଥିବା ଏକ ବ୍ୟତିକ୍ରମ ।

ଭୁବନେଶ୍ୱରର ଅନନ୍ତ-ବାସୁଦେବ ମନ୍ଦିର ସମେତ ଲିଙ୍ଗରାଜ ମନ୍ଦିର ପରିସରର ନୃସିଂହ ମନ୍ଦିର ଓ ଲିଙ୍ଗରାଜଙ୍କ ପଶ୍ଚାଦ୍ ଭାଗରେ ଥିବା ଦୁଇଟି ବିଷ୍ଣୁମନ୍ଦିର ବେକିର ରାହାପାଗ ଉପରେ ଯୋଡ଼ ହସ୍ତରେ, ଆଣ୍ଠୁମାଡ଼ି ବସିଥିବା ଗରୁଡ଼ ପ୍ରତିମା ଦେଖିବାକୁ ମିଳେ । ସାକ୍ଷୀଗୋପାଳର ଗୋପୀନାଥଙ୍କ ମନ୍ଦିର ରାହାପାଗ ଉପରେ ମଧ୍ୟ ଏହି ପ୍ରକାର ଗରୁଡ଼ ମୂର୍ତ୍ତିସହ କନିକପାଗ ଉପରେ ଦ୍ୱିପିଚାସିଂହ ସ୍ଥାନିତ ହୋଇଛି । ଲିଙ୍ଗରାଜ ମନ୍ଦିର ପରିସରର ପାର୍ବତୀ ଦେବୀଙ୍କ ମନ୍ଦିର ବେକିରେ ଭୈରବ ପରିବର୍ତ୍ତେ ଦେବୀଙ୍କର ବିଭିନ୍ନ ରୂପ ସହ କନିକପାଗମାନଙ୍କ ଉପରେ ପାରମ୍ପାରିକ ଦ୍ୱିପିଚାସିଂହ ଦେଖାଯାଏ । ଶ୍ରୀଜଗନ୍ନାଥ ମନ୍ଦିର ବେକିରେ ମଧ୍ୟ ବିଷ୍ଣୁଙ୍କ ବାହନ ଗରୁଡ଼ ସ୍ଥାନିତ ହୋଇଛନ୍ତି ।

## ଗର୍ଗଯଳ

ଦେଉଳର ଗର୍ଭଗୃହ ମଧ୍ୟରେ ଅଧିଷ୍ଠିତ ଶିବଲିଙ୍ଗ କିମ୍ବା ଅନ୍ୟ ଦେବ ଦେବୀଙ୍କ ଅଭିଷେକ ଜଳ ନିର୍ଗତ ନିମନ୍ତେ ଥିବା ପାଦୁକ ନଳା ମୁଖରେ ଥିବା ମକର ବା କୁମ୍ଭୀର ମୁଖକୁ 'ଗର୍ଗଯଳ' କୁହାଯାଏ । ଏହାକୁ ମକର ମୁଖ କୁହାଯାଉଥିବା ବେଳେ ଅଧିକାଂଶ କ୍ଷେତ୍ରରେ ଏହା ମକର ଓ ହସ୍ତୀ ମୁଖର ଏକ ମିଶ୍ରିତ ରଚନା । କେତେକ ପୁରାଣ ଓ ଶିଳ୍ପଶାସ୍ତ୍ରରେ ଏହି ପ୍ରକାର କୃତିକୁ 'ମାତଙ୍ଗ-ମକର' ଭାବେ ବର୍ଣ୍ଣନା କରାଯାଇଛି । ଏଠାରେ ମାତଙ୍ଗ ଅର୍ଥାତ୍ ହସ୍ତୀ ଓ ମକର ଅର୍ଥାତ୍ କୁମ୍ଭୀର, ଉଭୟ ଜଳ ପାନ କରି

ତାହାକୁ ମୁଖରୁ ନିର୍ଗତ କରି ପାରନ୍ତି । ଅନ୍ୟ ଭାବରେ ଦେଖାଯାଏ  ଯେ, ମକର ଜଳ ଦେବତା ବରୁଣ ତଥା ଜଳ ଦେବୀ ଗଙ୍ଗାଙ୍କ ବାହନ । ହସ୍ତୀ ବର୍ଷାର ଦେବତା ଇନ୍ଦ୍ରଙ୍କ ବାହନ । ଏଣୁ ଏଠାରେ ଦୁଇ ପ୍ରାଣୀଙ୍କ ମିଶ୍ରିତ ରଚନାର ତାତ୍ପର୍ଯ୍ୟ ରହିଛି । ଏହି ମର୍ମରେ ମନ୍ଦିରର ପବିତ୍ର ପାଦୁକ ନଳା ମୁଖ ନିମନ୍ତେ ଶିଳ୍ପୀର ପରିକଳ୍ପନା ଯଥାର୍ଥ ମନେହୁଏ ।



ମକର-ଗର୍ଗଯଳ



ମାତଙ୍ଗ-ମକର ଗର୍ଗଯଳ

ଅଧିକାଂଶ ସ୍ଥଳେ ପାଦୁକା ନଳା ବା ଗର୍ଗଯଳର ମୁଖ ଉତ୍ତର ଦିଗକୁ ରହିଥାଏ । ବିଭିନ୍ନ ସମୟର ମନ୍ଦିରମାନଙ୍କରେ ଭିନ୍ନ ଭିନ୍ନ ଶିଳ୍ପୀ ମାତଙ୍ଗ-ମକର କିମ୍ବା ମକର ମୁଖକୁ ଭିନ୍ନ ଭିନ୍ନ ଭାବରେ ରୂପ ଦେଇଥିବା ବେଳେ କେତେକ ମନ୍ଦିରର ଗର୍ଗଯଳରେ ଅନ୍ୟ ମୂର୍ତ୍ତି ମଧ ଦେଖାଯାଏ । କୋଣାର୍କ ମହାଗାୟତ୍ରୀ ମନ୍ଦିରର ଗର୍ଗଯଳରେ କେବଳ ମକର ମୁଖ ରହିଥିବା ବେଳେ ସୂର୍ଯ୍ୟ ମନ୍ଦିର, ନାଟମଣ୍ଡପରେ ଜଳ ନିଷ୍କାସନ ନିନ୍ତେ ଥିବା ଦୁଇ ଗର୍ଗଯଳରୁ ଗୋଟିକରେ ନାରୀ ଓ ଅନ୍ୟଟିରେ ପୁରୁଷ ଲିଙ୍ଗରୁ ଜଳ ନିର୍ଗତ ହେବାର ଅଭିନବ ପରିକଳ୍ପନା କରାଯାଇଛି । ଆନ୍ଧ୍ରର ମୁଖଲିଙ୍ଗମ୍ ମନ୍ଦିରର ଗର୍ଗଯଳରେ ନାଗ ଦେବତା ଧାରଣ କରିଥିବା କୁମ୍ଭରୁ ଜଳ ନିର୍ଗତ ହେବା ବ୍ୟବସ୍ଥା ରହିଛି ।

# ମନ୍ଦିରଗାତ୍ରର ଅନ୍ୟାନ୍ୟ ମୂର୍ତ୍ତି

ଭାରତୀୟ କାବ୍ୟ, କବିତା, ନୃତ୍ୟ ସଙ୍ଗୀତ ଭଳି ମନ୍ଦିର ଗାତ୍ରରେ ମଧ ନାରୀ ଓ ନାରୀ ଭିତ୍ତିକ ମୂର୍ତ୍ତିକଳା ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଛି । ପ୍ରାଚୀନ ଯୁଗର କ୍ଷୁଦ୍ର ଓ ମଧ୍ୟମ ଆକାରର ମନ୍ଦିର ଗୁଡିକରେ ନାରୀ, ମିଥୁନ ଓ ମୈଥୁନ ମୂର୍ତ୍ତିର ସଂଖ୍ୟା ସିମୀତ ଥିବା ବେଳେ ମଧ୍ୟଯୁଗୀୟ ମନ୍ଦିରମାନଙ୍କରେ ଏଗୁଡିକର ସ୍ଥାନ ସୁପରିକଳ୍ପିତ ଓ ସଂଖ୍ୟା ଅଧିକ । ଅଧିକାଂଶ ଶିଳ୍ପ ପୋଥିରେ ନାରୀ ମୂର୍ତ୍ତିର ବର୍ଣ୍ଣନା ବିଶଦ ଭାବେ  ପ୍ରାପ୍ତ ହେଉନଥିବା ବେଳେ 'ଶିଳ୍ପ ପ୍ରକାଶ' ପୁସ୍ତକରେ କେତେକ ନାରୀ ମୂର୍ତ୍ତିର ନାମ ଓ ବର୍ଣ୍ଣନା ରହିଛି । ଏଥିରେ ପ୍ରତ୍ୟେକ ନାମ ସହିତ ଏକ ନିର୍ଦ୍ଦିଷ୍ଟ ଭଙ୍ଗି ଉଲ୍ଲେଖ ଥିବା ବେଳେ ବାସ୍ତବ କ୍ଷେତ୍ରରେ, ବିଭିନ୍ନ ସମୟରେ ନିର୍ମିତ ମନ୍ଦିରମାନଙ୍କରେ ଏହି ପ୍ରକାର ମୂର୍ତ୍ତିରେ ବହୁ ଭିନ୍ନତା ପରିଲକ୍ଷିତ ହୁଏ । ଏଣୁ ଏଠାରେ ମୂର୍ତ୍ତିର ନାମ ସହିତ ତା'ର ମୌଳିକତାର ସୂଚନା ଦିଆଯାଇଛି । ଏହା ବ୍ୟତୀତ ମନ୍ଦିର ଗାତ୍ରରେ ଦେଖା ଯାଉଥିବା ବହୁ ଭିନ୍ନ ଭାବ ଭଙ୍ଗିର ମୂର୍ତ୍ତି କଳିଙ୍ଗ ମନ୍ଦିର କଳାର ଏକ ବିଶେଷତ୍ୱ ।

**ନାରୀମୂର୍ତ୍ତି :** ଅଳସା; ତ୍ରିଭଙ୍ଗରେ ଦଣ୍ଡାୟମାନ, ଗୋଟିଏ ପାଦ ପୃଷ୍ଠ ଭାଗରେ ଭରାଦେଇ ଦୁଇ ଛନ୍ଦିତ ହସ୍ତକୁ ଊର୍ଦ୍ଧ୍ୱକୁ ରଖି ଅଳସ ଭାଙ୍ଗୁଥିବା ମୂର୍ତ୍ତି । **ତୋରଣା:** ଗୃହର ପ୍ରବେଶଦ୍ୱାର ନିକଟରେ, ତ୍ରିଭଙ୍ଗରେ ଦଣ୍ଡାୟମାନ ଅପେକ୍ଷାରତ ନାରୀ । ଡାଳମାଳିକା : ବୃକ୍ଷର ଏକ ଶାଖାକୁ ନିଜ ମସ୍ତକ ଉପରେ ମାଳା ସଦୃଶ ଧାରଣ କରିଥିବା ମୂର୍ତ୍ତି । ଏହି ପ୍ରକାର ନାରୀ ମୂର୍ତ୍ତି ଶାଳଭଞ୍ଜିକା ନାମରେ ମଧ୍ୟ ପରିଚିତ । **ପଦ୍ମଗନ୍ଧା:** ହସ୍ତରେ ଏକ ପଦ୍ମପୁଷ୍ପ ଧାରଣକରି କୌଣସି କମନୀୟ ଭଙ୍ଗିରେ ଥିବା ମୂର୍ତ୍ତି । **ଦର୍ପଣା:** ଦର୍ପଣ ଧାରଣକରି ନିଜର ମୁଖ ଦର୍ଶନ କରୁଥିବା ନାରୀ । **ବିନ୍ୟାସା:** ଏହା ସାବଲୀଳ ଭଙ୍ଗିରେ ହୃଦୟର ଭାବ ଅନୁଭବ କରୁଥିବା ମୂର୍ତ୍ତି କିମ୍ବା କେଶବିନ୍ୟାସ କରୁଥିବା ନାରୀ । **କେତକୀଭରଣା:** କେତକୀ ପୁଷ୍ପ ନିଜ ଗଭାରେ ଲାଗାଇଥିବା କିମ୍ବା ଲଗାଉଥିବା କମନୀୟ ଭଙ୍ଗିର ମୂର୍ତ୍ତି । **ମାତୃମୂର୍ତ୍ତି :** ସନ୍ତାନକୁ ବାତ୍ସଲ୍ୟ ଭାବ ପ୍ରଦର୍ଶନ କରୁଥିବା ନାରୀ ପ୍ରତିମା । **ଚାମରା:** ହସ୍ତରେ ଏକ ଚାମର ଧାରଣ କରିଥିବା ନାରୀ ମୂର୍ତ୍ତି । **ଗୁଣ୍ଠନା:** ଓଢ଼ଣା ମଧ୍ୟରେ ଲଜ୍ଜା ଭାବ ପ୍ରଦର୍ଶନ କରୁଥିବା ମୂର୍ତ୍ତି । **ନର୍ତ୍ତକୀ:** ଯେ କୌଣସି ନୃତ୍ୟ ଭଙ୍ଗିରେ ଥିବା ନାରୀ । **ଶୁକସାରୀକା:** ହସ୍ତରେ ଶୁକ ପକ୍ଷୀ କିମ୍ବା ସାରି ଧାରଣ କରିଥିବା ରମଣୀ । **ମର୍ଦ୍ଦଳା:** ମର୍ଦ୍ଦଳ ବାଦନ କରୁଥିବା ନାରୀ ପ୍ରତିମା । **ନୂପୁରପାଦିକା :** ପାଦରେ ନୂପୁର ପରିଧାନ କରୁଥିବା ନାରୀ । ଏହା ବ୍ୟତୀତ କେତେକ ନାରୀ ମୂର୍ତ୍ତି ବସ୍ତ୍ର ପରିଧାନ କରୁଥିବା, ବୀଣା, ବଂଶୀ ତଥା ଅନ୍ୟ ବାଦ୍ୟ ଯନ୍ତ୍ର ବାଦନ କରୁଥିବା, ମର୍କଟ ନାରୀର ବସ୍ତ୍ର ଟାଣୁଥିବା ଇତ୍ୟାଦି ବହୁ କଳାତ୍ମକ ଭଙ୍ଗିର ରଚନାମାନ ଦେଖାଯାଏ ।



ଡାଳମାଳିକା, ରାଜାରାଣୀ ମନ୍ଦିର



ମର୍ଦ୍ଦଳା, ସୂର୍ଯ୍ୟମନ୍ଦିର, କୋଣାର୍କ

**ମିଥୁନମୂର୍ତ୍ତି** : ମନ୍ଦିର ଗାତ୍ରରେ ମିଥୁନ ବା ନାରୀ-ପୁରୁଷର ଯୁଗଳ ମୂର୍ତ୍ତି ବହୁବିଧ ପ୍ରକାରେ ଦେଖାଯାଏ । ଏଥି ମଧ୍ୟରେ ଦମ୍ପତ୍ତି,ପ୍ରେମିକ-ପ୍ରେମିକା, ନର୍ତ୍ତକ-ନର୍ତ୍ତକୀ ବ୍ୟତୀତ ପରକୀୟା ପ୍ରିତୀ ଓ ଭିନ୍ନ ଭିନ୍ନ ଅର୍ଥ ସୂଚକ ବହୁ ମୂର୍ତ୍ତି ଅନ୍ତର୍ଭୁକ୍ତ ।

**ମୈଥୁନମୂର୍ତ୍ତି** : ମନ୍ଦିର ଗାତ୍ରର ମୈଥୁନ ମୂର୍ତ୍ତି ସମ୍ପର୍କରେ ବିଦ୍ୱାନମାନେ ଧର୍ମଶାସ୍ତ୍ର ଉପରେ ଆଧାରିତ ବହୁବିଧ ମତ ପୋଷଣ କରିଥାଆନ୍ତି । କେତେକ ଶିଳ୍ପ ପୋଥିର ସରଳ ମତ ଅନୁଯାୟୀ, ମୈଥୁନ ମୂର୍ତ୍ତି ଥିବା ମନ୍ଦିରକୁ ଇନ୍ଦ୍ର ବଜ୍ରାଘାତ କରନ୍ତି ନାହିଁ । ତେବେ ବାସ୍ତବତା ଏହି ଯେ, ଖ୍ରୀ: ୮ମ ରୁ ୧୦ମ ଶତାବ୍ଦୀ ମଧ୍ୟରେ ଭାରତର ବିଭିନ୍ନ ପ୍ରାନ୍ତରେ ବୌଦ୍ଧ ଓ ବ୍ରାହ୍ମଣ୍ୟ ତନ୍ତ୍ର ମତବାଦର ପ୍ରଚାର, ପ୍ରସାର ଘଟିଥିଲା । ବ୍ରାହ୍ମଣ୍ୟ କୌଳ ଓ କାପାଳିକମାନଙ୍କ ପଞ୍ଚମକାର ତତ୍ତ୍ୱର ମୈଥୁନ ଏକ ମୁଖ୍ୟ ଅଙ୍ଗ ଅଟେ । ସୃଷ୍ଟିତତ୍ତ୍ୱ ବ୍ୟତୀତ ଏହା ସିଦ୍ଧି ଲାଭର ଏକ ମୁଖ୍ୟ ମାଧ୍ୟମ ବୋଲି ବିଶ୍ୱାସ କରାଯାଉଥିବାରୁ,ମନ୍ଦିର ଗାତ୍ରରେ ମୈଥୁନ ମୂର୍ତ୍ତି ସ୍ଥାନିତ ହୋଇଥାଏ । ଏହା ସହିତ କୌଳ ଓ କାପାଳିକ ମାନଙ୍କ ବିଭିନ୍ନ କାର୍ଯ୍ୟ କଳାପ ମନ୍ଦିର ମୂର୍ତ୍ତିକଳାରେ ଦେଖାଯାଏ । କେତେକ ଏହାକୁ କାମଶାସ୍ତ୍ରର ରୂପାୟନ ବୋଲି କହୁଥିବା ବେଳେ, କଳିଙ୍ଗ ମନ୍ଦିର ଗାତ୍ରର ଏହି ପ୍ରକାର ମୂର୍ତ୍ତିଗୁଡିକ କାମଶାସ୍ତ୍ରର କୌଣସି ନିର୍ଦ୍ଦିଷ୍ଟ ଧାରାକୁ ସୂଚାଏ ନାହିଁ । ପ୍ରାଚୀନ ମନ୍ଦିର ମାନଙ୍କରେ ମୈଥୁନ ମୂର୍ତ୍ତି ସଂଖ୍ୟା ଯଥେଷ୍ଟ କମ୍ ରହିଥିବା ବେଳେ ଖ୍ରୀ: ୧୧ଶ ଶତାବ୍ଦୀ ଓ ତାର ପରବର୍ତ୍ତୀ ସମୟର ମନ୍ଦିରମାନଙ୍କରେ ଏହି ପ୍ରକାର ମୂର୍ତ୍ତିକଳା ଶୈଳୀର ବିକାଶ ଘଟିବା ସହିତ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି । କୋଣାର୍କ, ସୂର୍ଯ୍ୟମନ୍ଦିରର ମୈଥୁନ ମୂର୍ତ୍ତିଗୁଡିକ ଉଚ୍ଚକୋଟୀର ଏବଂ ଭାବ ଉଦ୍ଦୀପକ ।



ପ୍ରାଚୀନ ଲକ୍ଷ୍ମଣେଶ୍ୱର ମନ୍ଦିରର ମୈଥୁନ ମୂର୍ତ୍ତି

**ପୌରାଣିକ ଦୃଶ୍ୟ:** ମୁଖ୍ୟତଃ ଶିବ ପୁରାଣ, ରାମାୟଣ ଓ ଭାଗବତ ଆଖ୍ୟାନମାନଙ୍କରୁ କେତେକ ଦୃଶ୍ୟ ଓଡିଶାର ଅଳ୍ପ କେତେକ ମନ୍ଦିର ଗାତ୍ରର ମୂର୍ତ୍ତିକଳାରେ ଦେଖିବାକୁ ମିଳେ । ଏହା ମଧ୍ୟରେ ଶିବ ପୁରାଣର ଦୃଶ୍ୟ ସର୍ବାଧିକ । ଏଥିମଧ୍ୟରୁ ଶିବ ବିବାହ, ଶିବ-ପାର୍ବତୀଙ୍କ ପଶାଖେଳ, ରାବଣର କୈଳାସ ଉତ୍ପାଟନ ଦୃଶ୍ୟ ବା ରାବଣାନୁଗ୍ରହ ମୂର୍ତ୍ତି, ଶିବଙ୍କ ଭିକ୍ଷାଟନମୂର୍ତ୍ତି, ଅନ୍ଧକାସୁର ତଥା ଅନ୍ୟ ଅସୁର ବଧ ଦୃଶ୍ୟଗୁଡିକ ଉଲ୍ଲେଖଯୋଗ୍ୟ । ଏହି ପ୍ରକାର କେତେକ ମୂର୍ତ୍ତି ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର,

ସୁବର୍ଣ୍ଣଜଳେଶ୍ୱର, ପରଶୁରାମେଶ୍ୱର, ବୋଇତାଳ, ଲିଙ୍ଗରାଜ, ଚିତ୍ରକାରିଣୀ ମନ୍ଦିର ସମେତ ଯାଜପୁର, ସିଂହନାଥ, ଶୁକ୍ଳେଶ୍ୱର, କୁଣ୍ଡେଶ୍ୱର, ବିଷ୍ଣୁପୁର ଠାରେ ଥିବା ପ୍ରାଚୀନ ଓ ମଧ୍ୟଯୁଗୀୟ ଶିବ ମନ୍ଦିରମାନଙ୍କରେ ଦେଖିବାକୁ ମିଳେ । ରାମାୟଣର ଦୃଶ୍ୟ ମୂର୍ତ୍ତିଗୁଡିକର ଆଖ୍ୟାନର କୌଣସି ନିର୍ଦ୍ଦିଷ୍ଟ ବିଷୟ ଏକାଧିକ ମନ୍ଦିରରେ ଦେଖିବାକୁ ମିଳେ ନାହିଁ । ତେବେ ବିଭିନ୍ନ ପ୍ରକାର ରାମାୟଣ ଦୃଶ୍ୟ ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ସମେତ ବାଣପୁରର ଦକ୍ଷପ୍ରଜାପତି, ଯାଜପୁର, ଗଣେଶ୍ୱରପୁର, ସିଂହନାଥ, ବିଷ୍ଣୁପୁରର ଶିବମନ୍ଦିର ଓ ଚଉରାଶି ଗ୍ରାମର ବାରାହୀ ମନ୍ଦିର ଗାତ୍ରରେ ଦୃଷ୍ଟିଗୋଚର ହୁଏ । କେତେକ ମଧ୍ୟଯୁଗୀୟ ମନ୍ଦିରର ମୂର୍ତ୍ତିକଳାରେ ଭାଗବତ ବା କୃଷ୍ଣଗାଥାର ଦୃଶ୍ୟମାନ ଦେଖାଯାଏ । ଏଥିମଧ୍ୟରେ ଶ୍ରୀକୃଷ୍ଣଙ୍କ ଜନ୍ମ, ବସୁଦେବଙ୍କ କୃଷ୍ଣଙ୍କୁ ନେଇ ଯମୁନା ପାର, ଯଶୋଦାଙ୍କ ମାତୃସ୍ନେହ, ଶ୍ରୀକୃଷ୍ଣଙ୍କ ଗୋଚାରଣ ଓ ବାଲ୍ୟଲୀଳାର ବିଭିନ୍ନ ଆଖ୍ୟାନ ଅନ୍ତର୍ଭୁକ୍ତ । ଭୁବନେଶ୍ୱରର ଲିଙ୍ଗରାଜ, ବ୍ରହ୍ମେଶ୍ୱର, ଚିତ୍ରକାରିଣୀ ମନ୍ଦିର



ସୁବର୍ଣ୍ଣଜଳେଶ୍ୱର ମନ୍ଦିରର ରାମାୟଣ ଦୃଶ୍ୟ

ସମେତ ଗଣେଶ୍ୱରପୁର , ଚଣ୍ଡେଶ୍ୱର, କିସନପୁରର ଶିବମନ୍ଦିର ଗାତ୍ରରେ ଏହି ପ୍ରକାର ମୂର୍ତ୍ତି ରହିଛି । ଏହା ବ୍ୟତୀତ ବୈଷ୍ଣବ ବିଶ୍ୱାସର ଦଶାବତାର ମୂର୍ତ୍ତି ଭୁବନେଶ୍ୱରର ମଣିଭଦ୍ରେଶ୍ୱର, ନିଆଳିର ମାଧବ ମନ୍ଦିର ସମେତ ପଶ୍ଚିମ ଓଡିଶାର କେତେକ ମନ୍ଦିର ଗାତ୍ରରେ ଦେଖାଯାଏ । ଲକ୍ଷ୍ୟ କରାଯାଏ ଯେ, ସମାଜରେ ଯେଉଁ ସମୟରେ ଯେଉଁ ଧର୍ମଧାରା ବା ପୁରାଣ ଅଧିକ ଲୋକପ୍ରିୟ, ସେହି ସମୟର ମନ୍ଦିର ମୂର୍ତ୍ତିକଳାରେ ତାରି ବିଷୟବସ୍ତୁ ଅଧିକ ପ୍ରତିଫଳିତ ହୋଇଥାଏ ।

**ରାଜକୀୟ ଦୃଶ୍ୟାବଳୀ:** ପ୍ରାଚୀନ ମନ୍ଦିର ଗାତ୍ରର ମୂର୍ତ୍ତିକଳାରେ ରାଜା, ମହାରାଜାମାନଙ୍କ କାର୍ଯ୍ୟକଳାପର ଦୃଶ୍ୟ ପ୍ରାୟ ଦେଖିବାକୁ ମିଳେ ନାହିଁ । ମଧ୍ୟଯୁଗୀୟ ପ୍ରଥମାର୍ଦ୍ଧର ମନ୍ଦିରମାନଙ୍କ ଦେହରେ ଏହି ପ୍ରକାର ମୂର୍ତ୍ତିର ସଂଖ୍ୟା କମ୍ ହୋଇଥିବା ବେଳେ ଦ୍ୱିତୀୟାର୍ଦ୍ଧର ନିର୍ମାଣମାନଙ୍କରେ ଏହାର ସଂଖ୍ୟା ସର୍ବାଧିକ । ଏହି ରାଜକୀୟ ରଚନାଗୁଡିକ ମଧ୍ୟରେ, ରାଜା ତା'ଙ୍କ ପାରିଷଦମାନଙ୍କ ସହିତ, ରାଣୀ ପରିଚାରିକମାନଙ୍କ ସହିତ, ରାଜାଙ୍କ ଶିକାର ଦୃଶ୍ୟ, ଯୁଦ୍ଧାଭ୍ୟାସ, ପାଲିଙ୍କିରେ ଯାତ୍ରା, ନୌକାବିହାର, ଦେବଦେବୀଙ୍କୁ ପୂଜାର୍ଚ୍ଚନା ଇତ୍ୟାଦି ଦୃଶ୍ୟ ଅନ୍ତର୍ଭୁକ୍ତ । ଯୁଦ୍ଧଯାତ୍ରା ଓ ରାଜାଙ୍କ ଦାନପତ୍ର ଘୋଷଣା ପାଠ କରୁଥିବା ଦୃଶ୍ୟ ମଧ ଦେଖିବାକୁ ମିଳେ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ କୋଣାର୍କ ସୂର୍ଯ୍ୟ ମନ୍ଦିର ଗାତ୍ରର ରାଜକୀୟ ଦୃଶ୍ୟାବଳୀ ମୂର୍ତ୍ତିଗୁଡିକ ଉଲ୍ଲେଖଯୋଗ୍ୟ ।



ରାଜକୀୟ ଦୃଶ୍ୟ, କୋଣାର୍କ



ଶିକ୍ଷାନିକେତନ, ସାମାଜିକ ଦୃଶ୍ୟ
ପୁରୀର ଏକ ମନ୍ଦିରରୁ

**ସାମାଜିକ ଦୃଶ୍ୟାବଳୀ :** ଶିଳ୍ପୀ ଜଣେ ସାମାଜିକ ବ୍ୟକ୍ତି । ଏଣୁ ତା'ର କୃତିରେ ସାମାଜିକ ଦୃଶ୍ୟ ରହିବା ସ୍ୱାଭାବିକ । ଜଣେ ଦକ୍ଷ ସ୍ଥପତି ହେବା ନିମନ୍ତେ ଶିଳ୍ପୀକୂଳର ଜଣେ ବ୍ୟକ୍ତି ନିଜ ପିତୃପୁରୁଷଙ୍କ ଠାରୁ କୌଳିକ କାର୍ଯ୍ୟ ପ୍ରଶିକ୍ଷଣ ନେବା ବ୍ୟତୀତ ସମାଜର ଜ୍ଞାନୀ, ପଣ୍ଡିତ, ପୁରୋହିତ ଓ ଜ୍ୟୋତିଷମାନଙ୍କ ଠାରୁ ବିବିଧ ଜ୍ଞାନ ଆହରଣ କରୁଥିଲେ । ଏଣୁ ମନ୍ଦିର ମାନଙ୍କରେ ବିଭିନ୍ନ ଭାବରେ ଶିକ୍ଷାୟତନମାନଙ୍କ ଦୃଶ୍ୟ ଦେଖିବାକୁ ମିଳେ । ଏହି ପ୍ରକାର ମୂର୍ତ୍ତିଗୁଡିକ 'ଶିକ୍ଷାସଦନ' ଭାବେ ପରିଚିତ ହେଉଥିବା ବେଳେ ଏଥିରେ ଜଣେ ଜ୍ଞାନୀ ବ୍ୟକ୍ତି କେତେକ ଲୋକଙ୍କ ଗହଣରେ ରହିଥାଆନ୍ତି । କେତେକ ଦୃଶ୍ୟରେ ଯୁଦ୍ଧ ଅସ୍ତ୍ର ଧାରଣ କରିଥିବା ସୈନ୍ୟମାନେ ମଧ ଦେଖାଯାଆନ୍ତି । ବୋଧ ହୁଏ ସେ ସମୟରେ ଯୁଦ୍ଧ ପୂର୍ବରୁ ବିଜ୍ଞ ଲୋକଙ୍କ ସହିତ ପରାମର୍ଶ କରାଯାଉଥିଲା । ଅନ୍ୟ ସାମାଜିକ ଦୃଶ୍ୟ ମଧରେ ବିଚାରାଳୟ , ବିଦେଶ ଯାତ୍ରା, ଗୋରକ୍ଷଣ ଓ ଗୋଦାନ, ହାତୀଖେଦା, ବିବାହ, ସାଧୁ-ସନ୍ୟାସୀଙ୍କ ବିଭିନ୍ନ କାର୍ଯ୍ୟକଳାପ ଭଳି ବହୁ ଦୃଶ୍ୟ ଅନ୍ତର୍ଭୁକ୍ତ ।



# ସ୍ଥାପତ୍ୟ ସମ୍ପର୍କୀୟ ମଣ୍ଡନକୃତି

ମୁଖ୍ୟତଃ ଦୁଇ ପ୍ରକାର କାର୍ଯ୍ୟ ଦ୍ୱାରା ମନ୍ଦିରର ସୌନ୍ଦର୍ଯ୍ୟ ବୃଦ୍ଧି ଘଟିଥାଏ । ପ୍ରଥମ ପର୍ଯ୍ୟାୟରେ ସ୍ଥପତି ଓ ତା'ଙ୍କ ସହଯୋଗୀ କାରିଗରମାନେ ମୁଖ୍ୟ ନିର୍ମାଣ ସହିତ ବିଭିନ୍ନ ପ୍ରକାର ସରଳ ଓ ବକ୍ରରେଖାର ନିର୍ମାଣ ଦ୍ୱାରା ମନ୍ଦିର ଅଙ୍ଗପ୍ରତ୍ୟଙ୍ଗରେ ଛାଇ-ଆଲୁଅର ଖେଳ ସୃଷ୍ଟି କରି ଥାଆନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ଏହି ଅଙ୍ଗ ପ୍ରତ୍ୟଙ୍ଗ ଉପରେ କାରୁକଳା ଶିଳ୍ପୀମାନେ ବିଭିନ୍ନ ପ୍ରକାର ନକ୍ସା ଉତ୍କୀର୍ଣ୍ଣ କରି ଏହାର ସୌନ୍ଦର୍ଯ୍ୟକୁ ବହୁଗୁଣିତ କରନ୍ତି । କେତେକ ସ୍ଥଳେ ଦେଖାଯାଏ ଯେ, କେବଳ ପ୍ରଥମ ପର୍ଯ୍ୟାୟର କାର୍ଯ୍ୟ ସମାପ୍ତ କରି ମନ୍ଦିରକୁ ସେହି ଅବସ୍ଥାରେ ଛାଡ଼ିଦିଆ ଯାଇଛି । ଭୁବନେଶ୍ୱରରେ ଏହି ପ୍ରକାର ବହୁ ଛୋଟ ଓ ମଧ୍ୟମ ଆକାରର ମନ୍ଦିର ରହିଥିବା ବେଳେ, ଭାସ୍କରେଶ୍ୱର ମନ୍ଦିର ଏଠାରେ ଉଦାହରଣ ଯୋଗ୍ୟ । ଏଥିରେ ସ୍ଥାପତ୍ୟ ସମ୍ପର୍କୀୟ ମଣ୍ଡନକୃତି ସମାପ୍ତି ପରେ ମନ୍ଦିର ଦେହରେ କାରୁକଳା ଓ ମୂର୍ତ୍ତିକଳା ଉତ୍କୀର୍ଣ୍ଣ ହୋଇ ନାହିଁ । ସ୍ଥାପତ୍ୟ ସମ୍ପର୍କୀୟ କେତେକ ମଣ୍ଡନକୃତିର ସୂଚନା ନିମ୍ନରେ ଦିଆଗଲା ।

ପୂର୍ବ ଅଧ୍ୟାୟରେ, ଦେଉଳର ଅଙ୍ଗପ୍ରତ୍ୟଙ୍ଗ ବର୍ଣ୍ଣନା ବେଳେ ପଞ୍ଚକର୍ମର ସୂଚନା ଦିଆଯାଇଛି । ଏହି ପଞ୍ଚକର୍ମ ଅର୍ଥାତ୍ ଖୁରା, କୁମ୍ଭ, ପଟି, କନି ଓ ବସନ୍ତ ପ୍ରତ୍ୟେକ ଏକ ଏକ ପ୍ରକାର ମୌଳିକ ଧାର ମଣ୍ଡନକୃତି, ଯାହାକି ତଳପତନ ସହିତ ସମାନ୍ତରାଳ ସୃଷ୍ଟିକରି ମନ୍ଦିର ପାଭାଗରେ ରହିଥାଏ । ଏହା ବ୍ୟତୀତ ଏହି ଧାର ନିର୍ମାଣ ଗୁଡ଼ିକ ମନ୍ଦିରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ମଧ ଦେଖାଯାଏ । ଏହି ପ୍ରକାର ଅନ୍ୟ କେତେକ ମଣ୍ଡନକୃତି ମଧ୍ୟରେ, ନୋଳି, ଯାହାକି ଅର୍ଦ୍ଧଗୋଲାକାର ନିର୍ମାଣ, ବଳା, ଏହା ହସ୍ତର ବଳା ମୋଟାର ସରୁ ଅର୍ଦ୍ଧଗୋଲାକାର ନିର୍ମାଣ । ଡ଼ୋରି, ରସି ସଦୃଶ ନିର୍ମାଣ । ବିଭିନ୍ନ ପ୍ରକାର ଧାର ମଧ୍ୟରେ ପଟି ଧାର, କନିଧାର, ଲହରାଧାର ଭଳି ଅନେକ ପ୍ରକାର ସରୁ ନିର୍ମାଣ ଅନ୍ତର୍ଭୁକ୍ତ । ପଦ୍ମପାଖୁଡ଼ା ଭଳି ଉର୍ଦ୍ଧ୍ୱକୁ କିମ୍ବା ନିମ୍ନକୁ ରହିଥିବା ନିର୍ମାଣ 'ପଦ୍ମଧାର' ନାମରେ ପରିଚିତ ହୁଏ । ଦାନ୍ତ ସଦୃଶ ତୀକ୍ଷ୍ଣ ଧାରକୁ 'ଦାନ୍ତି' କୁହାଯାଏ । ଏହି ଦାନ୍ତି ଅଧିକ ମୋଟା ହେଲେ 'କନିଧାର' ବା 'କନି' କହନ୍ତି । ଦୁଇ ପାର୍ଶ୍ୱ ସମ୍ମୁଖକୁ ବଢ଼ି, ମଧ୍ୟଭାଗ ଗଭୀର ହୋଇଥିଲେ ତାହାକୁ 'ଡ଼ମ୍ବରୁ' କହନ୍ତି । ହସ୍ତୀ ପୃଷ୍ଠ ସଦୃଶ ଗଡ଼ାଣିଆ ଅଂଶକୁ 'ମାହୁନ୍ତି' କୁହାଯାଏ । କୌଣସି ମୋଟା ଧାରର କୋଣ କଟା ଯାଇଥିଲେ ତାହାକୁ 'ଛେଦ' ଓ ବକ୍ରଭାବେ କଟାଯାଇଥିଲେ ତାହାକୁ 'ବାଙ୍କଛେଦ' କହନ୍ତି । ଏହିପରି ବିଭିନ୍ନ ଛୋଟ ପ୍ରତ୍ୟଙ୍ଗ ଗୁଡ଼ିକର ଭିନ୍ନ ଭିନ୍ନ ନାମ ରହିଛି ।

ଉପରୋକ୍ତ ଧାର ମଣ୍ଡନକୃତି ବ୍ୟତୀତ ଅନ୍ୟ କେତେକ ଶିଳ୍ପାଙ୍ଗ ହେଲା, ଫଣି, ଏହା ସର୍ପ ଫଣା ସଦୃଶ ସମ୍ମୁଖକୁ ବାହାରିଥାଏ । ଝୁଲି ବା ଝୁଲା ଏଥିରେ ଉପରୁ ତଳକୁ ଏକ ଅଂଶ ଝୁଲିଥାଏ । ଛଜା, କିଞ୍ଚିତ ସମ୍ମୁଖକୁ ବଢ଼ିଥିବା ଛାତ ସଦୃଶ ନିର୍ମାଣ, ଯାହାକି ଛାଇ କରିଥାଏ । ଟାଙ୍କୁ, ପୀଢ଼ ଦେଉଳରେ, ପୀଢ଼ମାନଙ୍କ ଲମ୍ୱ ଧାରର ସମତା ଭଙ୍ଗ କରିବା ନିମନ୍ତେ ଘନ-ତ୍ରିକୋଣାକାର ଛୋଟ ନିର୍ମାଣ । ଅଳସା ବଡ଼, ମନ୍ଦିର ସମ୍ମୁଖ ଭାଗରୁ କିଞ୍ଚିତ ଆଗକୁ ଆସିଥିବା, ପ୍ରଥମ ତୋରଣର ବାଢ଼ । ଏହିପରି ଶିଳ୍ପୀମାନେ ବିଭିନ୍ନ ମଣ୍ଡନକୃତି ନିମନ୍ତେ ନିଜସ୍ୱ, ବହୁ ପରିଭାଷା ବ୍ୟବହାର କରିଥାଆନ୍ତି । ଏହା ବ୍ୟତୀତ ଅନ୍ୟ କେତେକ ମୁଖ୍ୟ ମଣ୍ଡନ-ନିର୍ମାଣର ସୂଚନା ନିମ୍ନରେ ଦିଆଗଲା ।



ସ୍ଥାପତ୍ୟ ମଣ୍ଡନ କୃତିରେ ବିଭିନ୍ନ ପ୍ରକାର ନକ୍ସା



ଅଙ୍ଗଶିଖର



ଦେଉଳ ଗଣ୍ଡିରେ ଅଙ୍ଗଶିଖର

**ଅଙ୍ଗଶିଖର :** ଏହା ରେଖ ଦେଉଳ ସଦୃଶ ବା ତାର ନମୁନା ଭଳି ଏକ ଚେପଟା ବା ରିଲିଫ୍ ଶୈଳୀରେ ଖୋଦିତ ମଣ୍ଡନକୃତି, ଯାହାକି ରେଖଦେଉଳ ଗଣ୍ଡିର ନିମ୍ନ ଭାଗରେ ଦେଖାଯାଏ । ଅନ୍ୟ ପାଗମାନଙ୍କରେ ଗୋଟିଏ ଅଙ୍ଗଶିଖର ସ୍ଥାନିତ ହୋଇଥିବା ବେଳେ ରାହା ଓ ଅନୁରାହାମାନଙ୍କରେ ସମୟ ସମୟେ ଦୁଇଟିକରି ଅଙ୍ଗଶିଖର ଦେଖାଯାଏ । ଦଶମ ଶତାବ୍ଦୀ ପରବର୍ତ୍ତୀ ସମୟର କେତେକ ମନ୍ଦିର ଦେହରେ ଏହି ପ୍ରକାର ଅଙ୍ଗଶିଖର ସ୍ଥାନିତ ହୋଇଥିବା ବେଳେ ଭୁବନେଶ୍ୱରର ରାଜାରାଣୀ ମନ୍ଦିରରେ ଏଗୁଡ଼ିକର ବିକଶିତ ତଥା ସଫଳ ପ୍ରୟୋଗ ହୋଇଥିବା ଲକ୍ଷ କରାଯାଏ । ଅଙ୍ଗଶିଖର ଯୁକ୍ତ ଏହି ମନ୍ଦିରଟି କଳିଙ୍ଗ ମନ୍ଦିର ସ୍ଥାପତ୍ୟର ଏକ ଉତ୍କୃଷ୍ଟ କୃତି ଅଟେ । କେତେକ ମନ୍ଦିରର ଅନ୍ୟ ଅଙ୍ଗ ପ୍ରତ୍ୟଙ୍ଗରେ ଏହି ପ୍ରକାର ମଣ୍ଡନକୃତି ସ୍ଥାନିତ ହୋଇଥିବା ଦେଖାଯାଏ ।

**ବିଭିନ୍ନ ପ୍ରକାର ମୁଣ୍ଡି :** ପାର୍ଶ୍ୱଦେବତାମାନଙ୍କ ବ୍ୟତୀତ ଆବରଣ ଦେବତା ଓ ଅନ୍ୟକେତେକ ମୂର୍ତ୍ତିକୁ ମନ୍ଦିର ଦେହରେ ପୁନଶ୍ଚ ଏକ ମନ୍ଦିରାକୃତି କ୍ଷୁଦ୍ର ନିର୍ମାଣ ମଧ୍ୟରେ ସ୍ଥାନିତ କରାଯାଇଥାଏ । ଏହି ମନ୍ଦିରାକୃତି ମଣ୍ଡନକୃତିଗୁଡ଼ିକୁ 'ମୁଣ୍ଡି' କୁହାଯାଉଥିବା ବେଳେ ଏହାର ଊର୍ଦ୍ଧ୍ୱଭାଗ ବା ମସ୍ତକ ଯେଉଁ ପ୍ରକାର ହୋଇଥାଏ, ତାହା ସେହି ପ୍ରକାର ମୁଣ୍ଡି ନାମରେ ପରିଚିତ ହୁଏ । ଯଥା, ମସ୍ତକ ଭାଗ ପୀଢ଼ ଶୈଳୀର ହୋଇଥିଲେ 'ପୀଢ଼ମୁଣ୍ଡି' ଖାକରା ଶୈଳୀର ହୋଇଥିଲେ 'ଖାକରାମୁଣ୍ଡି' ଯଦି ମସ୍ତକରେ ବକ୍ରମସ୍ତକ ସଦୃଶ କୌଣସି ନକ୍ସା ଥାଏ, ତେବେ ତାହାକୁ 'ବକ୍ରମୁଣ୍ଡି' କୁହାଯାଏ । ରେଖଦେଉଳ ସଦୃଶ 'ରେଖମୁଣ୍ଡି'ଗୁଡ଼ିକ ସାଧାରତଃ କେତେକ ବକ୍ରମସ୍ତକ ସହିତ ଦେଖାଯାଏ । ଅନ୍ୟ ଭାବରେ ଏଗୁଡ଼ିକ ଅଙ୍ଗଶିଖର ଅଟେ । ଅନ୍ୟ କେତେକ ମିଶ୍ରିତ ଶୈଳୀର ମୁଣ୍ଡି ମଧ୍ୟ ରହିଛି ।



ବିମାନ ବା ବକ୍ରମୁଣ୍ଡି ପରଶୁରାମେଶ୍ୱର ମନ୍ଦିର



ବକ୍ରମୁଣ୍ଡି



ବକ୍ରମୁଣ୍ଡି



ପୀଢ଼ମୁଣ୍ଡି



ଖାକରାମୁଣ୍ଡି

ପ୍ରାଚୀନ ପରଶୁରାମେଶ୍ୱର ମନ୍ଦିରର ତ୍ରିରଥ ଶୈଳୀର ପ୍ରସସ୍ତ ତ୍ରିଅଙ୍ଗ ବାଢ଼ ଉପରେ ସୁଉଚ୍ଚ ବକ୍ରମୁଣ୍ଡିମାନ ଦେଖିବାକୁ ମିଳେ । ମୁକ୍ତେଶ୍ୱର ଓ ରାଜାରାଣୀ ମନ୍ଦିର ବାଢ଼ର ମୂର୍ତ୍ତିଗୁଡ଼ିକୁ କୌଣସି ମୁଣ୍ଡି ମଧରେ ରଖା ନଯାଇ, ପତ୍ର-ପୁଷ୍ପର ଏକ କମନୀୟ ରଚନା ଉପରେ ସ୍ଥାନିତ କରାଯାଇଛି । କିନ୍ତୁ ଏହି ମନ୍ଦିରମାନଙ୍କ ଦ୍ୱାରବନ୍ଧର ଦ୍ୱାରପାଳଙ୍କ ନିମନ୍ତେ ଓ ଅନ୍ୟ କେତେକ ସ୍ଥାନରେ ମୁଣ୍ଡିମାନ ଦେଖିବାକୁ ମିଳେ । ଅନେକ ସ୍ଥଳେ ସୁଉଚ୍ଚ ଖାକରାମୁଣ୍ଡିଗୁଡ଼ିକ ଏକାଧିକ ସ୍ତରର ଖୁରା-ପୀଢ଼କୁ ନେଇ ଗଠିତ । ମୁକ୍ତେଶ୍ୱର, ଗୌରୀ, ରାଜାରାଣୀ ମନ୍ଦିରର ଏହି ପ୍ରକାର ପୀଢ଼ ଗୁଡ଼ିକୁ ଏକ ଆଲମ୍ବ ନକ୍ସା କିମ୍ବା ଫନ୍ଦିଗ୍ରନ୍ଥି ନକ୍ସା ସଂଯୋଗ କରୁଥିବା ଦେଖାଯାଏ । ଲିଙ୍ଗରାଜଙ୍କ ଦେଉଳର ତଳଜଙ୍ଘରେ ଖାକରାମୁଣ୍ଡି ଓ ଉପରଜଙ୍ଘର ପୀଢ଼ମୁଣ୍ଡି ମାନଙ୍କରେ ବିଭିନ୍ନ ମୂର୍ତ୍ତି ସ୍ଥାନିତ ହୋଇଛି । ବହ୍ମେଶ୍ୱର ମନ୍ଦିରର ତଳଜଙ୍ଘରେ ଥିବା ପୀଢ଼ଯୁକ୍ତ ଖାକରାମୁଣ୍ଡି ଉପରେ ବକ୍ରମସ୍ତକ ନକ୍ସା ଦେଖାଯାଏ । ମୁକ୍ତେଶ୍ୱର ନିକଟ ସିଦ୍ଧେଶ୍ୱରଙ୍କ ଦେଉଳ ତଳଜଙ୍ଘର ଖାକରାମୁଣ୍ଡି ଓ ଉପରଜଙ୍ଘର ପୀଢ଼ମୁଣ୍ଡିମାନଙ୍କରେ କୌଣସି ମୂର୍ତ୍ତି କିମ୍ବା କାରୁକଳା ଉତ୍କୀର୍ଣ୍ଣ ହୋଇ ନାହିଁ । ଓଡିଶାର ବିଭିନ୍ନ ସମୟର ମନ୍ଦିରମାନଙ୍କର ମଣ୍ଡନ କାର୍ଯ୍ୟକ୍ରମରେ ଏହି ଚାରି ଶ୍ରେଣୀର, ବିଭିନ୍ନ ଶୈଳୀର ମୁଣ୍ଡି ଦେଖାଯାଏ । କୋଣାର୍କର ସୂର୍ଯ୍ୟ ମନ୍ଦିର ଓ ବୟାଳିଶୀବାଟୀ ଗ୍ରାମର ଗଙ୍ଗେଶ୍ୱରୀ ଦେବୀ ମନ୍ଦିରରେ ଭିନ୍ନ ଶୈଳୀର ଖମ୍ବ ଯୁକ୍ତ ସୁନ୍ଦର ମୁଣ୍ଡିମାନ ରହିଛି । କେତେକ ପୋଥିରେ ଏହି ମୁଣ୍ଡିଗୁଡ଼ିକୁ 'ବିମାନିକ' ଓ 'ଶିଖରିକ' ବୋଲି ଉଲ୍ଲେଖ ଅଛି ।



# କଳିଙ୍ଗ ମନ୍ଦିରର କାରୁକଳା

କଳିଙ୍ଗ ମନ୍ଦିର ସ୍ଥାପତ୍ୟ ତା'ର ବିଶାଳତା କିମ୍ବା ନିର୍ମାଣ କୁଶଳତା ପାଇଁ ନୁହେଁ, ବରଂ ତା'ର ସୂକ୍ଷ୍ମ, ଛନ୍ଦମୟ କାରୁକଳା ଓ ଲାବଣ୍ୟମୟ, ଜୀବନ୍ତ ଭାବ ପ୍ରକାଶ କରୁଥିବା ମୂର୍ତ୍ତିକଳା ନିମନ୍ତେ ବିଶ୍ୱ ପ୍ରସିଦ୍ଧ । ପଥରରେ ନିରାଡ଼ମ୍ବର ମନ୍ଦିରଟିଏ ନିର୍ମାଣ କରିବା ପାଇଁ ଯେତିକି ଚିନ୍ତା, ଅର୍ଥ ଓ ସମୟ ଲାଗୁଥିଲା, ମନ୍ଦିର ଦେହରେ କାରୁକଳା ଓ ମୂର୍ତ୍ତିକଳା ସମ୍ପୂର୍ଣ୍ଣ ଭାବେ ଖୋଦନ ନିମନ୍ତେ ତା' ଠାରୁ ଅଧିକ ସୁଚିନ୍ତିତ ପରିକଳ୍ପନା ସହିତ ଅର୍ଥ ଓ ସମୟ ବ୍ୟୟ କରିବାକୁ ପଡୁଥିଲା । ଏଥିରେ ଶିଳ୍ପୀଙ୍କ ଭୂମିକା ଗୁରୁତ୍ୱ ପୂର୍ଣ୍ଣ ହେଲେ ହେଁ, ମଣ୍ଡନକୃତି ଓ ମୂର୍ତ୍ତିକଳା ସମ୍ପୂର୍ଣ୍ଣ ଭାବେ ଉତ୍କୀର୍ଣ୍ଣ କରାଇ ସୁନ୍ଦର ମନ୍ଦିରଟିଏ ନିର୍ମାଣ କରାଇବା କେବଳ ଜଣେ ଉଚ୍ଚମନା, ରୁଚିସମ୍ପନ୍ନ, କଳାପ୍ରେମୀ, ଧନବାନ ଓ ବଦାନ୍ୟ ବ୍ୟକ୍ତିଙ୍କ ଦ୍ୱାରାହିଁ ସମ୍ଭବ ହେଉଥିଲା ।

କଳିଙ୍ଗ ମନ୍ଦିରର ମଣ୍ଡନକୃତି ବହୁବିଧ । ଏଥି ମଧ୍ୟରୁ ସମତା ରକ୍ଷା କରୁଥିବା ଅନେକ ରଚନା ଭାରତର ବିଭିନ୍ନ ସ୍ଥାନରେ ଥିବା ବହୁ ପ୍ରାଚୀନ ଓ ମଧ୍ୟଯୁଗୀୟ ମନ୍ଦିରମାନଙ୍କରେ ଦେଖିବାକୁ ମିଳେ । ଓଡ଼ିଶାର ଅଧିକାଂଶ ଶିଳ୍ପ ପୋଥିରେ ମନ୍ଦିର ଦେହରେ ସମ୍ପୂର୍ଣ୍ଣ ମଣ୍ଡନକୃତି ବିଷୟରେ ବିବରଣୀ ନଥିବାବେଳେ 'ଶିଳ୍ପପ୍ରକାଶ'ରେ କେତେକ ମଣ୍ଡନକୃତିର ବର୍ଣ୍ଣନା ରହିଛି । ଏଗୁଡ଼ିକ ସାଧାରଣତଃ ସଂସ୍କୃତର ଶୁଦ୍ଧ ଶବ୍ଦ । କିନ୍ତୁ ଇଂ: ମନମୋହନ ଗାଙ୍ଗୁଲିଙ୍କ 'ଓଡ଼ିଶା ଏଣ୍ଡ ହେର୍ ରିମେନ୍‌ସ୍', ବହିରେ ଏଗୁଡ଼ିକର କେତେକ ଦେଶୀୟ ଶବ୍ଦ ଦେଖିବାକୁ ମିଳେ । ବର୍ତ୍ତମାନର ଶିଳ୍ପୀମାନଙ୍କ ଠାରୁ ମଧ ଅଳ୍ପ କେତେକ ନକ୍‌ସାର ଭିନ୍ନ ନାମ ଶୁଣିବାକୁ ମିଳେ । ନିର୍ଦ୍ଦିଷ୍ଟ ନାମ ଥିବା, ନିର୍ଦ୍ଦିଷ୍ଟ, ନକ୍‌ସାକୁ ବିଭିନ୍ନ ଶିଳ୍ପୀ ନିଜସ୍ୱ ଶୈଳୀରେ ଉପସ୍ଥାପନା କରିଥିବାରୁ, ଗୋଟିଏ ନକ୍‌ସା ଅନ୍ୟଠାରୁ ଅନେକାଂଶରେ ଭିନ୍ନ ଦେଖାଯାଏ ।







କେତୋଟି ଏକକ ନକ୍‌ସା



ପନିଗ୍ରନ୍ଥି



ହଂସଲତା





ଧନୁଗଣ୍ଠି



ଶଂଖଲତା





କେତୋଟି କ୍ଷେତ୍ର ନକ୍ସା



ଜଳପତ୍ର କୁଟିଳ







କେତୋଟି ଧାର ନକ୍ସା

ମନ୍ଦିର ଦେହର ଏହି ସମସ୍ତ ମଣ୍ଡନ କୃତିକୁ ମୁଖ୍ୟତଃ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଯଥା:-୧. ପ୍ରାକୃତିକ ନକ୍ସା, ଯାହାକି ସାଧାରଣତଃ ବୃକ୍ଷଲତା, ପତ୍ର, ପୁଷ୍ପ ଏବଂ ବିଭିନ୍ନ ପ୍ରାଣୀମାନଙ୍କୁ ନେଇ ରଚିତ । ୨. ଆଳଙ୍କାରିକ- ଏଗୁଡ଼ିକ ଶିଳ୍ପୀର ସୃଜନଶୀଳ ଆଳଙ୍କାରିକ ରଚନା, ଯେଉଁଥିରେ ବିଭିନ୍ନ ପ୍ରକାର ପଦକ, ମାଳା, ହାର, ଝରା, ଝୁମ୍ପା ଇତ୍ୟାଦି ଦେଖିବାକୁ ମିଳେ । ୩. ବାସ୍ତୁ ଓ ବସ୍ତୁ ନକ୍ସା-ଏହି ମଣ୍ଡନକୃତିଗୁଡ଼ିକରେ ସ୍ଥାପତ୍ୟର ଅଙ୍ଗ ବିଶେଷକୁ କ୍ଷୁଦ୍ର ଆକାରରେ ଉତ୍କୀର୍ଣ୍ଣ କରାଯାଇଥାଏ । ଏଥିରେ ଦେଖାଯାଏ, ବିଭିନ୍ନ ପ୍ରକାର ଖମ୍ବ, ତୋରଣ, ମଣ୍ଡପ, ଜାଲି କିମ୍ବା ବିଭିନ୍ନ ବସ୍ତୁର ନମୁନା, ୪.-ଜ୍ୟାମିତିକ ନକ୍ସା-ଏଗୁଡ଼ିକ ସରଳ ଓ ବିଭିନ୍ନ ପ୍ରକାର ବକ୍ର ରେଖାକୁ ନେଇ ବିଭିନ୍ନ ପ୍ରକାର ଛନ୍ଦ । ୫.-ମିଶ୍ରିତ ନକ୍ସା ବା ରଚନା-ଏଥିରେ ପୂର୍ବୋକ୍ତ ଯେ କୌଣସି ଏକାଧିକ ଶ୍ରେଣୀର ଉପାଦାନକୁ ନେଇ ଶିଳ୍ପୀ କେତେକ ଭିନ୍ନ ଶୈଳୀର ରଚନା କରିଥାଏ । ଏହି ସବୁ ମଣ୍ଡନକୃତି ମନ୍ଦିର ଦେହର ବିଭିନ୍ନ ସ୍ଥାନରେ ବ୍ୟବହାର ହୋଇଥାଏ । ବ୍ୟବହାରର ଆକାର-ପ୍ରକାରକୁ ନେଇ ଏଗୁଡ଼ିକୁ ପୁନଶ୍ଚ ତିନି ଭାଗରେ ବିଭକ୍ତ କରାଯାଇପାରେ, ଯଥା ୧.- ଏକକ ନକ୍ସା, ଯାହାକି ଗୋଟିଏ ମୌଳିକ କ୍ଷୁଦ୍ର ମଣ୍ଡନକୃତି । ୨. କ୍ଷେତ୍ର ନକ୍ସା, ଏହି ମଣ୍ଡନକୃତିଗୁଡ଼ିକ ବର୍ଗାକାର, ଆୟତାକାର, ତ୍ରିକୋଣ, ଚକ୍ରାକାର କିମ୍ବା ଅନ୍ୟ ଯେକୌଣସି ପ୍ରକାର ଏକ କ୍ଷେତ୍ର ମଧ୍ୟରେ ସିମୀତ ଥାଏ । ୩. ଧାର ନକ୍ସା-ଯାହାକି ଲମ୍ବ କିମ୍ବା ପ୍ରସ୍ଥ ଭାବରେ ଏକ ସରଳ କିମ୍ବା ବକ୍ର ଧାର ବା ଧାଡ଼ି ସୃଷ୍ଟି କରିଥାଏ । ମୁଖ୍ୟତଃ ନକ୍ସାଗୁଡ଼ିକ ଏହି ଶ୍ରେଣୀଭୁକ୍ତ ହେଲେହେଁ କେତେକ ମୁଖ୍ୟ ମଣ୍ଡନକୃତି ମନ୍ଦିର ଦେହରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଥାଏ । ତାହା ମଧ୍ୟରେ, ବଜ୍ରମସ୍ତକ,ଚୈତ୍ୟପଦକ, କୀର୍ତ୍ତିମୁଖ, ମକର, କୁମ୍ଭ, ପଦ୍ମ ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

# କେତେକ ମୌଳିକ ଓ ମୁଖ୍ୟ ମଣ୍ଡନକୃତି

**ଚୈତ୍ୟପଦକ:** ପ୍ରାଚୀନ ବୌଦ୍ଧ-ଚୈତ୍ୟଗୃହର ପ୍ରବେଶ ଦ୍ୱାର ଉପରେ ଅର୍ଦ୍ଧଚନ୍ଦ୍ରାକାର ଏକ ଗବାକ୍ଷ ବା ଝରକା ନିର୍ମାଣ କରାଯାଉଥିଲା । ଏଣୁ ଏହାକୁ 'ଚୈତ୍ୟଗବାକ୍ଷ' କୁହାଯାଏ । ପରବର୍ତ୍ତୀ ସମୟରେ ହିନ୍ଦୁ ମନ୍ଦିର ସ୍ଥାପତ୍ୟରେ ଏହାର ମୌଳିକ ଆକାରକୁ ନେଇ ବିଭିନ୍ନ ଆକାର ପ୍ରକାରର ମଣ୍ଡନକୃତି ସୃଷ୍ଟି ହୋଇଛି । ଏହି ମଣ୍ଡନ କୃତିଗୁଡିକ ପଦକ ସଦୃଶ ଦେଖାଯାଉଥିବାରୁ ଏହାକୁ 'ଚୈତ୍ୟପଦକ' କହିବା ଯଥାର୍ଥ ହେବ । କିନ୍ତୁ ପୂର୍ବର କେତେକ ଲେଖକ ଏହି କୃତିକୁ 'ଚୈତ୍ୟଗବାକ୍ଷ' କହିଛନ୍ତି । ତେବେ କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ କୁତ୍ରାପି ଚୈତ୍ୟଗବାକ୍ଷ ଦେଖିବାକୁ ମିଳେ ନାହିଁ । ଏହି ଚୈତ୍ୟପଦକର ମୌଳିକ ଆକୃତିକୁ ନେଇ ବକ୍ରମସ୍ତକର ପରିକଳ୍ପନା କରାଯିବା ସହିତ ବିଭିନ୍ନ ଆକାର ପ୍ରକାରର ଚୈତ୍ୟପଦକ କଳିଙ୍ଗ ମନ୍ଦିର କଳାରେ ବହୁଳ ଭାବେ ଦେଖାଯାଏ ।

**କୀର୍ତ୍ତିମୁଖ:** ପୌରାଣିକ ଆଖ୍ୟାନ ଅନୁଯାୟୀ ଶିବଙ୍କ ଭ୍ରୂକୁଟିରୁ ଜାତ ଏହା ଏକ ରାକ୍ଷସ । ଧର୍ମକୀର୍ତ୍ତି ରକ୍ଷା ନିମନ୍ତେ ଆବିର୍ଭାବ ହୋଇଥିବାରୁ ଏହାର ନାମ କୀର୍ତ୍ତିମୁଖ । ଅନ୍ୟ ଭାବରେ ଏହି ରଚନା ଧର୍ମକୀର୍ତ୍ତିର ସମ୍ମୁଖରେ ରହୁଥିବାରୁ ଏହି ପ୍ରକାର ନାମକରଣ ହୋଇଥିବା ସମ୍ଭବ । ମନ୍ଦିର କଳାରେ ଏହା ସିଂହ ଓ ରାକ୍ଷସ ମୁଖର ଏକ ମିଶ୍ରିତ ରଚନା, ଯାହାକି ତୋରଣ, ବକ୍ରମସ୍ତକ, ମୂର୍ତ୍ତିର ପଶ୍ଚାତ ଭାଗରେ ଥିବା ପ୍ରଭାବଳୀର ମକର-ତୋରଣର ଊର୍ଦ୍ଧ୍ୱରେ ଏବଂ ସ୍ତମ୍ଭ ଓ ଉପସ୍ତମ୍ଭ ମାନଙ୍କରେ ଦେଖିବାକୁ ମିଳେ ।



କୀର୍ତ୍ତିମୁଖ

**ମକର:** ଅର୍ଥାତ୍ କୁମ୍ଭୀର,ମୁଖ୍ୟତଃ ଜଳଚର ପ୍ରାଣୀ ହେଲେହେଁ ସ୍ଥଳଭାଗରେ ବିଚରଣ କରିପାରେ । ଏହା ଜଳ ଦେବତା, ବରୁଣ ଓ ଗଙ୍ଗାଦେବୀଙ୍କ ବାହନ ଓ କାମଦେବଙ୍କ ପତାକାର ଚିହ୍ନ । ମୂର୍ତ୍ତିକଳାରେ ଏହାର ମୁଖରେ ହସ୍ତୀର ଶୁଣ୍ଢ ସଂଯୋଗ ହୋଇଥିବା ଦେଖାଯାଏ । ହସ୍ତୀ ଲକ୍ଷ୍ମୀଙ୍କ ବାହନ ବର୍ଷା ତଥା ସମୃଦ୍ଧିର ସଙ୍କେତ । ଏହି ପ୍ରକାର ମକର ଓ ହସ୍ତୀ ମୁଖର ମିଶ୍ରିତ ରଚନାକୁ 'ମାତଙ୍ଗ-ମକର' କୁହାଯାଏ, ଯାହାକି ଚତୁର୍ବର୍ଗ ଫଳର ପ୍ରତୀକ । ମାତଙ୍ଗ-ମକର ମଣ୍ଡନକୃତି ମୁଖ୍ୟତଃ ତୋରଣ, ବକ୍ରମସ୍ତକ, ପ୍ରଭାବଳୀମାନଙ୍କ ଦୁଇ ପାର୍ଶ୍ୱରେ, ବିପରୀତ ମୁଖ ହୋଇ ରହିଥାଏ । ମନ୍ଦିର ପାଦୁକ ନଳାରେ ମଧ୍ୟ ଏହି ମୁଖ ଦେଖିବାକୁ ମିଳେ ।



ଚୈତ୍ୟପଦକ



ଚୈତ୍ୟପଦକ

ପୂର୍ଣ୍ଣକୁମ୍ଭ: ମୁଖରେ ପଦ୍ମଯୁକ୍ତ ଜଳପୂର୍ଣ୍ଣ ଘଟ ବା ପୂର୍ଣ୍ଣକୁମ୍ଭ, ବିଷ୍ଣୁଙ୍କ ବିଶ୍ୱରୂପର ପ୍ରତୀକ। ଅନ୍ୟ ଭାବରେ ମୃଣ୍ମୟ, ଭଙ୍ଗୁର କଳସ, ଦେହ ଓ ତା' ମଧ୍ୟର ଜଳ ଅକ୍ଷୟ ଆତ୍ମାର ପ୍ରତୀକ । ଏଣୁ ଏହାକୁ 'ଅମୃତଘଟ' ମଧ୍ୟ କୁହାଯାଏ । ବୈଦିକ ମନ୍ତ୍ରରେ ପ୍ରତିଷ୍ଠିତ ପୂର୍ଣ୍ଣକୁମ୍ଭର ଭିନ୍ନ ଭିନ୍ନ ଅଙ୍ଗରେ ବିଭିନ୍ନ ଦେବ, ଦେବୀ ବାସ କରିବା ସହିତ ଏଥିରେ ସକଳ ତୀର୍ଥର ସମାବେଶ ବୋଲି ବିଶ୍ୱାସ କରାଯାଏ । ଏହା ସର୍ବ ମଙ୍ଗଳକାରକ ହୋଇଥିବାରୁ ଏହାକୁ 'ମଙ୍ଗଳଘଟ' କୁହାଯାଏ । ଅନେକ ପ୍ରାଚୀନ ଗୁମ୍ଫା ସ୍ଥାପତ୍ୟରେ କୁମ୍ଭଯୁକ୍ତ କୁମ୍ଭ-ସ୍ତମ୍ଭମାନ ଦେଖାଯାଉଥିବା ବେଳେ କଳିଙ୍ଗ ମନ୍ଦିର କଳାରେ ଏହାର ବ୍ୟବହାର ବହୁବିଧ । ମୁଖ୍ୟତଃ ଏହା ପ୍ରବେଶ ଦ୍ୱାରମାନଙ୍କ ଦୁଇ ପାର୍ଶ୍ୱର, ସ୍ତମ୍ଭ ଓ ଉପସ୍ତମ୍ଭମାନଙ୍କ ନିମ୍ନରେ କିମ୍ବା ଊର୍ଦ୍ଧ୍ୱରେ ସ୍ଥାନିତ ହୋଇଥାଏ । ମନ୍ଦିରର ସର୍ବାଗ୍ରରେ କଳସର ସ୍ଥାନ ଗୁରୁତ୍ୱପୂର୍ଣ୍ଣ ଅଟେ ।



ମକର



କୁମ୍ଭ

ପଦ୍ମ: ନିର୍ମଳ, ସୌନ୍ଦର୍ଯ୍ୟ, ପବିତ୍ରତା ତଥା ଚେତନାର ପ୍ରତୀକ । ଭାରତୀୟ କଳା ଓ ସଂସ୍କୃତିରେ ଏହାର ବ୍ୟବହାର ଓ ଅର୍ଥ ବହୁବିଧ । ପଦ୍ମର ପ୍ରକୃତ ଆକାର ବ୍ୟତୀତ ଅଧିକାଂଶ ପାଖୁଡା ବା ପଟଳ ଥିବା ଚକ୍ରାକାର ନକ୍ସାକୁ 'ପଦ୍ମ' କୁହାଯାଏ । ଦେବ, ଦେବୀମାନେ ପଦ୍ମର ଆସନ ଉପରେ ଉପବିଷ୍ଟ କିମ୍ବା ଦଣ୍ଡାୟମାନ ହୋଇଥିବା ଦେଖାଯାଏ । କେତେକ ଦେବ, ଦେବୀ ହସ୍ତରେ ପଦ୍ମ ଧାରଣ କରିଥାଆନ୍ତି । ମଣ୍ଡନକୃତି ଭାବରେ ବିଭିନ୍ନ ଆକାର ପ୍ରକାର ପଦ୍ମ ମନ୍ଦିରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ସ୍ଥାନିତ ହୋଇଥାଏ ।

# ବଜ୍ର ମସ୍ତକ

ମନ୍ଦିରର ବକ୍ଷସ୍ଥଳ ବା ଗଣ୍ଡି ଉପରେ ଦେବ ଦେବୀଙ୍କ ମୂର୍ତ୍ତି ଓ କାରୁକଳା ପୂର୍ଣ୍ଣ ପଦକ ସଦୃଶ ମଣ୍ଡନକୃତିକୁ 'ବଜ୍ରମସ୍ତକ' କୁହାଯାଏ । ଶିଳ୍ପଶାସ୍ତ୍ର ସମ୍ମତ ଏହି ପ୍ରକାର କୃତିଗୁଡ଼ିକ ଉତ୍ତରଭାରତୀୟ ମନ୍ଦିରମାନଙ୍କରେ ଚନ୍ଦ୍ରଶାଳା ନାମରେ ଏବଂ ଦକ୍ଷିଣଭାରତୀୟ ମନ୍ଦିରମାନଙ୍କରେ 'କୁଡୁ' ନାମରେ ପରିଚିତ । ତେବେ କଳିଙ୍ଗ ମନ୍ଦିର ମାନଙ୍କରେ ଏହାର ସ୍ୱତନ୍ତ୍ର ଉପସ୍ଥାପନା ଶୈଳୀ ରହିଛି । ଏଗୁଡ଼ିକର ରଚନା ମୁଖ୍ୟତଃ ଚକ୍ରାକାର, ଅର୍ଦ୍ଧଚକ୍ରାକାର କିମ୍ବା ବର୍ତ୍ତୁଳାକାର, ଏକ କିମ୍ବା ଏକାଧିକ ମୌଳିକ ନକ୍ସା ଉପରେ ଆଧାରିତ । 'ବଜ୍ର' ଇନ୍ଦ୍ରଙ୍କର ମୁଖ୍ୟ ଆୟୁଧ । ଅନ୍ୟଭାବରେ ଏହା ଶକ୍ତିଶାଳୀ ଓ କଠିନତାର ପ୍ରତୀକ । ବଜ୍ରସମ କଠିନ ଊର୍ଦ୍ଧ୍ୱଭାଗର ଅର୍ଥ ବୁଝାଇବାକୁ ଯାଇ ଏହାର ନାମ 'ବଜ୍ରମସ୍ତକ' । କେତେକ ପୁରାଣରେ ଏହା ହୀରକ ସମ କଠିନ ବୋଲି ବର୍ଣ୍ଣନା କରାଯାଇଛି । ଏଣୁ ଏହି ମଣ୍ଡନକୃତିକୁ ମନ୍ଦିରର ସୁରକ୍ଷା କବଚ ଭାବେ ଗ୍ରହଣ କରାଯାଏ । ଏହା ମନ୍ଦିରକୁ ଦୁଷ୍ଟ ଓ ଅନିଷ୍ଟକାରୀ ଶକ୍ତି ତଥା ବଜ୍ରପାତରୁ ରକ୍ଷା କରିଥାଏ ବୋଲି ଶିଳ୍ପଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି । କେବଳ ମନ୍ଦିର କାହିଁକି, ପ୍ରାଚୀନ ଭାରତର ପ୍ରାସାଦ ତଥା ନଗର ମଧ୍ୟକୁ ପ୍ରବେଶ କରିବାର ମୁଖ୍ୟ ତୋରଣମାନଙ୍କ ଉପର ଭାଗରେ ମଧ୍ୟ କୀର୍ତ୍ତିମୁଖ ଯୁକ୍ତ ବଜ୍ରମସ୍ତକମାନ ନିର୍ମାଣ କରାଯାଉଥିଲା । ପଦ୍ମ ପୁରାଣ, ପାତାଳ ଖଣ୍ଡ (୧୧୭-୨୩୩) ର ବର୍ଣ୍ଣନାରୁ ଜଣାଯାଏ ଯେ, ଶ୍ରୀରାମ ରାବଣର ଲଙ୍କାପୁରୀ ଧ୍ୱଂସ କରିବା ବେଳେ ନଗରୀର ମୁଖ୍ୟ ତୋରଣରେ ଥିବା କୀର୍ତ୍ତିମୁଖ ଯୁକ୍ତ ବଜ୍ରମସ୍ତକକୁ ପ୍ରଥମେ ଭାଙ୍ଗିବା ନିମନ୍ତେ ନିଜ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । କାରଣ ଏହା ଭଗ୍ନ ହେଲେ ଲଙ୍କାପୁରୀର ପତନ ସହଜସାଧ୍ୟ ଓ ସୁନିଶ୍ଚିତ ବୋଲି ସେ ଜାଣିଥିଲେ ।

ଦେବ, ଦେବୀ, ଗନ୍ଧର୍ବ, ବିଦ୍ୟାଧର, ଅପ୍‌ସରା, କୀର୍ତ୍ତିମୁଖ, ଯକ୍ଷ, କିନ୍ନର, କିଂପୁରୁଷ ମିଥୁନ, ସିଂହ, ମକର ଓ ଅନ୍ୟ ଶୁଭ ବସ୍ତୁ ତଥା ଆଳଙ୍କାରିକକୃତିକୁ ନେଇ ଗଠିତ ଏହି ବଜ୍ରମସ୍ତକ ମନ୍ଦିର ଦେହରେ ମୁଖ୍ୟ ଏବଂ ଉତ୍‌କୃଷ୍ଟ କଳାତ୍ମକ ରଚନା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଗୁଡ଼ିକୁ ସର୍ବ-ଶକ୍ତି ସମ୍ପନ୍ନ କରିବା ଉଦ୍ଦେଶ୍ୟ ନେଇ, ଏହାର ପରିକଳ୍ପନାରେ ଦେବତା, ଉପଦେବତା, ଓ ପବିତ୍ର ବସ୍ତୁମାନଙ୍କ ଶକ୍ତି, ପବିତ୍ରତା ତଥା ଆଧ୍ୟାତ୍ମିକତାର ଏକତ୍ରୀକରଣହିଁ ବିଦ୍ୱାନ ତଥା ଶିଳ୍ପୀମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବା ସମ୍ଭବ ।

କେତେକ ଶିଳ୍ପ ପୋଥିରେ ଏହି ପ୍ରକାର ରଚନାକୁ 'ଭୋ' ଭାବେ ନାମିତ କରାଯାଇଛି । ଏହି ରଚନାର ମଧ୍ୟଭାଗରେ ଯେଉଁ ପଦାର୍ଥ ବା ଯେଉଁ ଠାକୁରଙ୍କ ମୂର୍ତ୍ତି ଥାଏ, ତାହାକୁ ସେହି ପ୍ରକାର 'ଭୋ' ବୋଲି କହି ଥାଆନ୍ତି । ଯଥା 'ପଦ୍ମ-ଭୋ', 'ଶିବ-ଭୋ', 'ନଟରାଜ-ଭୋ', 'ଦୁର୍ଗା-ଭୋ' ଇତ୍ୟାଦି । ଏହି 'ଭୋ' ବା ବଜ୍ରମସ୍ତକଗୁଡ଼ିକର ଅଗ୍ରଭାଗରେ ଅଧିକାଂଶ ସ୍ଥଳେ କୀର୍ତ୍ତିମୁଖ ଦେଖାଯାଏ ।

ମନ୍ଦିରମାନଙ୍କ ଗଣ୍ଡିର ଚାରି ପାଖରେ ଥିବା ରାହାପାଗ ମାନଙ୍କରେ ବକ୍ରମସ୍ତକ ଗୁଡ଼ିକ ଖୋଦିତ ହୋଇଥାଏ । ଭୁବନେଶ୍ୱରରେ ତିଷ୍ଠି ରହିଥିବା ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରେ ଶତ୍ରୁଘ୍ନେଶ୍ୱର ମନ୍ଦିର ଖ୍ରୀ: ୬-୭ମ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ଏହାର ତିନି ପାଖର ବକ୍ରମସ୍ତକ ଗୁଡ଼ିକ ନଷ୍ଟ ହୋଇଯାଇଥିବା ବେଳେ କେବଳ ସମ୍ମୁଖ ଭାଗର ବକ୍ରମସ୍ତକଟି ଅନେକାଂଶରେ ନିଖୁଣ ରହିଛି । ଏହାର ସମସାମୟିକ ସ୍ୱର୍ଣ୍ଣଜଳେଶ୍ୱର ମନ୍ଦିରର ମଧ ଏହି ଅବସ୍ଥା । ତ୍ରିରଥ ଶୈଳୀର ପ୍ରଶସ୍ତ ରାହାପାଗ ଉପରେ ଥିବା ଏହି 'ବକ୍ରମସ୍ତକଗୁଡ଼ିକ ଯେତିକି ଗୁରୁତ୍ୱପୂର୍ଣ୍ଣ ସେତିକି ଆକର୍ଷଣୀୟ । ଶତ୍ରୁଘ୍ନେଶ୍ୱର ଦେଉଳ ଉପର ବକ୍ରମସ୍ତକଟି ଦୁଇ ପଦକ ବିଶିଷ୍ଟ । ନିମ୍ନର ଗୋଲ୍-ଚେପଟା ପଦକ ମଧ୍ୟରେ ରାବଣର କୈଳାସ ଉତ୍‌ପାଟନ ବା ରାବଣାନୁଗ୍ରହ ମୂର୍ତ୍ତି ରହିଛି । ଏହି ଦୃଶ୍ୟରେ ରାବଣ ବ୍ୟତୀତ ଶିବ, ପାର୍ବତୀ, ଗଣେଶ, କାର୍ତ୍ତିକେୟ ଓ ଶିବ ଗଣଙ୍କ ମୂର୍ତ୍ତି ଗୁଡ଼ିକ ଅଗଭୀର ବା ରିଲିଫ୍ ଶୈଳୀରେ ସୁନ୍ଦର ଭାବରେ ଖୋଦିତ ହୋଇଛି । ଉପର ପଦକ ଶୀର୍ଷରେ ପ୍ରସସ୍ତ କୀର୍ତ୍ତିମୁଖ ମସ୍ତକ, ଦୁଇ ପାର୍ଶ୍ୱରେ ମକର ମୁଖ ଓ ମିଥୁନ ମୂର୍ତ୍ତିମାନ ରହିଥିବା ବେଳେ ମଧ ଭାଗରେ ଅଷ୍ଟଭୁଜ ନଟରାଜ ଶିବଙ୍କ ମୂର୍ତ୍ତି ଦେଖାଯାଏ । ସ୍ୱର୍ଣ୍ଣଜଳେଶ୍ୱର ଦେଉଳର ବକ୍ରମସ୍ତକର ମଣ୍ଡନ ଶୈଳୀ ଏହି ପ୍ରକାର ହେଲେହେଁ ଏହାର ନିମ୍ନ ପଦକରେ ହର-ପାର୍ବତୀଙ୍କ ଯୁଗଳ ପ୍ରତିମା ଓ ଉପର ପଦକରେ ନଟରାଜ ରହିଛନ୍ତି । ଏହାର କିଞ୍ଚିତ ପରବର୍ତ୍ତୀ ସମୟର ବୋଲି ଅନୁମାନ କରାଯାଉଥିବା ପରଶୁରାମେଶ୍ୱର ମନ୍ଦିରର ଚାରି ପାଖର ବକ୍ରମସ୍ତକଗୁଡ଼ିକ ବେଶ୍ ସ୍ପଷ୍ଟ ଏବଂ ଉପରୋକ୍ତ ଶୈଳୀ ଠାରୁ କେତେକାଂଶରେ ଉନ୍ନତ । ଏହାର ଚାରି ରାହାପାଗରେ ଥିବା ପ୍ରତ୍ୟେକ ବକ୍ରମସ୍ତକର ଉପର ପଦକରେ ନଟରାଜଙ୍କ ପ୍ରତିମା ରହିଥିବା ବେଳେ ସମ୍ମୁଖ ବକ୍ରମସ୍ତକର ନିମ୍ନ ପଦକରେ ରାବଣାନୁଗ୍ରହ ମୂର୍ତ୍ତି,


ବକ୍ରମସ୍ତକ, ମୁକ୍ତେଶ୍ୱର ମନ୍ଦିର


ବକ୍ରମସ୍ତକ, ଶତ୍ରୁଘ୍ନେଶ୍ୱର ମନ୍ଦିର

ପଶ୍ଚାତ୍‌ଭାଗ ବା ପୂର୍ବ ପାଖରେ ଲକୁଲୀଶ (ଶିବଙ୍କ ଅବତାର), ଦକ୍ଷିଣ ପାର୍ଶ୍ୱରେ ଶିବଙ୍କ ଭିକ୍ଷାଟନ ମୂର୍ତ୍ତି ଏବଂ ଉତ୍ତର ପାର୍ଶ୍ୱରେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ପ୍ରତିମା ଦେଖାଯାଏ । ସମସମାୟିକ ଭୁବନେଶ୍ୱର ବାହାରର କେତେକ ପ୍ରାଚୀନ ମନ୍ଦିରର ବକ୍ରମସ୍ତକର ଉପର ପଦକରେ ନଟରାଜଙ୍କ ମୂର୍ତ୍ତି ରହିଥିବା ବେଳେ ତଳ ପଦକଗୁଡ଼ିକରେ ଭିନ୍ନ ଭିନ୍ନ ମୂର୍ତ୍ତି ଦେଖାଯାଏ ।

ଏହାର ପରବର୍ତ୍ତୀ ସମୟ ଅର୍ଥାତ୍ ଖ୍ରୀ: ୯ମ ଶତାବ୍ଦୀର କେତୋଟି କାରୁକଳା ପୂର୍ଣ୍ଣ ମନ୍ଦିରର ବକ୍ରମସ୍ତକ ବିଷୟରେ ଆଲୋଚନା କଲାବେଳେ ଭୁବନେଶ୍ୱରର ଦେବୀ ମନ୍ଦିର ବୋଇତାଳ ସମେତ ଶିଶିରେଶ୍ୱର ତଥା ମାର୍କଣ୍ଡେଶ୍ୱର ଶିବ ମନ୍ଦିର ଦୁଇଟି ଦୃଷ୍ଟିକୁ ଆସେ । ବୋଇତାଳ ଦେଉଳ ସମ୍ମୁଖ ରାହାପାଗ ବକ୍ରମସ୍ତକର ଉପର ପଦକରେ ନଟରାଜ ଓ ତଳ ତୋରଣାକୃତି ପଦକରେ ସୂର୍ଯ୍ୟ ରହିଛନ୍ତି । ନଟରାଜଙ୍କ ଊର୍ଦ୍ଧ୍ୱରେ କୀର୍ତ୍ତିମୁଖ ମସ୍ତକ ଦେଖା ଯାଉଥିବା ବେଳେ ଦୁଇ ପାର୍ଶ୍ୱରେ ମକର-କିନ୍ନର, ସିଂହ, ଗନ୍ଧର୍ବ ଓ ଗଣମାନେ ରହିଛନ୍ତି । ଦକ୍ଷିଣ ଓ ଉତ୍ତର ଦିଗ ବକ୍ରମସ୍ତକର ଉପର ଭାଗରେ ଯଥାକ୍ରମେ ଲକୁଲୀଶ ଓ ହରି-ହର ସ୍ଥାନିତ ହୋଇଥିବା ବେଳେ ଉଭୟର ନିମ୍ନ ଭାଗ ଓ ପୃଷ୍ଠ ଭାଗର ବକ୍ରମସ୍ତକଟି ସଂପୂର୍ଣ୍ଣ ଭଗ୍ନ । ଏଠାରେ ଉଲ୍ଲେଖ ଯୋଗ୍ୟଯେ, ବୋଇତାଳ ଏକ ଭିନ୍ନ ଶୈଳୀ ଅର୍ଥାତ୍ ଖାକରା ଶ୍ରେଣୀୟ ମନ୍ଦିର ହୋଇ ଥିବାରୁ ଏହାର ବକ୍ରମସ୍ତକଗୁଡ଼ିକର ରଚନା ଶୈଳୀ ରେଖ ଦେଉଳର ବକ୍ରମସ୍ତକ ଠାରୁ ଭିନ୍ନ ।

ଶିଶିରେଶ୍ୱର ସମ୍ମୁଖ ରାହାପାଗ ଉପର ପଦକରେ ପାରମ୍ପାରିକ ଭାବେ ନଟରାଜ ରହିଥିବା ବେଳେ ଦକ୍ଷିଣ ପାଖ ଉପର ପଦକରେ ଶିବଙ୍କ ମସ୍ତକ, ତଳ ପଦକରେ ମିଥୁନ ମୂର୍ତ୍ତି ଓ ଉତ୍ତରପାଖ ତଳ ପଦକରେ କେବଳ ହରି-ହର ରହିଛନ୍ତି । ଏହା ବ୍ୟତୀତ ବକ୍ରମସ୍ତକଗୁଡ଼ିକର ଅନ୍ୟ ପଦକ ଗୁଡ଼ିକ ଭଗ୍ନ । ମାର୍କଣ୍ଡେଶ୍ୱର ମନ୍ଦିରର ଉତ୍କୀର୍ଣ୍ଣ ଶୈଳୀ ଉନ୍ନତ ହେଲେହେଁ ଅଧିକାଂଶ ବକ୍ରମସ୍ତକ ଭଗ୍ନ । କେବଳ ସମ୍ମୁଖ ବକ୍ରମସ୍ତକର ଉପର ପଦକରେ ନଟରାଜଙ୍କ ସୁନ୍ଦର ପ୍ରତିମା ଓ ଉତ୍ତର ପାଖ ଉପରର ଚକ୍ରାକାର ପଦକ ମଧ୍ୟରେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ନିଖୁଣ ମୂର୍ତ୍ତି ରହିଛି । ଅର୍ଥାତ୍ ଏହିସବୁ ରଚନା ଗୁଡ଼ିକରେ ଦେବ, ଦେବୀଙ୍କ ମୂର୍ତ୍ତିକୁ ଅଧିକ ଗୁରୁତ୍ୱ ଦିଆଯାଇଛି ।

ଦଶମ ଶତାବ୍ଦୀର ମଧ୍ୟ ଭାଗରେ ନିର୍ମିତ ଭୁବନେଶ୍ୱରର ମୁକ୍ତେଶ୍ୱର ଏବଂ ଗୌରୀ ମନ୍ଦିର ଉଲ୍ଲେଖଯୋଗ୍ୟ । ଏହା ମଧ୍ୟରେ ଗୌରୀ ଦେବୀଙ୍କ ମନ୍ଦିର ବିକଶିତ ଖାକରା ଶୈଳୀର ଅଟେ । ଏହି ମନ୍ଦିରମାନଙ୍କ ବକ୍ରମସ୍ତକଗୁଡ଼ିକ ପୂର୍ବ ପ୍ରଚଳିତ ଶୈଳୀଠାରୁ ଅନେକାଂଶରେ ଭିନ୍ନ । ମୁକ୍ତେଶ୍ୱର ମନ୍ଦିରର ବକ୍ରମସ୍ତକରେ କୌଣସି ଦେବ, ଦେବୀ ସ୍ଥାନିତ ହୋଇ ନଥିବା ବେଳେ ମଧ୍ୟ ଭାଗରେ ପଦ୍ମ କିମ୍ବା ଏକ କ୍ଷୁଦ୍ର ମସ୍ତକ ଦେଖିବାକୁ ମିଳେ । ଏହି ଚକ୍ରାକାର ରଚନାର ଦୁଇ ପାର୍ଶ୍ୱରେ ଯକ୍ଷ,ଊର୍ଦ୍ଧ୍ୱରେ ସିଂହ ମୁଖ ରହିଥିବା ବେଳେ ମଧ୍ୟ ଭାଗରେ ବିଭିନ୍ନ ମଣ୍ଡନ କୃତି ସମେତ ଗନ୍ଧର୍ବ, ବିଦ୍ୟାଧର, କିନ୍ନରମାନଙ୍କ ମୂର୍ତ୍ତି ଦ୍ୱାରା ଆକର୍ଷଣୀୟ ଦେଖାଯାଏ । ଏହି ରଚନାର କିଞ୍ଚିତ ଉପରେ ନଟରାଜଙ୍କର ଏକ ସରଳ ପ୍ରତିମା ଦେଖିବାକୁ ମିଳେ । ଗୌରୀ ମନ୍ଦିରର ବକ୍ରମସ୍ତକଗୁଡ଼ିକ ସମ୍ପୂର୍ଣ୍ଣ ଆଳଙ୍କାରିକ ଅର୍ଥାତ ମଣ୍ଡନଧର୍ମୀ । ଏଥିରେ ଭିନ୍ନ ଶୈଳୀର କୀର୍ତ୍ତିମୁଖ ମସ୍ତକ ସହିତ ଗନ୍ଧର୍ବ , ଅପ୍‌ସରା, ମକର, କିନ୍ନର ଓ ବିଭିନ୍ନ ପ୍ରକାର ସୂକ୍ଷ୍ମ କାରୁକଳାମାନ ଦେଖାଯାଏ ।



ବକ୍ରମସ୍ତକ, ଲିଙ୍ଗରାଜ ମନ୍ଦିର



ବକ୍ରମସ୍ତକ, ଆଖଣ୍ଡଳେଶ୍ୱର ମନ୍ଦିର

ଏକାଦଶ ଶତାବ୍ଦୀ ପରେ ପରେ ବିକଶିତ ପଞ୍ଚରଥ ଓ ସପ୍ତରଥ ଶୈଳୀ ଦେଉଳ ଗୁଡ଼ିକର ଉଚ୍ଚତା ଅନୁଯାୟୀ ରାହାପାଗଗୁଡ଼ିକ ସଂକୀର୍ଣ୍ଣ ହୋଇ ପଡ଼ିବା ଦ୍ୱାରା, ଏହା ଉପରର ବକ୍ରମସ୍ତକ ଗୁଡ଼ିକ ଦେଉଳ ତୁଳନାରେ କ୍ଷୁଦ୍ର ଓ ଗୌଣ ମନେହୁଏ । ଏପରିକି କେତେକ ସ୍ଥଳେ ପାରମ୍ପାରିକ ବକ୍ରମସ୍ତକର ବିଷୟବସ୍ତୁ ଓ ନକ୍ସାରେ ବିଶେଷ ପରିବର୍ତ୍ତନ ଯୋଗୁ ଏଗୁଡ଼ିକର ଗୁରୁତ୍ୱ ହ୍ରାସ ପାଇଥିବା ଲକ୍ଷ୍ୟ କରାଯାଏ । ଏହି ସମୟର ପ୍ରଖ୍ୟାତ ଲିଙ୍ଗରାଜ ମନ୍ଦିରର, ଦେଉଳ ଉପରେ ଥିବା ବକ୍ରମସ୍ତକ ଗୁଡ଼ିକ ମୁକ୍ତେଶ୍ୱର ମନ୍ଦିରର ବକ୍ରମସ୍ତକ ଭଳି କମନୀୟ ହେଲେହେଁ ତଳ ଉପର ହୋଇ ଦୁଇଟି ପଦକ ଦେଖାଯାଏ । ଏହି ପଦକ ଗୁଡ଼ିକ ଏକାଧିକ ଚକ୍ରାକାର ମଣ୍ଡନକୃତିକୁ ନେଇ ରଚିତ । ଏଥିରେ ପୂର୍ବୋକ୍ତ ଉପଦେବତା ଓ ବସ୍ତୁ ଇତ୍ୟାଦି ସ୍ଥାନିତ ହେବା ସହିତ ସମ୍ମୁଖ ବକ୍ରମସ୍ତକର ମଧ୍ୟଭାଗରେ ନଟରାଜଙ୍କ ଏକ କ୍ଷୁଦ୍ର ପ୍ରତିମା ରହିଥିବା ବେଳେ ପଛ ଦୁଇ ପଦକରେ କାର୍ତ୍ତିକେୟ, ଦକ୍ଷିଣ ଦୁଇ ପଦକରେ ନୃତ୍ୟରତ ଗଣେଶ, ଉତ୍ତର ପାଖରେ ବାମଦେବ ଓ ଦଣ୍ଡାୟମାନ ଦୁଇ ବ୍ୟକ୍ତିଙ୍କ ମୂର୍ତ୍ତି ରହିଛି । କୀର୍ତ୍ତିମୁଖ ପରିବର୍ତ୍ତେ ପ୍ରତ୍ୟେକ ପାଖର ଏହି ବକ୍ରମସ୍ତକର ଉପର ଭାଗରେ ଉଦ୍ୟତସିଂହ ମୂର୍ତ୍ତି ଦେଖାଯାଏ । ତେବେ ଏହି ସବୁ ବକ୍ରମସ୍ତକ ମନ୍ଦିର ତୁଳନାରେ କ୍ଷୁଦ୍ର ଏବଂ ମଣ୍ଡନକୃତି ବହୁଳ ହୋଇଥିବାରୁ, ଏଥିରେ ଦେବ ଦେବୀଙ୍କ ମୂର୍ତ୍ତିମଧ୍ୟ ଗୁରୁତ୍ୱ ହରାଇଛନ୍ତି ।

ଲିଙ୍ଗରାଜ ମନ୍ଦିରର କିଞ୍ଚିତ ପରବର୍ତ୍ତୀ ସମୟର ଦୁଇଟି ମନ୍ଦିର ମଧ୍ୟରୁ ଗୋଟିଏ ପ୍ରାଚୀ ନଦୀ କୂଳ ପ୍ରତାପରୁଦ୍ରପୁର ଗ୍ରାମର ଆଖଣ୍ଡଳେଶ୍ୱର ଶିବ ମନ୍ଦିର ଓ ଅନ୍ୟଟି ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର । ଆଖଣ୍ଡଳେଶ୍ୱର ଦେଉଳର ବକ୍ରମସ୍ତକ ଗୁଡ଼ିକ ଚୈତ୍ୟପଦକ ଏବଂ ତୋରଣାକୃତି, ମୁଖ୍ୟତଃ ରେଖ ନକ୍ସା ଉପରେ ଆଧାରିତ । ଏଗୁଡ଼ିକ ଆକାରରେ ଛୋଟ ହେଲେ ହେଁ ପ୍ରତ୍ୟେକ ପାଖରେ ଦୁଇଟି ନକ୍ସା

ଦେଖାଯାଏ । ଏହାର ଦୁଇ ପାର୍ଶ୍ୱରେ ଶିବଗଣ ଓ ଉପର ଚୈତ୍ୟପଦକରେ ନଟରାଜଙ୍କ ଏକ କ୍ଷୁଦ୍ର ପ୍ରତିମା ସ୍ଥାନ ପାଇଛି । ଏଠାରେ ବକ୍ରମସ୍ତକର ଶୀର୍ଷରେ କୀର୍ତ୍ତିମୁଖ ମସ୍ତକ ଉପରେ ଥିବା ଉଦ୍ୟତ ସିଂହ ଦୃଷ୍ଟି ଆକର୍ଷଣ କରେ । ଦୁଇ ପଦକର ସର୍ବ ନିମ୍ନରେ ସରସ୍ୱତୀଙ୍କ ଏକ କ୍ଷୁଦ୍ର ପ୍ରତିମା ଓ ଦୁଇ ପାର୍ଶ୍ୱରେ ଥିବା ମିଥୁନ ମୂର୍ତ୍ତି ବକ୍ରମସ୍ତକ ଠାରୁ ଭିନ୍ନ ମନେହୁଏ । ବ୍ରହ୍ମେଶ୍ୱରଙ୍କ ଦେଉଳର ରାହାପାଗ ଗୁଡ଼ିକ ମୁଖ୍ୟତଃ ଅଙ୍ଗଶିଖର (ଦେଉଳ ଭଳି ନମୁନା ନିର୍ମାଣ) ଅଧିକାର କରିଥିବା ବେଳେ ତାରି ଉର୍ଦ୍ଧ୍ୱରେ ଏକ କ୍ଷୁଦ୍ର ବକ୍ରମସ୍ତକ ସ୍ଥାନିତ ହୋଇଛି । ଏହି ଛୋଟ ବକ୍ରମସ୍ତକ ଆଖଣ୍ଡଳେଶ୍ୱର ବକ୍ରମସ୍ତକ ସହିତ ବହୁ ଭାବରେ ସମତା ରକ୍ଷା କରୁଥିବା ବେଳେ ଏଥିରେ ମଧ ଦେବ ଦେବୀଙ୍କ ମୂର୍ତ୍ତି ସ୍ଥାନ ପାଇନାହିଁ । ମଧ୍ୟଯୁଗର ବହୁ ବକ୍ରମସ୍ତକ ଦେବ ଦେବୀ ବିହୀନ ଅର୍ଥାତ, ମୁଖ୍ୟତଃ ମଣ୍ଡନକୃତି ହୋଇ ପଡ଼ିଥିବା ବେଳେ ଦେଉଳର ରାହାପାଗ ବ୍ୟତୀତ ଜଗମୋହନ ବା ପୀଢ଼ଦେଉଳର ଗଣ୍ଡିରେ ମଧ ବିଭିନ୍ନ ଶୈଳୀର ବକ୍ରମସ୍ତକ ଯୋଗ କରାଯାଇଥିବା ଲକ୍ଷକରାଯାଏ ।



ମୁଣ୍ଡି ରଚନା,
କୋଟିତୀର୍ଥେଶ୍ୱର ମନ୍ଦିର

ମଧ୍ୟଯୁଗର ଶେଷ ଭାଗ ତଥା ତା'ର ପରବର୍ତ୍ତୀ ସମୟରେ ନିର୍ମିତ କେତେକ ଦେଉଳର ରାହାପାଗ ଉପରେ ଏକ ସରଳ ବକ୍ରମସ୍ତକ ନକସା ଉପରେ ଅଙ୍ଗଶିଖର ବା ବିଭିନ୍ନ ପ୍ରକାର ନମୂନା ଦେଉଳ ଯୋଗ ହୋଇଥିବା ଦେଖାଯାଏ । ଏହାର ଉଦାହରଣ ଲିଙ୍ଗରାଜ ମନ୍ଦିର ପରିସରର ପାର୍ବତୀ ମନ୍ଦିର ଓ ବିନ୍ଦୁସାଗର ନିକଟ କୋଟିତୀର୍ଥେଶ୍ୱର ଇତ୍ୟାଦି ବହୁ ମନ୍ଦିରରେ ଦେଖାଯାଏ । ଏହି ସମୟ ଏବଂ ଏହାର ପରବର୍ତ୍ତୀ କାଳର ବହୁ ଦେଉଳ ଦେହରୁ ବକ୍ରମସ୍ତକ ସମ୍ପୂର୍ଣ୍ଣ ଉଭେଇ ଯାଇଥିବା ବେଳେ ତା ସ୍ଥାନରେ କେବଳ ବିଭିନ୍ନ ପ୍ରକାର ଅଙ୍ଗଶିଖରର ରଚନାହିଁ ଦେଖିବାକୁ ମିଳେ । ଲିଙ୍ଗରାଜ ମନ୍ଦିର ପରିସରର ଲାବଣ୍ୟେଶ୍ୱର ଓ ଅନ୍ୟକେତେକ ମନ୍ଦିର, ସମେତ ରାମେଶ୍ୱର ମନ୍ଦିର ଏହାର ଉଦାହରଣ । ଉତ୍କଳୀୟ ମନ୍ଦିର ସ୍ଥାପତ୍ୟର ବିକାଶ ସଙ୍ଗେ ସଙ୍ଗେ ପ୍ରାଚୀନ ଶାସ୍ତ୍ର ସମ୍ମତ, କଳାତ୍ମକ ବକ୍ରମସ୍ତକର ବିଲୟ ଘଟିଥିବା ଲକ୍ଷ କରାଯାଏ ।

---

ସପ୍ତାହିକି 'ସମୟ' ଫେବୃଆରି, ୧୯୯୯ ରେ ପ୍ରକାଶିତ ଲେଖକଙ୍କ ସ୍ୱତନ୍ତ୍ର ପ୍ରବନ୍ଧ ।

# ପଞ୍ଚାୟତନ ଓ ଅଷ୍ଟପରିବାର ମନ୍ଦିର

ଅଧିକାଂଶ ସ୍ଥାନରେ ଗୋଟିଏ ମନ୍ଦିର କିମ୍ବା ତା ନିକଟରେ ଇତସ୍ତତଃ ଭାବେ ଅନ୍ୟ କେତେକ ବିଭିନ୍ନ ଆକାର ପ୍ରକାରର ମନ୍ଦିର ଦେଖାଯାଏ । କିନ୍ତୁ ଯେଉଁଠାରେ ମୁଖ୍ୟ ମନ୍ଦିର ଠାରୁ ସମଦୂରତ୍ୱରେ, ଚାରି କୋଣରେ , ସମ ଆକାରର ଚାରିଗୋଟି ମନ୍ଦିର ଥାଏ, ସେହି ମନ୍ଦିରପୁଞ୍ଜକୁ 'ପଞ୍ଚାୟତନ ମନ୍ଦିର' କୁହାଯାଏ । ଅର୍ଥାତ ମୁଖ୍ୟ ମନ୍ଦିର ସହିତ ଅନ୍ୟ ଚାରିଗୋଟି, ଏହିପରି ପାଞ୍ଚୋଟି ମନ୍ଦିର ଏକତ୍ର ଥାଏ । ଏହିଠାରେ ମୁଖ୍ୟ ମନ୍ଦିର ଆକାରରେ ବଡ଼ ଏବଂ ଅନ୍ୟ ଚାରି ମନ୍ଦିର ଅପେକ୍ଷାକୃତ ଛୋଟ । ଏହି ଛୋଟ ମନ୍ଦିର ଗୁଡ଼ିକ ସହିତ ଜଗମୋହନ, ପ୍ରାୟ ଦେଖାଯାଏ ନାହିଁ । ସୁପରିକଳ୍ପିତ କେତେକ ପଞ୍ଚାୟତନ ମନ୍ଦିର ବେଢ଼ା ମଧ୍ୟରେ, ପରବର୍ତ୍ତୀ ସମୟରେ ଅନ୍ୟ ମନ୍ଦିରମାନ ନିର୍ମାଣ ହୋଇଥିବାରୁ ମନ୍ଦିରର ସଜ୍ଜୀକରଣରେ ବିଶୃଙ୍ଖଳା ସୃଷ୍ଟି ହୋଇଥିବା ଲକ୍ଷ୍ୟକରାଯାଏ । ତେବେ ଓଡ଼ିଶାର କେତୋଟି ପଞ୍ଚାୟତନ ମନ୍ଦିର ମଧ୍ୟରେ ତାଳଚେର ନିକଟ କୁଆଳୋ ଗ୍ରାମର କନକେଶ୍ୱର ମନ୍ଦିର, କଟକଜିଲ୍ଲା ଜଙ୍ଗୌକାଠାରେ ଥିବା ପଞ୍ଚୁପାଣ୍ଡବ, ବିଷ୍ଣୁ ମନ୍ଦିର ଓ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ଉଲ୍ଲେଖଯୋଗ୍ୟ । ଶିବ ମନ୍ଦିରମାନଙ୍କ ପାର୍ଶ୍ୱ ମନ୍ଦିରଗୁଡ଼ିକରେ ମଧ ଶିବଲିଙ୍ଗ ସ୍ଥାପିତ ହୋଇଥିବା ବେଳେ ବିଷ୍ଣୁ ମନ୍ଦିରଗୁଡ଼ିକରେ ବିଷ୍ଣୁଙ୍କ ବିଭିନ୍ନ ଅବତାର ସ୍ଥାନିତ ହୋଇଥିବା ଲକ୍ଷ୍ୟକରାଯାଏ ।



ଅଷ୍ଟପରିବାର ମନ୍ଦିରର ଭୂନକସା,
ମଧୁକେଶ୍ୱର ମନ୍ଦିର, ମୁଖଲିଙ୍ଗମ୍

କେତେକ ସ୍ଥାନରେ ମଧ୍ୟଭାଗରେ ମୁଖ୍ୟ ମନ୍ଦିର ରହିଥିବା ବେଳେ ମନ୍ଦିର ଚତୁଃପାର୍ଶ୍ୱରେ ଥିବା ପ୍ରାଚୀରର ଚାରି କୋଣରେ ଚାରୋଟି ଛୋଟ ମନ୍ଦିର ବ୍ୟତୀତ ପ୍ରାଚୀରର ପ୍ରବେଶ ଦ୍ୱାରକୁ ଛାଡ଼ି ତିନି ମଧ୍ୟଭାଗରେ ଅନ୍ୟ ତିନୋଟି ଛୋଟ ମନ୍ଦିର ରହିଥାଏ । ଅର୍ଥାତ ମୁଖ୍ୟ ମନ୍ଦିର ସମେତ ଆଠଗୋଟି ମନ୍ଦିର ଏକତ୍ର ଥାଏ । ଏହି ପ୍ରକାର ମନ୍ଦିର ପୁଞ୍ଜକୁ 'ଅଷ୍ଟପରିବାର' ମନ୍ଦିର କୁହାଯାଏ । ଏଠାରେ ମୁଖ୍ୟ ମନ୍ଦିର ମଧ୍ୟରେ ସ୍ଥାପିତ ହୋଇଥିବା ମୁଖ୍ୟ ଦେବତାଙ୍କ ପରିବାରର ଅନ୍ୟ ଦେବଦେବୀ ମାନେ ଅନ୍ୟ ମନ୍ଦିର ଗୁଡ଼ିକରେ ସ୍ଥାନିତ ହୋଇଥାଆନ୍ତି । ଏହିପରି ଅଳ୍ପ କେତୋଟି ନିର୍ମାଣ ମଧ୍ୟରେ ଆନ୍ଧ୍ରର ମୁଖଲିଙ୍ଗମ୍‌ଠାରେ ଥିବା ମଧୁକେଶ୍ୱର ମନ୍ଦିର ପୁଞ୍ଜ ଅନ୍ୟତମ । କଟକ ଜିଲ୍ଲାର, ମାହାଙ୍ଗା ନିକଟ ଶୁକ୍ଳେଶ୍ୱରଙ୍କ ଧ୍ୱଂସପ୍ରାପ୍ତ ମନ୍ଦିର ମଧ୍ୟ ଅତୀତରେ ଏକ ସୁପରିକଳ୍ପିତ 'ଅଷ୍ଟପରିବାର' ମନ୍ଦିର ହୋଇଥିବା ସୂଚନା ମିଳେ । ରାୟଗଡ଼ା ନିକଟ ପାଇକପଡା ଠାରେ ଥିବା ପାତାଳେଶ୍ୱର ଶିବମନ୍ଦିରପୁଞ୍ଜ ପ୍ରଥମେ ପଞ୍ଚାୟତନ କୃତି ହୋଇଥିବା ବେଳେ ପରବର୍ତ୍ତୀ ସମୟରେ ଏହା ସହିତ ଅନ୍ୟ ମନ୍ଦିରର ସଂଯୋଗ ଯୋଗୁଁ ଏହା 'ଅଷ୍ଟପରିବାର' ମନ୍ଦିରରେ ରୂପାନ୍ତରିତ ହୋଇଥିବା ଜଣାଯାଏ । ନୂଆପଡ଼ା ଜିଲ୍ଲାର ମାରାଗୁଡ଼ା ଠାରେ ହୋଇଥିବା ପ୍ରତ୍ନତାତ୍ତ୍ୱିକ ଖନନରୁ, ତ୍ରିଶୂଳପାହାଡ଼ ଉପରେ ଏକ ସୁପରିକଳ୍ପିତ, ଇଟା ନିର୍ମିତ ଅଷ୍ଟପରିବାର ଶିବମନ୍ଦିର ଆବିଷ୍କୃତ ହୋଇଛି । କିନ୍ତୁ ଏହି ଭଗ୍ନାବଶେଷର ଉପଯୁକ୍ତ ସୁରକ୍ଷା ଅଭାବରୁ ଏହା ବର୍ତ୍ତମାନ ଧ୍ୱଂସାଭିମୁଖୀ । ବହୁ ସ୍ଥାନରେ ଏହି ଛୋଟ ମନ୍ଦିର ଗୁଡ଼ିକର ମୂର୍ତ୍ତି ସ୍ଥାନାନ୍ତରିତ ହୋଇଥିବାରୁ କେବଳ ଶୂନ୍ୟ ମନ୍ଦିର ଦେଖିବାକୁ ମିଳେ ।

# କଳିଙ୍ଗ ସ୍ଥାପତ୍ୟରେ କେତୋଟି ମୁଖ୍ୟ ଶୈଳୀର ମନ୍ଦିର

## ପରଶୁରାମେଶ୍ୱର ମନ୍ଦିର

ଅଧିକାଂଶ ପ୍ରାଚୀନ ଯୁଗର ମନ୍ଦିର ଭଗ୍ନ କିମ୍ବା ଜଗମୋହନ ବିହୀନ ହୋଇଥିବା ବେଳେ ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିରର ଅଙ୍ଗ ପ୍ରତ୍ୟଙ୍ଗ ପ୍ରାୟ ନିଖୁଣ ରହିଥିବା ବେଳେ ଜଗମୋହନ ସହିତ ଏହା ଏକ ସମ୍ପୂର୍ଣ୍ଣ ନିର୍ମାଣ ଅଟେ । ଦେଉଳ ଓ ଜଗମୋହନର ସମୁଦାୟ ଲମ୍ବ ପ୍ରାୟ ୨୦.୧୬ ମିଟରେ ଓ ପ୍ରସ୍ଥ ପ୍ରାୟ ୬.୦୫ ମିଟର । ମନ୍ଦିରର ଚତୁଃପାର୍ଶ୍ୱରେ ପରିଷ୍କାର ପ୍ରଦକ୍ଷଣ ପଥ ଥିବା ଏକ ବେଢ଼ା ମଧ୍ୟରେ ଅବସ୍ଥିତ । ପଶ୍ଚିମମୁଖୀ ଦେଉଳ ଗଣ୍ଡିର କନିକପାଗରେ ଥିବା ଏକ ଆଲମ୍ବ ଧାର ଯୋଗୁଁ ତ୍ରିରଥ ଶୈଳୀର ଏହି ନିର୍ମାଣ ପଞ୍ଚରଥର ଆଭାସ ଦିଏ । ତଳ ପତନର ବର୍ଗାକାର ଭୂନକ୍ସାରେ ଦେଉଳର ପ୍ରତ୍ୟେକ ବାହାର ପାଖ ପ୍ରାୟ ୬.୦୫ ମିଟର ଓ ଭିତର ପାଖ, ଅର୍ଥାତ୍ ବର୍ଗାକାର ଗର୍ଭଗୃହର ପ୍ରତ୍ୟେକ ପାଖ ପ୍ରାୟ ୩.୦୦ ମିଟର । ଜଗମୋହନକୁ ସଂଯୋଗ କରୁଥିବା ଏହାର ପ୍ରବେଶ ଦ୍ୱାରର ଚଉଡା ପ୍ରାୟ ୦.୭୫ ମିଟର ଓ ଉଚ୍ଚତା ପ୍ରାୟ ୧.୫୫ ମିଟର । ଏହାର ତ୍ରିଅଙ୍ଗ ବାଡର ଉଚ୍ଚତା ପ୍ରାୟ ୫.୮୦ ମିଟର ହୋଇଥିବା ବେଳେ ପାଭାଗରେ ପ୍ରାଚୀନ ଶୈଳୀର ଖୁରା, ନୋଳି ଓ ଖୁରାର ତ୍ରିକର୍ମ ଦେଖାଯାଏ । ଏହା ଉପରେ ସରଳ ଜଂଘ ଓ ତା' ଉପରେ ବାଡ ଓ ଗଣ୍ଡିକୁ ଅଲଗା କରୁଥିବା, ଉପରେ ଓ ତଳେ ଧାରଥିବା ଗଭୀର ବରଣ୍ଡ ରହିଛି । ଗଣ୍ଡିର ରାହାପାଗରେ ବିଧିମତେ ଗଣେଶ, କାର୍ତ୍ତିକେୟ ଓ ପାର୍ବତୀଙ୍କ ମୂର୍ତ୍ତି ପାର୍ଶ୍ୱଦେବତା ଭାବେ ଦେଖିବାକୁ ମିଳେ । ବାଡ଼, କନିକପାଗର ଜଂଘରେ ଥିବା ବଜ୍ରମୁଣ୍ଡି ବା ବିମାନିକ

ଗୁଡିକର ଖୋପରୁ ଅଧିକାଂଶ ଆବରଣଦେବତାଙ୍କ ମୂର୍ତ୍ତି ସ୍ଥାନାନ୍ତରିତ ହୋଇଛି । ବରଣ୍ଡ ଉପରୁ ଘନ ଖର୍ବ ଦେଉଳ ଗଣ୍ଡିର ଉଚ୍ଚତା ପ୍ରାୟ ୫.୩୮ ମିଟର । କିଞ୍ଚିତ୍ ସମ୍ମୁଖକୁ ବାହାରିଥିବା ଚାରିପାର୍ଶ୍ୱର ରାହାପାଗ ଉପରେ ଦୁଇ ପଦକ ବିଶିଷ୍ଟ ବକ୍ରମସ୍ତକ ବା 'ଭୋ' ଗୁଡିକ ଆକର୍ଷଣୀୟ ଅଟେ । ଏହା ବ୍ୟତୀତ ଗଣ୍ଡିର ସର୍ବାଙ୍ଗ ବହୁବିଧ ମଣ୍ଡନକୃତି ଓ ମୂର୍ତ୍ତିକଳାରେ ପରିପୂର୍ଣ୍ଣ । କନିକପାଗ ଗୁଡିକରେ କେତୋଟି ଗଜାକ୍ରାନ୍ତ ମୂର୍ତ୍ତିସହ ପାଞ୍ଚଭୂମି ଓ ସେହି ସଂଖ୍ୟକ ଭୂମିଅଁଳା ଦେଖାଯାଏ । ଦେଉଳ ମସ୍ତକ ଭାଗର ଉଚ୍ଚତା ପ୍ରାୟ ୧.୩୮ ମିଟର । ଏଥିରେ ବେକି ତ୍ରିପଟଧାର, ପତଳାଆମଳକଶିଳା, ଖପୁରି ଓ ଆକାଶଲିଙ୍ଗ ରହିଛି । ଅମଳକଶିଳା ନିମ୍ନରେ ଅର୍ଥାତ୍ ବେକି ଠାରେ ଦେଖା ଯାଉଥିବା କେତୋଟି ଦ୍ୱିପିଚାସିଂହ ମୂର୍ତ୍ତି ବ୍ରିଟିଶ୍ ସମୟରେ, ମନ୍ଦିର ମରାମତି ବେଳେ ସ୍ଥାନିତ ହୋଇଥିବା ଜଣାଯାଏ । ମସ୍ତକର ସର୍ବାଗ୍ରରେ ଥିବା ଆୟୁଧ ବା ତ୍ରିଶୂଳର ଉଚ୍ଚତା ପ୍ରାୟ ୦.୪୫ ମିଟର । ଏହିପରି ଦେଉଳର ମୋଟ ଉଚ୍ଚତା ୧୩.୦୦ ମିଟରରୁ ସାମାନ୍ୟ କମ୍ ।



ପରଶୁରାମେଶ୍ୱର ମନ୍ଦିରର ପାର୍ଶ୍ୱଦୃଶ୍ୟ ଓ ଭୂନକ୍ସା

ତଳପଉଟର ଉପରେ ଦୁଇ-ଚାଳ ଯୁକ୍ତ ଆୟତାକାର ଜଗମୋହନର ବାହାର ପାଖ, ସରଳ ବାଡ଼ର ଲମ୍ବ ପ୍ରାୟ ୯.୦୦ ମିଟର ଓ ପ୍ରସ୍ଥ ବା ସମ୍ମୁଖଭାଗ ୬.୯୨ ମିଟର ଅଟେ । କୋଠରୀର ଭିତର ପାଖ ଲମ୍ବ ୭.୭୦ ମିଟର ଓ ପ୍ରସ୍ଥ ୬.୧୫ ମିଟର ହୋଇଥିବା ବେଳେ ଏହା ମଧ୍ୟରେ ଛଅ' ଗୋଟି ଚତୁଷ୍କୋଣ ଖମ୍ବ ରହିଛି । ଜଗମୋହନ ବାଡ଼ର ଉଚ୍ଚତା ପ୍ରାୟ ୨.୧୪ ମିଟର ଓ ଦୋଚାଳ ବା ଛାତର ଉଚ୍ଚତା ପ୍ରାୟ ୨.୨୨ ମିଟର । ବାଡ଼ ଉପରେ ଚାଳର ଆକାର ବାଡ-ପରିସୀମା ଠାରୁ ତିନି ଦିଗକୁ କିଞ୍ଚିତ ବୃଦ୍ଧି ପାଇଥିବାରୁ, ଏହା ବାଡ଼ ଉପରେ ଛଞ୍ଚାର କାର୍ଯ୍ୟ କରେ । ନିମ୍ନର ବଡଚାଳ ଓ ଉର୍ଦ୍ଧ୍ୱର ଛୋଟ ଚାଳ ମଧ୍ୟଭାଗର କାଣ୍ଡିରେ ଥିବା ଚତୁଷ୍କୋଣ ଫାଙ୍କଗୁଡ଼ିକ ଜଗମୋହନ ମଧ୍ୟକୁ ବାୟୁ ଓ ଆଲୋକ ପ୍ରବେଶ କରିବାରେ ସାହାଯ୍ୟ କରେ । ରଥକ ବିହୀନ ଜଗମୋହନ ବାହାର ପାଖ ବାଡ଼ର ବିଭିନ୍ନ ଆକାରର ଚତୁଷ୍କୋଣ କ୍ଷେତ୍ରଗୁଡ଼ିକ, ବିଭିନ୍ନ ମୂର୍ତ୍ତି ଓ ମଣ୍ଡନକୃତିରେ ପରିପୂର୍ଣ୍ଣ । ଏହାର ସମ୍ମୁଖ, ମଧ୍ୟଭାଗରେ ଗୋଟିଏ ପ୍ରବେଶ ଦ୍ୱାର ଓ ଦୁଇ ପାର୍ଶ୍ୱରେ ନୃତ୍ୟ-ଗୀତ ପରିବେଷଣ କରୁଥିବା ଦୁଇଟି ମୂର୍ତ୍ତିକଳା ଯୁକ୍ତ ଗବାକ୍ଷ ରହିଥିବା ବେଳେ ଦକ୍ଷିଣ ବାଡ଼ରେ ଗୋଟିଏ ପ୍ରବେଶ ଦ୍ୱାର ଓ ଗୋଟିଏ ଜାଲି ଗବାକ୍ଷ ସମେତ ଉତ୍ତର ପାର୍ଶ୍ୱ ବାଡ଼ରେ କେବଳ ଗୋଟିଏ ଜାଲି-ଗବାକ୍ଷ ଦେଖାଯାଏ । ଏହି ଜଗମୋହନର ମୋଟ ଉଚ୍ଚତା ପ୍ରାୟ ୪.୭୦ ମିଟର । ଏହାର ସମ୍ମୁଖ ପ୍ରବେଶ ଦ୍ୱାର ଚଉଡ଼ା ୦.୮୦ ମିଟର ଓ ଉଚ୍ଚତା ୧.୫୦ ମିଟର ଅଟେ ।

## ମୁକ୍ତେଶ୍ୱର ମନ୍ଦିର :

ପ୍ରାଚୀନ ନିର୍ମାଣର ଅଳ୍ପ କେତେକ ବୈଶିଷ୍ଟ୍ୟ ସହିତ ବହୁ ବିକଶିତ ପରିକଳ୍ପନାକୁ ନେଇ ନିର୍ମିତ ମଧ୍ୟଯୁଗ ପ୍ରାରମ୍ଭର ଏହି ମନ୍ଦିରଟି କଳିଙ୍ଗ କଳା ଓ ସ୍ଥାପତ୍ୟର ରତ୍ନ ଭାବେ ପରିଗଣିତ ହୁଏ । ପଶ୍ଚିମ ମୁଖୀ ମୁକ୍ତେଶ୍ୱର ମନ୍ଦିରର ଦେଉଳ ଓ ଜଗମୋହନ ୦.୩୩ ମିଟର ଏକ ଅନୁଚ୍ଚ ପୀଠ ବା ବେଦୀ ଉପରେ ନିର୍ମିତ ହୋଇଥିବା ବେଳେ ଏହାର ଚତୁଃପାର୍ଶ୍ୱରେ ସଂକୀର୍ଣ୍ଣ ପ୍ରଦକ୍ଷିଣ ପଥ, ଏକ ଅନୁଚ୍ଚ ପ୍ରାଚୀର ଏବଂ ସମ୍ମୁଖରେ ଏକ ସୁନ୍ଦର ତୋରଣ ରହିଛି । ପୀଠ ଉପର ଭୂନକ୍ସାରେ ବର୍ଗାକାର ଦେଉଳର, ପ୍ରତ୍ୟେକ ବାହାର ପାଖ (କନିକରୁ କନିକ) ପ୍ରାୟ ୪.୦୦ ମିଟର ଓ ଭିତର ବା ଗର୍ଭଗୃହର ପ୍ରତ୍ୟେକ ପାଖ ପ୍ରାୟ ୨.୪୬ ମିଟର । ପଞ୍ଚରଥ ଶୈଳୀ, ତ୍ରିଅଙ୍ଗ ବାଡ଼ କନିକପାଗରେ ଚାରିକର୍ମ ଓ ଅନ୍ୟ ପାଗଗୁଡ଼ିକରେ ପଞ୍ଚକର୍ମ ଦେଖାଯାଏ । ଜଂଘର ପ୍ରସସ୍ତ ରାହାପାଗର ଖୋପଗୁଡ଼ିକରୁ ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ଓ ଅନ୍ୟ ପାଗମାନଙ୍କ ଖାକରାମୁଣ୍ଡି ଗୁଡ଼ିକରୁ ଆବରଣ ଦେବତାଙ୍କ ମୂର୍ତ୍ତିଗୁଡ଼ିକ ସ୍ଥାନାନ୍ତରିତ ହୋଇଥିବା ବେଳେ ଏଗୁଡ଼ିକର ପାର୍ଶ୍ୱରେ ଥିବା ଉପସ୍ତମ୍ଭମାନଙ୍କରେ ବିଭିନ୍ନ ଭଙ୍ଗିର ନାରୀ ଓ ପୁରୁଷ ପ୍ରତିମା ଭଗ୍ନାବସ୍ଥାରେ ଦେଖିବାକୁ ମିଳେ । ଏହାର ଅନ୍ତରାପାଗମାନଙ୍କରେ ଗଜସିଂହ ଯୁକ୍ତ ନାଗ, ନାଗୀ ମୂର୍ତ୍ତିମାନ ସ୍ଥାନିତ ହୋଇଛି । ବାଡ଼ର ସର୍ବୋଚ୍ଚ ଭାଗ, ପ୍ରାଚୀନ ଶୈଳୀ, ଗଭୀର ବରଣ୍ଡର ନିମ୍ନରେ ଓ ଉର୍ଦ୍ଧ୍ୱରେ ଖୁରା ସଦୃଶ ଧାର ଦେଖାଯାଏ । ବିଭିନ୍ନ କାରୁକଳା ଓ ମୂର୍ତ୍ତିକଳା ଯୁକ୍ତ ଏହି ବାଡ଼ର ଉଚ୍ଚତା, ପୀଠ ଉପରୁ ପ୍ରାୟ ୩.୩୦ ମିଟର ଅଟେ ।

ମୁକ୍ତେଶ୍ୱର ମନ୍ଦିରର
ପାର୍ଶ୍ୱଦୃଶ୍ୟ ଓ ଭୂନକ୍ସା







ମୁକ୍ତେଶ୍ୱରଙ୍କ ଦେଉଳ ଗଣ୍ଡିର କାରୁକଳା ଉଚ୍ଚକୋଟୀର । ଏହାର ପ୍ରସସ୍ତ ରାହାପାଗଗୁଡ଼ିକରେ ଥିବା ପଦ୍ମ-ଭୋ ଗୁଡ଼ିକର ରଚନା ଶୈଳୀ ଅତ୍ୟନ୍ତ ଆକର୍ଷଣୀୟ ହୋଇ ଥିବା ବେଳେ ଅନୁରାହା, ଅଚରା ଓ କନିକପାଗ ବିଭିନ୍ନ ମଣ୍ଡନକୃତି ଓ ମୂର୍ତ୍ତିକଳାରେ ପରିପୂର୍ଣ୍ଣ । ଏହି ଗଣ୍ଡିର ଉଚ୍ଚତା ପ୍ରାୟ ୪.୭୦ ମିଟର । ଗଣ୍ଡି ଉପରେ ଉପଯୁକ୍ତ ଆକାରର ବେକି, ଦ୍ୱିପଟଧାର, ଅଁଳା, ଖପୁରି ଓ କଳସର ମୋଟ ଉଚ୍ଚତା ପ୍ରାୟ ୧.୭୫ ମିଟର । ଏହା ଉପରେ ଆୟୁଧ ବା ତ୍ରିଶୂଳର ଉଚ୍ଚତା ପ୍ରାୟ ୦.୫୦ ମିଟର ଅଟେ । ଏହିପରି ପୀଠ ସମେତ ଦେଉଳର ମୋଟ ଉଚ୍ଚତା ପ୍ରାୟ ୧୦.୬୦ ମିଟର ଅଟେ ।

ଦେଉଳ ଠାରୁ ପ୍ରାୟ ୦.୪୪ ମିଟର ବ୍ୟବଧାନ ସୃଷ୍ଟି କରୁଥିବା ଦୁଇ ପାର୍ଶ୍ୱର ସନ୍ଧିସ୍ଥଳ ପରେ ମନ୍ଦିରର ଜଗମୋହନ ରହିଛି । ଏହି କୋଠରୀଟି ପୂର୍ବବର୍ତ୍ତୀ ଆୟତାକାର ଓ ପରବର୍ତ୍ତୀ ବର୍ଗାକାର ଜଗମୋହନର ଏକ ମଧ୍ୟବର୍ତ୍ତୀ ଆକାର । ଏହି କିଞ୍ଚିତ ବର୍ଗାକାର ନିର୍ମାଣ ଭୂନକ୍ସାରେ ବାହାର ପାଖ, ପ୍ରବେଶ ଦ୍ୱାରର ବର୍ଦ୍ଧିତ ଭାଗ ବା ଅଳସାବାଡ଼ ସହିତ ଲମ୍ବ ପ୍ରାୟ ୭.୮୫ ମିଟର ଓ ପ୍ରସ୍ଥ (କନିକରୁ କନିକ) ପ୍ରାୟ ୫.୯୫ ମିଟର । ଏହି କୋଠରୀ ଭିତରପାଖ ଲମ୍ବ ପ୍ରାୟ ୪.୭୦ ମିଟର ଓ ପ୍ରସ୍ଥ ପ୍ରାୟ ୩.୭୦ ମିଟର ଅଟେ । ତ୍ରିରଥ ଶୈଳୀର ଏହାର ଦୁଇ ପାର୍ଶ୍ୱ ବାଡ଼ର ରାହାପାଗରେ ବାଙ୍କ ଜାଲି-ଗବାକ୍ଷର ଧାରରେ ବିଭିନ୍ନ ପ୍ରକାର ମଣ୍ଡନକୃତି ଓ ମୂର୍ତ୍ତିକଳା ଦେଖାଯାଏ । ଗବାକ୍ଷ ଦୁଇ ପାର୍ଶ୍ୱ ଜଂଘରେ ମଧ୍ୟ ଦେଉଳର ମଣ୍ଡନକୃତି, ମୁଣ୍ଡି ଓ ମୂର୍ତ୍ତିକଳା ଭଳି କୃତିମାନ ରହିଛି । ବାଡ଼ର ଉଚ୍ଚତା ପୂର୍ବୋକ୍ତ ପୀଠ ଉପରୁ ପ୍ରାୟ ୨.୭୦ ମିଟର । ଏହା ଉପରେ ଥିବା ପ୍ରାରମ୍ଭ ସମୟର ନହଟାଳିଆ ପୀଢ଼ ଛାତର ଉଚ୍ଚତା ପ୍ରାୟ ବାଡ଼ ସହିତ ସମାନ । ପୀଢ଼ ଉପରେ ରହିଥିବା କଳସର ଉଚ୍ଚତା ପ୍ରାୟ ୦.୫୫ ମିଟର । ପୀଢ଼ ଛାତର ସମ୍ମୁଖ ଓ ଦୁଇ ପାର୍ଶ୍ୱରେ ଜ୍ୟାମିତିକ ଶୈଳୀର ମଣ୍ଡନକୃତିର ବକ୍ରମସ୍ତକ ଓ ସିଂହ ମୂର୍ତ୍ତିମାନ ଦେଖାଯାଏ । ଏହି ପ୍ରକାରେ ଜଗମୋହନର ମୋଟ ଉଚ୍ଚତା ପ୍ରାୟ ୬.୩୦ ମିଟର । ଏହି ମନ୍ଦିର ସହିତ ଥିବା ଅନ୍ୟ ଦୁଇଟି କଳାତ୍ମକ ନିର୍ମାଣ ହେଉଛି, ଏହାର ସମ୍ମୁଖରେ ଥିବା ତୋରଣ ଏବଂ ଜଗମୋହନ ଭିତର ଛାତତଳ ବା ସିଲିଂ, ଯାହାର ସମ୍ୟକ୍ ସୂଚନା ଏହି ପୁସ୍ତକରେ ଅନ୍ୟତ୍ର ଦିଆଯାଇଛି ।

## ରାଜାରାଣୀ ମନ୍ଦିର :

କଳିଙ୍ଗ କଳା ଓ ସ୍ଥାପତ୍ୟର ଅନ୍ୟ ଏକ କମନୀୟ କୃତି । ତେବେ ଏହି ଦେଉଳର କେତେକାଂଶ ଓ ଜଗମୋହନର ମଣ୍ଡନକୃତି ଓ ମୂର୍ତ୍ତିକଳା ଅସମ୍ପୂର୍ଣ୍ଣ ରହିଛି ଭୂମି ଉପରେ ଏହାର ସାଧା ବେଦୀ ପାଠର ଉଚ୍ଚତା ପ୍ରାୟ ୦.୬୦ ମିଟର ଓ ଏହା ଉପର କନିପାଠର ଉଚ୍ଚତା ପ୍ରାୟ ୦.୮୦ ମିଟର । ଏହି ପାଠରେ ଦେଖାଯାଏ ଖୁରା, କନି ଏବଂ ବସନ୍ତ ଉପରେ ପୁନଶ୍ଚ ପଦ୍ମପୃଷ-ଖୁରା । ଏହିପରି ଦୁଇ ପାଠର ମୋଟ ଉଚ୍ଚତା ୧.୪୦ ମିଟର । ଦୁଇଟି ପାଠ ଉପରେ ନିର୍ମିତ, ସନ୍ଧିସ୍ଥଳ ସମେତ ଦେଉଳ ଓ ଜଗମୋହନର ଲମ୍ବ ପ୍ରାୟ ୧୯.୬୫ ମିଟର ହୋଇଥିବା ବେଳେ ଦେଉଳର ପ୍ରସ୍ଥ ୮.୯୦ ମିଟର ଓ ଜଗମୋହନ ପ୍ରସ୍ଥ ୧୦.୪୫ ମିଟର ଅଟେ ।





ରାଜାରାଣୀ ମନ୍ଦିରର ପାର୍ଶ୍ୱଦୃଶ୍ୟ ଓ ଭୂନକ୍ସା

ପଞ୍ଚରଥ ଶୈଳୀ ବହୁ କୋଣ ବିଶିଷ୍ଟ ଦେଉଳ ଭୂନକ୍ସାରେ, ରାହାପାଗରୁ ରାହାପାଗ, ପୂର୍ବରୁ ପଶ୍ଚିମ ଓ ଦକ୍ଷିଣରୁ ଉତ୍ତର ପ୍ରତ୍ୟେକ ପାଖ, ଲମ୍ବ ଓ ପ୍ରସ୍ଥ ପ୍ରାୟ ୮.୯୦ ମିଟର ହୋଇଥିବା ବେଳେ କନିକରୁ କନିକ ପ୍ରତ୍ୟେକ ପାଖ ପ୍ରାୟ ୫.୮୫ ମିଟର । ଅନ୍ୟ ଭାବରେ ଏହା ଷୋଡ଼ଶକୋଣ ସୃଷ୍ଟି କରୁଥିବା, ତୀର୍ଯ୍ୟକ ଭାବେ ଏକ ବର୍ଗକ୍ଷେତ୍ର । ଦେଉଳର ଗର୍ଭଗୃହ ବର୍ଗାକାର ଏବଂ ଏହାର ପ୍ରତ୍ୟେକ ପାଖ ପ୍ରାୟ ୩.୧୫ ମିଟର ହୋଇଥିବା ବେଳେ ବାଡ଼ର ମଧ୍ୟଭାଗରେ ବିପରୀତ ରଥକ ସଦୃଶ ଗଭୀର ଧାରମାନ ଦେଖାଯାଏ । ପୂର୍ବୋକ୍ତ ଦୁଇ ପୀଠ ଉପରୁ ପଞ୍ଚାଙ୍ଗ ଦେଉଳ ବାଡ଼ର ଉଚ୍ଚତା ପ୍ରାୟ ୫.୬୫ ମିଟର । ଏଥିରେ ସୁଉଚ୍ଚ ପଞ୍ଚକର୍ମର ପାଭାଗ, ତଳଜଂଘ, ଦୁଇ ଧାରର ବନ୍ଧନି ଏବଂ ଉପରଜଂଘ ଉପରେ ଏକ ଭିନ୍ନ ଶୈଳୀର ସପ୍ତକର୍ମ ବରଣ୍ଡ ଦେଖାଯାଏ । ବାଡ଼ରେ ରଥକଗୁଡ଼ିକ ବିଭିନ୍ନ ଧାର ଓ ଉପଧାରରେ ବିଭକ୍ତ ହେବା ସହିତ ବିଭିନ୍ନ ମଣ୍ଡନକୃତି ଓ ମୂର୍ତ୍ତିକଳାରେ ପରିପୂର୍ଣ୍ଣ । କିନ୍ତୁ ରାହାପାଗର ଖୋପଗୁଡ଼ିକରୁ ପାର୍ଶ୍ୱଦେବତାଙ୍କ ମୂର୍ତ୍ତିଗୁଡ଼ିକ ସ୍ଥାନାନ୍ତରିତ ହୋଇଛି ।

ଦେଉଳ ଗଣ୍ଡିର ପାଗମାନଙ୍କରେ କାରୁକଳା ପୂର୍ଣ୍ଣ ଅଙ୍ଗଶିଖରଗୁଡ଼ିକର ସଫଳ ପ୍ରୟୋଗ ଯୋଗୁ ଏହାର ନିର୍ମାଣ ଶୈଳୀ ଅନ୍ୟ ମନ୍ଦିର ଠାରୁ ଭିନ୍ନ ପରିଲକ୍ଷିତ ହେବା ସହିତ ଆକର୍ଷଣୀୟ ଦେଖାଯାଏ । ଏହାର ରାହାପାଗମାନଙ୍କରେ ଦୁଇଟି ଓ ଅନ୍ୟ ପାଗମାନଙ୍କରେ ଗୋଟିଏ, ଗୋଟିଏ ଅଙ୍ଗଶିଖର ସ୍ଥାନିତ ହୋଇଛି । ଏହି ପ୍ରକାର ଦେଉଳ ଗଣ୍ଡିରେ ବକ୍ରମସ୍ତକ ଦେଖାଯାଏ ନାହିଁ । ବାଡ଼ ଉପରୁ ଗଣ୍ଡିର ଉଚ୍ଚତା ପ୍ରାୟ ୮.୩୦ ମିଟର । ଗଣ୍ଡି ଉପର ପାରମ୍ପରିକ ମସ୍ତକ ଭାଗର ଉଚ୍ଚତା ପ୍ରାୟ ୩.୦୦ ମିଟର । ଏଠାରେ ଅଁଳାର ନିମ୍ନ ଭାଗରେ ଅର୍ଥାତ୍ ବେକି ନିକଟରେ ଚାରି ରାହାପାଗ ଉପରେ, ପ୍ରତ୍ୟେକରେ ଗୋଟିଏ ଗୋଟିଏ ମନ୍ଦିରଚାରିଣୀ ମୂର୍ତ୍ତି ରହିଛି । ଏହି ପ୍ରକାରେ ପୀଠ ସହ ଦେଉଳର ମୋଟ ଉଚ୍ଚତା ପ୍ରାୟ ୧୮.୩୦ ମିଟର ।

ଏହି ନିର୍ମାଣରେ ଦେଉଳ ଠାରୁ ଭୂନକ୍ସାରେ ଜଗମୋହନର ଆକାର ବଡ଼ । ଦେଉଳ ଓ ଜଗମୋହନ ମଧ୍ୟରେ ଥିବା ସନ୍ଧିସ୍ଥଳର ଚଉଡ଼ା ପ୍ରାୟ ୦.୯୦ ମିଟର । ପୀଠ ଉପରେ ତ୍ରିରଥ ଶୈଳୀର, ବର୍ଗାକାର ଜଗମୋହନର ପ୍ରତ୍ୟେକ ବାହାର ପାଖ, କନିକରୁ କନିକ ପ୍ରାୟ ୯.୦୦ ମିଟର ଏବଂ ଦୁଇ ପାର୍ଶ୍ୱ ବାଡ଼ରେ ଥିବା ଗବାକ୍ଷ ପ୍ରାୟ ୦.୭୫ ମିଟର, ସମ୍ମୁଖକୁ ବଢ଼ି ରହିଛି । ଏହାର ଭିତର ପାଖ ବର୍ଗାକାର କୋଠରୀର ପ୍ରତ୍ୟେକ ପାଖ ପ୍ରାୟ ୬.୦୦ ମିଟର । ବାହାର ପୀଠ ଉପରେ, ବାଡ଼ର ଉଚ୍ଚତା ପ୍ରାୟ ୩.୪୫ମିଟର । ଏହି ମୁଖଶାଳାର ପ୍ରବେଶ ଦ୍ୱାର, ଦକ୍ଷିଣ ଓ ଉତ୍ତର ପାଖ ବାଡ଼ରେ ଥିବା ଦୁଇ ଗବାକ୍ଷ ବ୍ୟତୀତ ଅନ୍ୟ ଅଙ୍ଗ ପ୍ରତ୍ୟଙ୍ଗରେ କାରୁକଳା ଓ ମୂର୍ତ୍ତିକଳା ଉତ୍କୀର୍ଣ୍ଣ ହୋଇନାହିଁ । ବାଡ଼ ଉପରେ ତିନି ଦିଗକୁ ବଢ଼ି ରହିଥିବା କିଞ୍ଚିତ ପ୍ରସସ୍ତ ନହଚାଳିଆ ପୀଢ଼ ଛାତ ଉପରେ କେବଳ ଏକ କଳସ ଦେଖାଯାଏ । ଏହି ଚାଳର ଉଚ୍ଚତା ପ୍ରାୟ ୪.୦୦ ମିଟର ହୋଇଥିବା ବେଳେ ଏହାର ତିନି ପାର୍ଶ୍ୱ ବକ୍ରମସ୍ତକର କାରୁକଳା ଅସମ୍ପୂର୍ଣ୍ଣ ରହିଛି । ଏହିପରି ପୀଠ ଉପରେ ଜଗମୋହନର ଉଚ୍ଚତା ୭.୪୫ ମିଟର ଅଟେ ।



## ଅନନ୍ତ-ବାସୁଦେବ ମନ୍ଦିର:

ଆକାରରେ ଛୋଟ ହେଲେହେଁ, ଲିଙ୍ଗରାଜ ମନ୍ଦିର ଓ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଭଳି ଭୁବନେଶ୍ୱରର ଅନନ୍ତ-ବାସୁଦେବଙ୍କ ମନ୍ଦିରଟି ମଧ୍ୟ ବିକଶିତ ମନ୍ଦିର ସ୍ଥାପତ୍ୟର ଏକ ସମ୍ପୂର୍ଣ୍ଣ ନିର୍ମାଣ । ପଶ୍ଚିମମୁଖୀ ମନ୍ଦିରଟିରେ ଦେଉଳ, ଜଗମୋହନ ସହିତ ନାଟମଣ୍ଡପ ଓ ଭୋଗ ମନ୍ଦିର ମଧ୍ୟ ରହିଛି । ଏହା ବ୍ୟତୀତ ଲିଙ୍ଗରାଜ ମନ୍ଦିର ପାର୍ଶ୍ୱଦେବତାଙ୍କ ସମ୍ମୁଖର ନିଶାମନ୍ଦିରଗୁଡ଼ିକ ପରବର୍ତ୍ତୀ ସମୟରେ ସଂଯୋଗ ହୋଇଥିବା ବେଳେ ଏଠାରେ ନିଶାମନ୍ଦିର ଗୁଡ଼ିକ ନିର୍ମାଣ ସମୟରେହିଁ ପରିକଳ୍ପନା କରାଯାଇଛି । ତେବେ ବର୍ତ୍ତମାନ କେବଳ ପୂର୍ବ ଦିଗର ମନ୍ଦିରଟି ତିଷ୍ଠି ରହିଥିବା ବେଳେ ଦକ୍ଷିଣ ଓ ଉତ୍ତର ଦିଗର ଦୁଇ ମନ୍ଦିର ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଛି ।

ଅନନ୍ତ-ବାସୁଦେବଙ୍କ ଦେଉଳ, ତାର ତିନି ପାର୍ଶ୍ୱର ନିଶାମନ୍ଦିର ଓ ଜଗମୋହନ, ସ୍ୱତନ୍ତ୍ର ଭାବେ ନିର୍ମିତ ଦୁଇ ପୀଠ ଉପରେ ଅବସ୍ଥିତ । ଏଠାରେ ପ୍ରଥମ ବେଦୀ ପୀଠର ଉଚ୍ଚତା ପ୍ରାୟ ୦.୨୫ ମିଟର । ଏହା ଉପର ପୀଠର ନିମ୍ନରେ ଓ ଊର୍ଦ୍ଧ୍ୱରେ ତ୍ରିକର୍ମ ଯଥା:- ଖୁରା, କନି ଓ ବସନ୍ତ ଦେଖାଯାଏ ଏବଂ ମଧ୍ୟଭାଗର ଜଂଘରେ ବିଭିନ୍ନ ପ୍ରକାର ମୁଣ୍ଡିରେ ବିଭିନ୍ନ ଦେବଦେବୀ ଓ କନ୍ୟା ମୂର୍ତ୍ତିମାନ ସ୍ଥାନିତହୋଇଥିବା ବେଳେ ଦୁଇ ମୁଣ୍ଡି ମଧ୍ୟରେ ନାଗ, ନାଗୀ ମୂର୍ତ୍ତିମାନ ଦେଖାଯାଏ । ଏହା ବ୍ୟତୀତ ପୀଠର କୋଣମାନଙ୍କରେ ଗଜସିଂହ ମୂର୍ତ୍ତିମାନ ଦେଖିବାକୁ ମିଳୁଥିବାରୁ ଏହାକୁ ସିଂହ ପୀଠ କୁହାଯାଇ ପାରେ । ଏହି ପୀଠର ମୋଟ ଉଚ୍ଚତା ୧.୨୫ ମିଟର ଅଟେ । ଦୁଇ ପୀଠ ଉପରେ ସପ୍ତରଥ ଦେଉଳ, ଭୂନକ୍ସାରେ ବର୍ଗାକାର । ଏହାର ବାହାର ପ୍ରତ୍ୟେକ ପାଖ ପ୍ରାୟ ୬.୫୦ ମିଟର ହୋଇଥିବା ବେଳେ ଭିତର ଗର୍ଭଗୃହର ପ୍ରତ୍ୟେକ ପାଖ ପ୍ରାୟ ୩.୪୦ ମିଟର । ଦେଉଳ ବାଡ଼ର ଉଚ୍ଚତା ୪.୯୦ ମିଟର, ଗଣ୍ଡିର ଉଚ୍ଚତା ୮.୩୫ ମିଟର, ମସ୍ତକ ଭାଗ ୩.୨୦ମିଟର ହୋଇଥିବା ବେଳେ ଆୟୁଧର ଉଚ୍ଚତା ପ୍ରାୟ ୦.୬୦ ମିଟର ଅଟେ ।

ପଞ୍ଚରଥ ଶୈଳୀର ଜଗମୋହନ ଭୂନକ୍ସାରେ ବର୍ଗାକାର ଅଟେ । ଏହାର ବାହାର ପାଖ ପ୍ରତ୍ୟେକ ବାହୁ ୮.୫୦ ମିଟର ହୋଇଥିବା ବେଳେ ଭିତର ପାଖ ପ୍ରତ୍ୟେକ ବାହୁ ୫.୭୦ ମିଟର । ଦଣ୍ଡାୟମାନ ଏହି ନିର୍ମାଣର ବାଡ଼ର ଉଚ୍ଚତା ୩.୭୦ ମିଟର, ଛାତ ଅର୍ଥାତ୍ ପୀଢ଼ ଗୁଡିକର ମୋଟ ଉଚ୍ଚତା ବାଡ଼ ସହିତ ପ୍ରାୟ ସମାନ ହୋଇଥିବା ବେଳେ ଏହାର ମସ୍ତକର ଉଚ୍ଚତା ପ୍ରାୟ ୭.୮୦ ମିଟର । ଏହିପରି ଜଗମୋହନର ମୋଟ ଉଚ୍ଚତା ପ୍ରାୟ ୧୦.୨୦ ମିଟର ଅଟେ । ଦେଉଳ ଓ ଜଗମୋହନ ପରେ, ନାଟମଣ୍ଡପ ଓ ଭୋଗମନ୍ଦିର ଅନ୍ୟ ଏକ ସ୍ୱଳ୍ପ ଧାର ଯୁକ୍ତ ପୀଠ ଉପରେ ଅବସ୍ଥିତ । ଏହି ପୀଠର ଉଚ୍ଚତା ପ୍ରାୟ ୧.୫୨ ମିଟର । ଖମ୍ବ ଥିବା ପୀଢ଼ ଶୈଳୀର ନାଟ ମଣ୍ଡପର ଦକ୍ଷିଣ ଓ ଉତ୍ତର, ପ୍ରତ୍ୟେକ ପାର୍ଶ୍ୱରେ ତିନୋଟିକରି ତୋରଣ ଥିଲା । ପରବର୍ତ୍ତୀ ସମୟରେ ପୁନଃନିର୍ମାଣ ଦ୍ୱାରା ଏଗୁଡ଼ିକ ବନ୍ଦକରି ଦିଆଯାଇ ପ୍ରତ୍ୟେକ ପାଖରେ କେବଳ ଗୋଟିଏ ଗୋଟିଏ ଦ୍ୱାର ରଖାଯାଇଛି । ଏହି ନିର୍ମାଣ ଭୂନକ୍ସାରେ ବାହାର ପାଖ ପୂର୍ବ-ପଶ୍ଚିମ ଲମ୍ବ ୮.୧୦ ମିଟର ଓ ଦକ୍ଷିଣ-ଉତ୍ତର ପ୍ରସ୍ଥ ପ୍ରାୟ ୭.୫୫ ମିଟର । ଏହାର ଭିତର ପାଖ ଯଥାକ୍ରମେ ୬.୦୦ ମିଟର ଓ ୫.୩୦ ମିଟର ଅଟେ । ଅନନ୍ତ-ବାସୁଦେବଙ୍କ ଭୋଗମନ୍ଦିରଟି ମଧ୍ୟ





ଅନନ୍ତ-ବାସୁଦେବ ମନ୍ଦିରର ପାର୍ଶ୍ୱଦୃଶ୍ୟ ଓ ଭୂନକ୍ସା

ଏକ ପୀଢ଼ ଦେଉଳ । ଭୂନକ୍ସାରେ ଏହାର ବାହାର ପାଖ, ପୂର୍ବ-ପଶ୍ଚିମ ଲମ୍ବ ପ୍ରାୟ ୬.୧୦ ମିଟର ଓ ଦକ୍ଷିଣ ଉତ୍ତର ପ୍ରସ୍ଥ ପ୍ରାୟ ୭.୩୦ ମିଟର ହୋଇଥିବା ବେଳେ ଏହାର ଭିତର ପାଖ ଯଥାକ୍ରମେ ୩.୭୫ ମିଟର ଓ ୫.୦୦ ମିଟର ଅଟେ । ଏହାର ପ୍ରତ୍ୟେକ ପାର୍ଶ୍ୱ ବାଡ଼ରେ ଗୋଟିଏ ଗୋଟିଏ ଦ୍ୱାର ଏବଂ ଉତ୍ତର ପାର୍ଶ୍ୱରେ ଦେଉଳକୁ ଉଠିବା ନିମନ୍ତେ ପାହାଚ ବ୍ୟବସ୍ଥା ରହିଛି । ଏହି ନିର୍ମାଣର ମୋଟ ଉଚ୍ଚତା ପ୍ରାୟ ୬.୦୦ ମିଟରରୁ ସାମାନ୍ୟ ଅଧିକ । ଅନନ୍ତ-ବାସୁଦେବ ଏକ ପଞ୍ଚାୟତନ ମନ୍ଦିର ହୋଇଥିବା ବେଳେ ବର୍ତ୍ତମାନ ଚାରି ପାର୍ଶ୍ୱର ଚାରି ଛୋଟ ମନ୍ଦିର ମଧ୍ୟରୁ ତିନୋଟି ମନ୍ଦିର ଭଗ୍ନ ଅବସ୍ଥାରେ ଦେଖାଯାଏ । ସମ୍ପୂର୍ଣ୍ଣ ମନ୍ଦିର ଚତୁଃପାର୍ଶ୍ୱରେ ସୁଉଚ୍ଚ ପ୍ରାଚୀର ସହିତ ପଶ୍ଚିମମୁଖ ନିର୍ମାଣର ପଶ୍ଚିମରେ ମୁଖ୍ୟ ପ୍ରବେଶପଥ ରହିଛି ।



# ବୋଇତାଳ ଦେଉଳ

କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ରେଖ ଓ ପୀଢ଼ ଶୈଳୀ ବ୍ୟତୀତ ଖାକରା ଏକ ସ୍ୱତନ୍ତ୍ର ଶୈଳୀର ମନ୍ଦିର ଅଟେ । ସର୍ବଭାରତୀୟ ସ୍ତରରେ ଏହି ଶୈଳୀ ସାଧାରଣତଃ 'ବଲ୍ଲଭୀ' ନାମରେ ପରିଚିତ । କେବଳ ଦେବୀମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଏହି ପ୍ରକାର ମନ୍ଦିରର ସଂଖ୍ୟା ଯଥେଷ୍ଟ କମ୍ । ଭୁବନେଶ୍ୱରର ବୋଇତାଳ ଦେଉଳ ଏହି ଶୈଳୀର ବିକାଶ ଧାରାରେ ଏକ ମଧବର୍ତ୍ତୀକାଳୀନ ନିର୍ମାଣ, ଯେଉଁଥିରେ ଖାକରା ଶୈଳୀର ମୌଳିକତା ବିଦ୍ୟମାନ । 'ଖାକରା ଦେଉଳ' ଅଧ୍ୟାୟରେ ଏହାର ସମ୍ୟକ ବର୍ଣ୍ଣନା ଦିଆଯାଇଥିବା ବେଳେ ଏଠାରେ ଏହି ମନ୍ଦିରର ସଂକ୍ଷିପ୍ତ ସୂଚନା ସହ ମାପ ଗୁଡ଼ିକ ଦର୍ଶାଯାଇଛି ।

କାଳକ୍ରମେ ଚତୁଃପାର୍ଶ୍ୱର ଭୂପତନ ବୃଦ୍ଧି ଯୋଗୁଁ ବର୍ତ୍ତମାନ ମନ୍ଦିରଟି ଏକ ଗହୀରିଆ ବେଢ଼ା ମଧରେ ଦେଖାଯାଏ । ଦେଉଳ ଓ ଜଗମୋହନ ଥିବା ପୂର୍ବମୁଖୀ ମନ୍ଦିରଟିର ଚତୁଃପାର୍ଶ୍ୱରେ ଏକ ସଂକୀର୍ଣ୍ଣ ପ୍ରଦକ୍ଷିଣ ପଥ ରହିଛି । ମନ୍ଦିରଟି ଏକ ୦.୨୫ ମିଟର ଅନୁଚ୍ଚ ବେଦୀ ଉପରେ ଦଣ୍ଡାୟମାନ । ଭୂନକ୍ସାରେ ଦେଉଳ ବାହାର ପାଖ, ପୂର୍ବ-ପଶ୍ଚିମ ଲମ୍ବ ପ୍ରାୟ ୪.୭୪ ମିଟର, ଦକ୍ଷିଣ ଉତ୍ତର ପ୍ରସ୍ଥ ୫.୫୦ ମିଟର ହୋଇଥିବା ବେଳେ ଏହାର ଭିତର ଅର୍ଥାତ୍ ଆୟତାକାର ଗର୍ଭଗୃହର ମାପ ଯଥାକ୍ରମେ ୨.୪୫



ବୋଇତାଳ ଦେଉଳର ପୃଷ୍ଠ ଭାଗର ଦୃଶ୍ୟ

ବୋଇତାଳ ଦେଉଳର ଭୂମିନକ୍ସା



ମିଟର ଓ ୩.୪୦ ମିଟର ଅଟେ । ଦଣ୍ଡାୟମାନ ଏହି ଦେଉଳ ପାଭାଗର ଉଚ୍ଚତା ୧.୦୫ ମିଟର ସମେତ ବାଡ଼ର ଉଚ୍ଚତା ପ୍ରାୟ ୫.୧୫ମିଟରେ ଅଟେ । ବରଣ୍ଡ ଉପରେ ଦୁଇ ଭୂମି ଓ ଦୁଇ ଭୂମିଅଁଳା ଥିବା ଗଣ୍ଡିର ଉଚ୍ଚତା ପ୍ରାୟ ୨.୦୫ ମିଟର ହୋଇଥିବା ବେଳେ, ଏହା ଉପର ଦୁଇ ସ୍ତରର ମସ୍ତକ ଖାକରାର ମୋଟ ଉଚ୍ଚତା ପ୍ରାୟ ୪.୧୦ ମିଟର । ସର୍ବୋଚ୍ଚରେ ଧାଡ଼ିରେ ଥିବା ତିନି କଳସ ଓ ତା'ର ନିମ୍ନର ଏକ ଅନୁଚ୍ଚ ଧାରର ଉଚ୍ଚତା ପ୍ରାୟ ୦.୪୦ ମିଟର ଅଟେ । ଏହିପରି ଦେଉଳର ମୋଟ ଉଚ୍ଚତା ୧୧.୭୦ ମିଟର ଅଟେ ।

ବୋଇତାଳ ଦେଉଳ ସହିତ ଥିବା ଜଗମୋହନଟି ପ୍ରାଚୀନ ଦୁଇଚାଳିଆ ଶୈଳୀର ହେଲେହେଁ ଏହାର ଚାରି କୋଣରେ ଚାରିଗୋଟି ରେଖଦେଉଳର ନମୁନା ନିର୍ମାଣ ଦେଖାଯାଏ । ପୂର୍ବୋକ୍ତ ଅନୁଚ୍ଚ ପୀଠ ଉପରେ, ଭୂମିନକ୍ସାରେ ଏହାର ବାହାର ପାଖ ପୂର୍ବ-ପଶ୍ଚିମ ଲମ୍ବ ୭.୦୦ମିଟରେ, ଦକ୍ଷିଣ-ଉତ୍ତର ପ୍ରସ୍ଥ ୫.୯୦ ମିଟର ଏବଂ ଗର୍ଭଗୃହ ଯଥାକ୍ରମେ ୫.୨୦ ମିଟର ଓ ୪.୫୦ ମିଟରେ ଅଟେ । ପୀଠ ଉପରେ ଜଗମୋହନ ବାଡ଼ର ଉଚ୍ଚତା ପ୍ରାୟ ୨.୦୫ ମିଟର ହୋଇଥିବା ବେଳେ ଏହା ଉପର ଦୁଇଚାଳର ଉଚ୍ଚତା ବାଡ଼ ଉଚ୍ଚତା ଠାରୁ ସାମାନ୍ୟ କମ୍ । ଏହିପରି ଜଗମୋହନର ମୋଟ ଉଚ୍ଚତା ପ୍ରାୟ ୪.୨୫ ମିଟର ଅଟେ ।

## ତିନୋଟି ପ୍ରଖ୍ୟାତ ମନ୍ଦିର

ପୂର୍ବ ଅଧ୍ୟାୟରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟର କେତୋଟି ମୁଖ୍ୟ ଶୈଳୀ ସମ୍ପର୍କରେ ସୂଚନା ଦିଆଯାଇଛି । ଏହି ସମୟ ଓ ଏହାର ପରବର୍ତ୍ତୀ ସମୟରେ କେତେକ ସ୍ଥଳେ ମୌଳିକ ଶୈଳୀରେ ବିଶେଷ ପରିବର୍ତ୍ତନ ଘଟିନଥିବା ବେଳେ କେତେକ ମନ୍ଦିରର ଆକାର ବୃଦ୍ଧି ପାଇଛି । ଏହି ବିଶାଳ ନିର୍ମାଣଗୁଡ଼ିକର ଭାରସାମ୍ୟ ଓ ଦୃଢ଼ତା ରକ୍ଷା ନିମନ୍ତେ ନିର୍ମାଣରେ କେତେକ ବୈଷୟିକ କୌଶଳର ବିକାଶ ଘଟିଥିବା ଲକ୍ଷ୍ୟକରାଯାଏ । ଅନ୍ୟ ଭାବରେ ଏହି ବିଶାଳ କୃତିଗୁଡ଼ିକ ଓଡ଼ିଶାର ଧର୍ମଧାରଣାରେ ମଧ୍ୟ ବିଶେଷ ସ୍ଥାନ ଅଧିକାର କରେ । ଏହି ପର୍ଯ୍ୟାୟର ତିନିପ୍ରଖ୍ୟାତମନ୍ଦିର ମଧ୍ୟରେ ଭୁବନେଶ୍ୱରର ଲିଙ୍ଗରାଜ, ଶୈବମନ୍ଦିର, ପୁରୀର ଶ୍ରୀଜଗନ୍ନାଥ, ବୈଷ୍ଣବ ମନ୍ଦିର ଓ କୋଣାର୍କର ପ୍ରଖ୍ୟାତସୂର୍ଯ୍ୟମନ୍ଦିରଟି ସୌର ଉପାସନାର କ୍ଷେତ୍ର ଅଟେ । ଏଠାରେ ଏହି କୃତି ଗୁଡ଼ିକର ସଂକ୍ଷିପ୍ତ ସୂଚନା ଦିଆଗଲା ।

# ଲିଙ୍ଗରାଜ ମନ୍ଦିର

କଳିଙ୍ଗ ମନ୍ଦିର ସ୍ଥାପତ୍ୟର ବିଶାଳତମ କୃତି କୋଣାର୍କ, ସୂର୍ଯ୍ୟ ମନ୍ଦିରର ମୁଖ୍ୟ ଦେଉଳଟି ଭାଙ୍ଗିଯିବା ପରେ ଭୁବନେଶ୍ୱରରେ ତିଷ୍ଠି ରହିଥିବା ଲିଙ୍ଗରାଜଙ୍କ ମନ୍ଦିର ବର୍ତ୍ତମାନ ସର୍ବ ବୃହତ୍ତମ ଅଟେ । ଏହାର କଳା ଓ ସ୍ଥାପତ୍ୟରେ କଳିଙ୍ଗ ଶୈଳୀର ବହୁ ବିକଶିତ ବୈଶିଷ୍ଟ୍ୟ ଦେଖିବାକୁ ମିଳେ । ମନ୍ଦିରର ୬୦ ମିଟର ଲମ୍ବ ଓ ୧୪୩ ମିଟର ପ୍ରସ୍ଥ ବିଶିଷ୍ଟ ବିଶାଳ ବେଢ଼ାଟି ପ୍ରାୟ ୨.୩୦ ମିଟର ଚଉଡ଼ା ମାଙ୍କଡ଼ା ପଥର ନିର୍ମିତ ସୁଉଚ୍ଚ ପ୍ରାଚୀର ଦ୍ୱାରା ପରିବେଷ୍ଟିତ। ପୂର୍ବମୁଖୀ ମନ୍ଦିରର ଚାରି କୋଠରୀ ଯୁକ୍ତ ନିର୍ମାଣ ବ୍ୟତୀତ ବେଢ଼ା ମଧ୍ୟରେ ଲିଙ୍ଗରାଜ ମନ୍ଦିର ପୂର୍ବରୁ ଓ ପରବର୍ତ୍ତୀ ସମୟରେ ନିର୍ମିତ ବିଭିନ୍ନ ଦେବ ଦେବୀଙ୍କ ଅନେକ ପ୍ରତିମା ତଥା ମନ୍ଦିର ରହିଛି । ଏଠାରେ ଦେଉଳ ଓ ଜଗମୋହନ କନ୍ଦା ପଥର ବିଛା ଯାଇଥିବା ତଳପଟନ ଉପରୁ ଉଠିଥିବା ବେଳେ ନାଟମନ୍ଦିର ଓ ଭୋଗ ମନ୍ଦିର ଦ୍ୱୟ ପୀଠ ଉପରେ ନିର୍ମିତ ହୋଇଥିବା ଦେଖାଯାଏ । ପଞ୍ଚରଥ ଶୈଳୀର ମୁଖ୍ୟ ଦେଉଳ ଭୂନକ୍ସାରେ ପ୍ରତ୍ୟେକ ପାଖ ପ୍ରାୟ ୧୮ ମିଟର, ବର୍ଗାକାର ହୋଇଥିବା ବେଳେ ଏହାର ମୋଟ ଉଚ୍ଚତା ୪୫.୬୦ ମିଟର ମଧ୍ୟରୁ ବାଡ଼ର ଉଚ୍ଚତା ୧୬.୫୦ ମିଟର, ଗଣ୍ଡିର ଉଚ୍ଚତା ୨୪.୬୦ ମିଟର ଓ ମସ୍ତକ ଭାଗ ପ୍ରାୟ ୪.୫୦ ମିଟର ଅଟେ । ଏହି ବାଡ଼ର ବିଭାଗୀକରଣରେ ଦଖାଯାଏ-ପଞ୍ଚକର୍ମ ପାଭାଗ ୩.୨୦ ମିଟର ଅଟେ । ତଳଜଂଘ ୩.୦୦ ମିଟର, ତ୍ରିକର୍ମ ବନ୍ଧନି ୦.୯୦ ମିଟର, ଉପରଜଂଘ ୨.୮୫ ମିଟର ଓ ଅଗ୍ରଭାଗର ଦଶକର୍ମ ବରଣ୍ଡର ଉଚ୍ଚତା ପ୍ରାୟ ୩.୪୦ ମିଟର ଅଟେ । ପାଭାଗଗୁଡ଼ିକୁ ମଧ୍ୟେ ମଧ୍ୟେ ଏକ ମୂର୍ତ୍ତି ଓ ମଣ୍ଡନକୃତି ଯୁକ୍ତ ସରୁ ଆଲମ୍ବ ପଟି ସଂଯୋଗ କରୁଥିବା ଦେଖାଯାଏ । ବନ୍ଧନୀର ପଟି ଓ ବସନ୍ତରେ ଡ଼ାଳି ନକ୍ସା ରହିଥିବା ବେଳେ ମଧ୍ୟେ ମଧ୍ୟେ ଏକ ମୂର୍ତ୍ତିଖୋପ ତ୍ରିକର୍ମକୁ




ଲିଙ୍ଗରାଜ ମନ୍ଦିରର ଭୂନକ୍ସା

ଲିଙ୍ଗରାଜ ମନ୍ଦିରର ଭିତର-ପାର୍ଶ୍ୱଚିତ୍ର ।

୧. ଦେଉଳ : ରେଖ ଶୈଳୀ

୨. ଜଗମୋହନ : ଘଣ୍ଟଶ୍ରୀ ମୋହନ

୩. ନାଟ ମନ୍ଦିର : ନଡୁମୋହନ

୪. ଭୋଗ ମନ୍ଦିର : ନଡୁମୋହନ ଶୈଳୀ ପୀଢ଼ ଦେଉଳ

୨ୟ, ୩ୟ ଓ ୪ର୍ଥ କୋଠରୀର ଚାଳକୁ ଧରି ରଖିବା ପାଇଁ ଖମ୍ବର ବ୍ୟବସ୍ଥା ରହିଛି ।




ସଂଯୋଗ କରୁଛି । ଏହାର ତଳଜଂଘରେ ଖାକରାମୁଣ୍ଡି ଓ ଉପରଜଂଘରେ ଥିବା ପୀଢ଼ମୁଣ୍ଡିଗୁଡ଼ିକରେ ଦିକ୍ପାଳ, ଦିକ୍ପାଳିକା, ତଥା ଅନ୍ୟ ମୂର୍ତ୍ତିମାନ ଦେଖାଯାଏ । ଅନ୍ତରାପାଗ ଗୁଡ଼ିକର ତଳଜଂଘରେ ବିଭିନ୍ନ ଶୈଳୀର ଗଜସିଂହ ଓ କୌତୂହଳ ମୂର୍ତ୍ତିମାନ ସ୍ଥାନିତ ହୋଇଥିବା ବେଳେ ଉପର ଜଂଘରେ ବିଭିନ୍ନ ଭଙ୍ଗିର ସୁନ୍ଦର କନ୍ୟା ପ୍ରତିମାମାନ ରହିଛି । ଏହା ଉପରେ ଥିବା ଦଶକର୍ମର ବରଣ୍ଡ ମଧ୍ୟ ବିଭିନ୍ନ କାରୁକଳାରେ ପରିପୂର୍ଣ୍ଣ । ଗଣ୍ଡି ରଥକରେ ପ୍ରସ୍ଥ ଭାବରେ ଥିବା କଟା ଧାରଗୁଡ଼ିକ ମନ୍ଦିରର ସୌନ୍ଦର୍ଯ୍ୟ ବୃଦ୍ଧି କରେ । ମସ୍ତକଭାଗର ବେକି, ରାହାପାଗ ଉପରେ ଭୈରବ ମୂର୍ତ୍ତି ଓ କନିକପାଗ ଉପରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭଙ୍ଗିର ଦ୍ୱିପିଚାସିଂହମୂର୍ତ୍ତିମାନ ସ୍ଥାନିତ ହୋଇଛି ।

ପଞ୍ଚରଥ ଶୈଳୀର ଜଗମୋହନ ଏକ ଛୋଟ ସନ୍ଧିସ୍ଥଳ ଦ୍ୱାରା ଦେଉଳ ସହିତ ସଂଯୋଗ ହୋଇଛି । ଏହାର ବାଡ଼ ଦକ୍ଷିଣ ପାର୍ଶ୍ୱରାହାପାଗରେ ଏକ ପ୍ରବେଶଦ୍ୱାର ଥିବାବେଳେ ଉତ୍ତରପାର୍ଶ୍ୱ ରାହା ଉପରେ ଦଣ୍ଡଯୁକ୍ତ ଏକ ଗବାକ୍ଷ ଦେଖାଯାଏ । ଭୂନକ୍ସାରେ ଏହାର ବାହାର ପୂର୍ବ-ପଶ୍ଚିମ ଲମ୍ବ ୧୭.୦୦ ମିଟର ଓ ଦକ୍ଷିଣ-ଉତ୍ତର ପ୍ରସ୍ଥ ୧୫.୪୦ ମିଟର ଅଟେ । ଜଗମୋହନ କୋଠରୀର ଭିତର ପାଖ ପୂର୍ବ-ପଶ୍ଚିମ ଲମ୍ବ ୧୦.୮୦ ମିଟର ଓ ଦକ୍ଷିଣ-ଉତ୍ତର ପ୍ରସ୍ଥ ୯.୨୫ ମିଟର ଅଟେ । ଏହା ମଧ୍ୟରେ ଚାରିଗୋଟି ଚତୁଷ୍କୋଣ ଖମ୍ବ ରହିଛି । ବାହାର ପାଖ ନିର୍ମାଣର ବାଡ଼ର ଉଚ୍ଚତା ପ୍ରାୟ ୮.୬୦ ମିଟର ହୋଇଥିବା ବେଳେ ପୀଢ଼ ଓ ଘଣ୍ଟ ଯୁକ୍ତ ଚାଳର ଉଚ୍ଚତା ପ୍ରାୟ ୧୯.୦୦ ମିଟର ଅଟେ । ଏହା ଉପରେ ପ୍ରାୟ ୧.୫୦ ମିଟର ଉଚ୍ଚତାର କଳସ ରହିଛି । ଏହି ଚାଳର ଚତୁଃପାର୍ଶ୍ୱରେ ଥିବା ସିଂହମୂର୍ତ୍ତି ଯୁକ୍ତ ବକ୍ରମସ୍ତକ ଓ ପୀଢ଼ ଧାରର ବର୍ଣ୍ଣନାତ୍ମକ ମୂର୍ତ୍ତିଗୁଡ଼ିକ ଦୃଷ୍ଟିଆକର୍ଷଣ କରେ । ଏହିପରି ତଳପତନରୁ ଜଗମୋହନର ମୋଟ ଉଚ୍ଚତା ପ୍ରାୟ ୨୯.୧୦ ମିଟର ଅଟେ । ଦେଉଳ ସହିତ ସମତା ରକ୍ଷାକରି ଜଗମୋହନକୁ ମଧ୍ୟ ମୂର୍ତ୍ତି ଓ ମଣ୍ଡନକୃତି ଦ୍ୱାରା ଅଳଙ୍କୃତ କରାଯାଇଛି ।



ଲିଙ୍ଗରାଜ ମନ୍ଦିର ପରିସରର ଏକ ଦୃଶ୍ୟ

ଜଗମୋହନ ସହିତ ସଂଯୋଗ ହୋଇଥିବା ନାଟମଣ୍ଡପଟି ପରବର୍ତ୍ତୀ ସମୟର ନିର୍ମାଣ । ଏହା ସହିତ ବର୍ତ୍ତମାନର ଭୋଗ ମଣ୍ଡପଟି ସମଉଚ୍ଚତା ବିଶିଷ୍ଟ ଏକ ପୀଠ ଉପରେ ନିର୍ମିତ । ପ୍ରାୟ ୦.୮୦ ମିଟର ଉଚ୍ଚତା ବିଶିଷ୍ଟ ଏହି ପୀଠର ଜଂଘରେ ଥିବା ମୁଣ୍ଡି ଗୁଡ଼ିକରେ ବିଭିନ୍ନ ମୂର୍ତ୍ତି ସ୍ଥାନିତ ହୋଇଛି । ନଡ଼ୁମୋହନ ଶୈଳୀ ଏହି ନିର୍ମାଣର ଉଚ୍ଚତା ମୁଖ୍ୟ ଦେଉଳ ବାଡ଼ ବରଣ୍ଡର ଅଗ୍ରଭାଗ ସହିତ ପ୍ରାୟ ସମାନ । ବର୍ଗାକାର ଭୂନକ୍ସାରେ ଏହାର ବାହାର ପ୍ରତ୍ୟେକ ପାର୍ଶ୍ୱ ୧୬.୦୦ ମିଟର ଓ ବାଡ଼ର ଉଚ୍ଚତା ପ୍ରାୟ ୫.୪୫ ମିଟର । ଦକ୍ଷିଣ ଓ ଉତ୍ତର ପ୍ରତ୍ୟେକ ପାର୍ଶ୍ୱ ବାଡ଼ରେ ତିନୋଟିକରି ପ୍ରବେଶପଥ ରହିଛି । ଅନୁଚ୍ଚ ତିନି ପୀଢ଼ ଓ ମସ୍ତକ ଭାଗଥିବା ନିର୍ମାଣଟିର  ମୋଟ ଉଚ୍ଚତା ପ୍ରାୟ ୯.୦୦ ମିଟର ।

ବର୍ତ୍ତମାନର ଭୋଗମଣ୍ଡପ ବା ମନ୍ଦିରଟି ପ୍ରଥମେ ମୁଖ୍ୟ ମନ୍ଦିର ସହିତ ନାଟମଣ୍ଡପ ଭାବେ ନିର୍ମିତ ହୋଇଥିବା ସୂଚନା ମିଳେ । ସେତେବେଳେ ଏହା ଜଗମୋହନ ଠାରୁ ପ୍ରାୟ ୧୬.୦୦ ମିଟର ଦୂରତ୍ୱରେ ରହିଥିଲା । ଏହି ନିର୍ମାଣ ଚତୁଃପାର୍ଶ୍ୱର ପ୍ରତ୍ୟେକ ବାଡ଼ର ମଧ ଭାଗରେ ଗୋଟିଏ ମୁଖ୍ୟ ତୋରଣ ଓ ଦୁଇ ପାର୍ଶ୍ୱରେ ଗୋଟିଏ ଗୋଟିଏ ଉପତୋରଣ ରହିଥିଲା । ପରବର୍ତ୍ତୀ ସମୟରେ ଏହାର କେତେକ ଉପତୋରଣକୁ ବନ୍ଦ କରି ଦିଆଯାଇ ଏହାକୁ ଭୋଗମନ୍ଦିର ଭାବେ ବ୍ୟବହାର କରାଯିବା ବେଳେ ଜଗମୋହନ ଓ ଏହି ନିର୍ମାଣର ମଧ୍ୟଭାଗରେ ଥିବା ସ୍ଥାନରେ ନୂତନ ନାଟମଣ୍ଡପର ପରିକଳ୍ପନା ଓ ନିର୍ମାଣ କରାଯାଇଛି । ଏହି  ଭୋଗ ମଣ୍ଡପଟି ୦.୮୦ ମିଟର ଉଚ୍ଚତା ବିଶିଷ୍ଟ ପୂର୍ବୋକ୍ତ ଶୈଳୀର ଏକ ପୀଠ ଉପରେ ଦଣ୍ଡାୟମାନ ହୋଇଥିବା ବେଳେ ଏହି ବର୍ଗାକାର ନିର୍ମାଣର ଭୂନକ୍ସାରେ ପ୍ରତ୍ୟେକ ବାହାର ପାଖ ପ୍ରାୟ ୧୭.୩୦ ମିଟର ଅଟେ । ଏହା ଏକ ଭିନ୍ନ ଶୈଳୀର ଅନୁଚ୍ଚ ଅର୍ଥାତ୍ ସୁନ୍ଦର ଘଣ୍ଟଶ୍ରୀ ପୀଢ଼ ଦେଉଳ ।  ଏହାର ଉଚ୍ଚତା ପ୍ରାୟ ୯.୭୫ ମିଟର । ଏହାର ପୂର୍ବ ଅର୍ଥାତ୍ ସମ୍ମୁଖ ଦ୍ୱାରଟି ସର୍ବଦା ବନ୍ଦ ରହୁଥିବା ବେଳେ, କିଞ୍ଚିତ  ବ୍ୟବଧାନରେ ଲିଙ୍ଗରାଜଙ୍କ ବାହନସ୍ତମ୍ଭଟି ରହିଛି ।

## ଶ୍ରୀଜଗନ୍ନାଥ ମନ୍ଦିରଃ

ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓଡ଼ିଶାର ପ୍ରମୁଖ ଧର୍ମକେନ୍ଦ୍ର ଅଟେ । ଏହାର ମୁଖ୍ୟ ମନ୍ଦିର ପ୍ରଖ୍ୟାତ ଲିଙ୍ଗରାଜ ମନ୍ଦିରର ପରବର୍ତ୍ତୀ ଓ କୋଣାର୍କ ସୂର୍ଯ୍ୟ ମନ୍ଦିରର ପୂର୍ବବର୍ତ୍ତୀ ସମୟ, ଅର୍ଥାତ ଖ୍ରୀ: ୧୧୧୨ରୁ ଖ୍ରୀ: ୧୧୪୭ ସାଲ ମଧ୍ୟରେ ନିର୍ମିତ ହୋଇଥିବା ଜଣାଯାଏ । ଏଣୁ ଏଥିରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟର ସମସାମୟିକ , ପ୍ରଚଳିତ, ବିକଶିତ ଧାରାହିଁ ପରିଲକ୍ଷିତ ହୁଏ । ଶ୍ରୀଜଗନ୍ନାଥ, ଦେବୀ ସୁଭଦ୍ରା ଓ ବଳଭଦ୍ର ବିଜେ କରିଥିବା ମୁଖ୍ୟ ମନ୍ଦିରଟି ଚାରିକୋଠରୀ ବିଶିଷ୍ଟ ଅଟେ । ପଞ୍ଚରଥ ଶୈଳୀର ମୁଖ୍ୟ ଦେଉଳ, ସୁଉଚ୍ଚ ଏକ ଖୁରାପୀଠ ଉପରେ ଦଣ୍ଡାୟମାନ ହୋଇଛି ।  ପାରମ୍ପରିକ ପଞ୍ଚାଙ୍ଗବାଡ଼ ଉପରେ ଦେଉଳ ଗଣ୍ଡିର ସମ୍ମୁଖ ରାହାପାଗରେ ଅଙ୍ଗଶିଖର ରଚନା ଓ ଅନ୍ୟ ପାର୍ଶ୍ୱର ରାହାପାଗଗୁଡ଼ିକରେ ବକ୍ରମସ୍ତକ ମଣ୍ଡନକୃତି ଦେଖିବାକୁମିଳେ । ଅନୁରାହାପାଗଗୁଡ଼ିକରେ ଦୃଷ୍ଟ ଆକର୍ଷଣୀୟ ଅଙ୍ଗଶିଖରର ସଂଯୋଗ ଏହି ନିର୍ମାଣର ଏକ ବିଶେଷତ୍ୱ ହୋଇଥିବା ବେଳେ କନିକପାଗରେ ଦଶ ଭୂମି ଓ ସେହି  ସଂଖ୍ୟକ ଭୂମିଅଁଳା ଦେଖିବାକୁ

ମିଳେ । ମନ୍ଦିର ମସ୍ତକ ଭାଗର ସୁଉଚ୍ଚ ଖପୁରି ଓ ଚମ୍ପକପତ୍ର ଯୁକ୍ତ ଭିନ୍ନ ଶୈଳୀର କଳସରେ ମଧ୍ୟ ନୂତନତ୍ୱ ରହିଛି । ଏହାର ଆୟୁଧପ୍ରଖ୍ୟାତ ପ୍ରଖ୍ୟାତ ନୀଳଚକ୍ର ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି । ଦେଉଳର ପାର୍ଶ୍ୱଦେବତାମାନଙ୍କ ସମ୍ମୁଖର ମୂଳ ନିଶାମନ୍ଦିରଗୁଡ଼ିକ ଭାଙ୍ଗି ପଡିଥିବାରୁ ପରବର୍ତ୍ତୀ ସମୟରେ ସେହି ସ୍ଥାନରେ ମଣ୍ଡନକୃତି ବିହୀନ ନୂତନ ନିଶାମନ୍ଦିର ନିର୍ମିତ ହୋଇଥିବା ଜଣାଯାଏ । ତଳପତନ ଉପରୁ ଏହି ବଡଦେଉଳର ଉଚ୍ଚତା ପ୍ରାୟ ୬୦.୦୦ ମିଟର ଅଟେ ।

ଦେଉଳ ସହିତ ଥିବା ଜଗମୋହନଟି ମଧ୍ୟ ଏକ ପୀଠ ଉପରେ ଦଣ୍ଡାୟମାନ ହୋଇଛି । ଏହାର ପୀଢ଼ ଛାତର ଦୁଇ ପଟଳ ମଧ୍ୟରେ ଉଚ୍ଚ କାଣ୍ଡି ଦେଖାଯାଉଥିବା ବେଳେ ମସ୍ତକ ଭାଗରେ ଚମ୍ପକପତ୍ର ମଣ୍ଡନକୃତି ଯୁକ୍ତ ପତଳା ଘଣ୍ଟ ଉପରେ ଅଁଳା, କଳସ ଓ ଆୟୁଧ ଦେଖାଯାଏ । ବର୍ଗାକାର ଭିତର କୋଠରୀ ମଧ୍ୟରେ ଚାରିଗୋଟି ଚତୁଷ୍କୋଣ ଖମ୍ବର ବ୍ୟବସ୍ଥା ରହିଛି । ଜଗମୋହନ ସମ୍ମୁଖ ପ୍ରବେଶ ଦ୍ୱାରର ମଣ୍ଡନକୃତି, କୋଣାର୍କ ସୂର୍ଯ୍ୟମନ୍ଦିର ଜଗମୋହନର ପ୍ରବେଶଦ୍ୱାରର ମଣ୍ଡନକୃତି ସହିତ ବହୁଭାବରେ ସାମଞ୍ଜସ୍ୟ ରକ୍ଷାକରେ । ତଳପତନ ଉପରୁ ପୀଠ ସହିତ ଜଗମୋହନ ଉଚ୍ଚତା ପ୍ରାୟ ୩୭.୦୦ ମିଟର ଅଟେ ।

ଜଗମୋହନ ସହିତ ସଂଯୋଗ ହୋଇ ରହିଥିବା ନାଟମନ୍ଦିରଟି ଶିଖର ବିହୀନ ଏକ ନବ୍ୟମୋହନ ଅଟେ । ଏହାର ସମତଳ ଛାତ ଉପରେ କୌଣସି ମସ୍ତକଭାଗର ନିର୍ମାଣ ଦେଖାଯାଏ ନାହିଁ । ପୀଠ ସମେତ ଏହି ଅନୁଚ୍ଚ ନିର୍ମାଣର ଉଚ୍ଚତା ପ୍ରାୟ ୯.୨୫ ମିଟର । ଏହାର ପ୍ରସସ୍ତ କୋଠରୀ ମଧ୍ୟରେ ୧୬ଗୋଟି ଚତୁଷ୍କୋଣ, ମୋଟା ଖମ୍ବ ରହିଥିବା ବେଳେ ଦକ୍ଷିଣ ଓ ଉତ୍ତର ପାର୍ଶ୍ୱ ପ୍ରତ୍ୟେକ ବାଡରେ ଚାରିଗୋଟିକରି ପ୍ରବେଶଦ୍ୱାର ରହିଛି । ଏହି କୋଠରୀର ପଶ୍ଚିମ ଭାଗରେ ପ୍ରାଚୀନ ଫସିଲ୍‌ର ଗରୁଡଖମ୍ବଟି ସ୍ଥାନିତ ହୋଇଛି । ନାଟ ମନ୍ଦିର ସମ୍ମୁଖରେ ଥିବା ଭୋଗମନ୍ଦିରଟି ମଧ୍ୟ ଏକ ପୀଢ଼ଦେଉଳ ଅଟେ । ଏହାର ଛାତରେ ତିନି ପଟଳ ସହିତ ଦୁଇ ଅନୁଚ୍ଚ କାଣ୍ଡି ଦେଖାଯାଏ । ଏହି କୋଠରୀ ମଧ୍ୟରେ ଚାରିଗୋଟି ଚତୁଷ୍କୋଣ ଖମ୍ବ



ଶ୍ରୀଜଗନ୍ନାଥ ମନ୍ଦିର, ପୁରୀ

ରହିଥିବା ବେଳେ ପ୍ରତ୍ୟେକପାଖ ବାଡରେ ଗୋଟିଏ କରି ପ୍ରବେଶ ଦ୍ୱାର ଦେଖାଯାଏ । ମନ୍ଦିରଟିର ବାହାର ବାଡ଼ଗୁଡ଼ିକ ବିଭିନ୍ନ ପ୍ରକାର ମୂର୍ତ୍ତି ଓ ମଣ୍ଡନକୃତିରେ ପରିପୂର୍ଣ୍ଣ ।

ଶ୍ରୀଜଗନ୍ନାଥଙ୍କ ମୁଖ୍ୟ ମନ୍ଦିର ବ୍ୟତୀତ ଏହାର ଚତୁଃପାର୍ଶ୍ୱରେ ବିଭିନ୍ନ ଦେବ, ଦେବୀଙ୍କ ମନ୍ଦିର ଓ ଅନ୍ୟ ପୂଜାପୀଠମାନ ଦେଖାଯାଏ । ଏଗୁଡିକ ବିଭିନ୍ନ ଶୈଳୀର ମନ୍ଦିର, ମଣ୍ଡପ ଓ ପୀଠ । ଏଥିମଧ୍ୟରୁ କେତେକ ଶ୍ରୀମନ୍ଦିରର ସମସାମୟୀକ, ଅଳ୍ପ କେତେକ ତା'ର ପୂର୍ବବର୍ତ୍ତୀ ସମୟର ଏବଂ ଅଧିକାଂଶ ନିର୍ମାଣ ପରବର୍ତ୍ତୀ ସମୟର ଅଟେ । ଏହି ସବୁ ମନ୍ଦିର ପ୍ରଥମେ ନିର୍ମିତ ଏକ ବେଢ଼ା ମଧ୍ୟରେ ରହିଥିବା ବେଳେ ସମୟାନୁକ୍ରମେ ମନ୍ଦିରର କାର୍ଯ୍ୟକଳାପ ଓ ରୀତି ନୀତି ବୃଦ୍ଧି ସଙ୍ଗେ ସଙ୍ଗେ ଅନ୍ୟ କେତେକ ନିର୍ମାଣ ପ୍ରଥମ ବେଢ଼ାର ବାହାରେ ନିର୍ମିତ ହୋଇଛି । ବେଢ଼ା ବାହାରର ଏହି ନିର୍ମାଣର ସୁରକ୍ଷା ନିମନ୍ତେ ପୁନଶ୍ଚ ଘେରା ଯାଇଥିବା ପ୍ରାଚୀର ବାହାର ବେଢ଼ା ଓ ପୂର୍ବର ମୁଖ୍ୟ ପ୍ରାଚୀରକୁ ଭିତର ବେଢ଼ା କହନ୍ତି ।

## ସୂର୍ଯ୍ୟମନ୍ଦିର, କୋଣାର୍କ

ଗଙ୍ଗବଂଶର ପ୍ରଖ୍ୟାତ ନରପତି, ନରସିଂହ ଦେବ (୧ମ)ଙ୍କ ରାଜତ୍ୱ କାଳ ଖ୍ରୀ: ୧୨୩୮ ରୁ ୧୨୬୪ ଶାଳ ମଧ୍ୟରେ ଓଡ଼ିଶା ପୂର୍ବ ଉପକୂଳ, କୋଣାର୍କଠାରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟର ବିଶାଳତମ କୃତି ସୂର୍ଯ୍ୟ ମନ୍ଦିରର ପରିକଳ୍ପନା ଓ ନିର୍ମାଣ କରିଥିଲେ । ଏହି କୃତିରେ ମୁଖ୍ୟତଃ ପୂର୍ବର ପାରମ୍ପରିକ ଧାରା ଓ ଶୈଳୀ ଅନୁସରଣ କରାଯାଇଥିବା ବେଳେ କେତେକ କ୍ଷେତ୍ରରେ ନୂତନ ପରିକଳ୍ପନା ମଧ୍ୟ ଦେଖାଯାଏ । ମନ୍ଦିରର ବିଶାଳତା ଅନୁଯାୟୀ ନିର୍ମାଣର ଅଙ୍ଗ ପ୍ରତ୍ୟଙ୍ଗଗୁଡିକ ବିଶାଳ ହେବା ସ୍ୱାଭାବିକ ଏବଂ ଏଗୁଡ଼ିକର ଭାରସାମ୍ୟ ରକ୍ଷା ନିମନ୍ତେ କେତେକ ନୂତନ ନିର୍ମାଣ ପରିକଳ୍ପନା କରାଯାଇଥିବା ଅପରିହାର୍ଯ୍ୟ । ଦେଉଳର ଆକାର ଅନୁଯାୟୀ ଏହାର ମଣ୍ଡନକୃତିଗୁଡ଼ିକରେ ମଧ୍ୟ ଅନେକ ନୂତନ ପରିକଳ୍ପନା ଦେଖାଯାଏ । ଏହି କୃତି କଳିଙ୍ଗ ମନ୍ଦିର ସ୍ଥାପତ୍ୟ ବିକାଶ ଧାରାର ଅନ୍ତିମ ପର୍ଯ୍ୟାୟରେ ନିର୍ମିତ ହୋଇଥିବା ସତ୍ତ୍ୱେ ଅଳ୍ପକାଳ ମଧ୍ୟରେ ଭାଙ୍ଗିପଡ଼ିଥିବା ବିସ୍ମୟର ବିଷୟ । ଏହାର କାରଣ ସମ୍ପର୍କରେ ବିଦ୍ୱାନମାନେ ବିଭିନ୍ନ ମତ ପୋଷଣ କରୁଥିବା ବେଳେ ନିର୍ମାଣ ସମୟରେ କେତେକ ବୈଷୟିକ ତ୍ରୁଟି ତଥା ସମୁଦ୍ର କୂଳର ଦୁର୍ବଳ ବାଲୁକା ଓ ମାଟି ଏହାର ଗୁରୁଭାର ବହନ କରିବାରେ ଅକ୍ଷମ ହେବା ଦ୍ୱାରା ମନ୍ଦିରର ମୂଳଦୁଆ ଦବି, ମନ୍ଦିର ଦେହରେ ଫାଟ ସୃଷ୍ଟିହୋଇ ଭାଙ୍ଗିପଡ଼ିଥିବା ମନେହୁଏ । ତେବେ ଦେଶ ସ୍ୱାଧୀନ ପୂର୍ବରୁ, ଇଂରେଜ ଶାସନ ସମୟରେ ଭଗ୍ନ ମନ୍ଦିରଟିର ଯଥା ସମ୍ଭବ ମରାମତି ଓ ସଂରକ୍ଷଣ କାର୍ଯ୍ୟ କରାଯାଇଥିବାରୁ କୀର୍ତ୍ତିଟିର ପ୍ରତ୍ନାବଶେଷ ବର୍ତ୍ତମାନ ସୁଦ୍ଧା ତିଷ୍ଠି ରହିଛି ।

ସୂର୍ଯ୍ୟଦେବତାଙ୍କ ନିମନ୍ତେ ଉଦ୍ଦିଷ୍ଟ ଏହି ମନ୍ଦିରକୁ ଏକ ରଥ ନକ୍ସାରେ ପରିକଳ୍ପନା କରାଯାଇଥିଲା । ଏଣୁ ମନ୍ଦିରର ମୁଖ୍ୟ ପୀଠର ଚତୁଃପାର୍ଶ୍ୱରେ ରଥଭଳି, କାରୁକଳା ପୂର୍ଣ୍ଣ ଚବିଶିଗୋଟି ଚକ ପଥରରେ ଉତ୍କୀର୍ଣ୍ଣ ହୋଇଥିଲା । ବର୍ତ୍ତମାନ ଏଥିମଧ୍ୟରୁ କେବଳ ଗୋଟିଏ ଚକ୍ର ବ୍ୟତୀତ ଅନ୍ୟ ଚକ୍ରଗୁଡିକ ଆଂଶିକ କିମ୍ୱା ସମ୍ପୂର୍ଣ୍ଣ ଭଗ୍ନ । ମନ୍ଦିରର ମୁଖ୍ୟ ତିନି ନିର୍ମାଣ ମଧ୍ୟରୁ ଦେଉଳ ଓ ଜଗମୋହନ ସଂଯୋଗ ହୋଇ ପୂର୍ବୋକ୍ତ ଚକ୍ରଯୁକ୍ତ ପୀଠ ଉପରେ ରହିଥିବା ବେଳେ ନାଟମନ୍ଦରଟି ଜଗମୋହନ ଠାରୁ ପ୍ରାୟ ୯.୦୦ ମିଟର ବ୍ୟବଧାନ ରେ ରହିଛି । 'ନାଟମନ୍ଦିରର' ଅନ୍ୟ ବିବରଣୀ ଏହି ବହିର 'ନାଟମଣ୍ଡପ' ଅଧ୍ୟାୟରେ ଦିଆଯାଇଛି । ଏହି ନିର୍ମାଣଗୁଡ଼ିକ ବ୍ୟତୀତ ମନ୍ଦିରର ରୋଷଘର, ରଙ୍ଗଶାଳା ଯଜ୍ଞପୀଠ, ସ୍ନାନବେଦୀ, ପ୍ରତିଷ୍ଠାବେଦୀ ଦୋଳବେଦୀ, ପଣ୍ଡିତସଭା, ଭୋଜନମଣ୍ଡପ, ବିଷ୍ଣୁମନ୍ଦିର ଓ ଛାୟାଦେବୀଙ୍କ ମନ୍ଦିରର ପ୍ରତ୍ନାବଶେଷ ଇତ୍ୟାଦି ଗୋଟିଏ ବିସ୍ତୃତ ବେଢ଼ା ଭିତରେ ଦେଖିବାକୁ ମିଳେ । ମନ୍ଦିର ବ୍ୟତୀତ ଅନ୍ୟ ନିର୍ମାଣଗୁଡିକ ସାଧାରଣତଃ ଖମ୍ୱଯୁକ୍ତ ମଣ୍ଡପଭଳି ମନେ ହୁଏ । ବର୍ତ୍ତମାନ ଏହି ନିର୍ମାଣଗୁଡ଼ିକ ବହୁଭାବରେ ଭଗ୍ନ ଓ ଛାତ ବିହୀନ ଅଟେ ।

ମୁଖ୍ୟ ଦେଉଳ ଓ ଜଗମୋହନ ଅନୁଚ୍ଚ ଓ ସୁଉଚ୍ଚ ଗୋଟିଏ ପରେ ଗୋଟିଏ ଥିବା ଦୁଇଟି ପୀଠ ଉପରେ ଅବସ୍ଥିତ । ବିଭିନ୍ନ ଭାବରେ ହସ୍ତୀ ଓ ଯୁଦ୍ଧଯାତ୍ରାର ମୂର୍ତ୍ତି ଖୋଦିତ ପ୍ରଥମ ଅନୁଚ୍ଚବେଦୀ ବା ପୀଠର ଉଚ୍ଚତା ପ୍ରାୟ ୦.୭୦ ମିଟର । ଏହା ଉପରେ ଥିବା ପୂର୍ବୋକ୍ତ ୨୪ ଚକ୍ରଯୁକ୍ତ ମୁଖ୍ୟ ପୀଠର ଉଚ୍ଚତା ପ୍ରାୟ ୪.୧୦ ମିଟର ଅଟେ । ଏହି ପୀଠ ପାର୍ଶ୍ୱଗୁଡିକରେ ଦେଉଳଭଳି ପାରମ୍ପରିକ ଶୈଳୀର ପାଭାଗ, ତଳଜଂଘ, ବନ୍ଧନୀ, ଉପର ଜଂଘ ଓ ବରଣ୍ଡ ଦେଖିବାକୁ ମିଳୁଥିବା ବେଳେ ଜଂଘଗୁଡିକରେ ବିଭିନ୍ନ ପ୍ରକାର ମଣ୍ଡନକୃତି ଓ ମୂର୍ତ୍ତିକଳା ରହିଛି ।



ସୂର୍ଯ୍ୟମନ୍ଦିରର ଭୂନକ୍ସା,



ସୂର୍ଯମନ୍ଦିର ପୀଠର ଚକ୍ର

ଉପରୋକ୍ତ ପୀଠର ପାର୍ଶ୍ୱରେ ଚକ୍ରଗୁଡିକ ନିର୍ଦ୍ଦିଷ୍ଟ ବ୍ୟବଧାନରେ ରହିଥିବା ବେଳେ ପ୍ରତ୍ୟେକ ଚକ୍ରର ବ୍ୟାସ ପ୍ରାୟ ୩.୦୦ ମିଟର ଅଟେ । ଏହାର ଅଖରୁ ଚାରିପାଖ ଚକ୍ରକୁ ସଂଯୋଗ କରୁଥିବା ୧୬ ଗୋଟି ଅର ମଧ୍ୟରୁ, ଆଠଗୋଟି ପତଳା ଓ ଅନ୍ୟ ଆଠଗୋଟି ମୋଟା ଅଟେ । ଅଖର ଗୋଲାକାର ଅଗ୍ରଭାଗ ଓ ମୋଟା ଅରଗୁଡିକର ମଧ୍ୟଭାଗରେ ଥିବା ଚକ୍ରାକାର ନକ୍ସା ମଧ୍ୟରେ ବିଭିନ୍ନ ଭଙ୍ଗିରେ ନାରୀ, ମୈଥୁନ ଓ ଦେବ ଦେବୀଙ୍କ ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । ଏହା ବ୍ୟତୀତ ଚକ୍ରର ଅନ୍ୟ ଅଂଶଗୁଡ଼ିକ ବିଭିନ୍ନ ପ୍ରକାର କାରୁକଳାରେ ପରିପୂର୍ଣ୍ଣ ।

ସପ୍ତରଥ ଶୈଳୀର ମୁଖ୍ୟ ଦେଉଳଟି ବାଡ଼ରୁ ଭାଙ୍ଗିପଡ଼ିଥିବାରୁ ଏହାର ଗର୍ଭଗୃହ ମୁକ୍ତାକାଶ ତଳେ ରହିଛି । ଏହି ଅବସ୍ଥାରେ ଦେଉଳ ବାହାର ପାଖରେ କେବଳ ପାଭାଗ, ତଳଜଂଘ, ବନ୍ଧନୀ ଓ ଉପରଜଂଘର କେତେକାଂଶ ମାତ୍ର ଦେଖିବାକୁ ମିଳେ । ଏଗୁଡ଼ିକ ପାରମ୍ପରିକ ଶୈଳୀରେ ନିର୍ମିତ ହୋଇଥିବା ବେଳେ ମନ୍ଦିରର ବିଶାଳତା ଅନୁଯାୟୀ ଅଙ୍ଗ ପ୍ରତ୍ୟେଙ୍ଗ ଗୁଡ଼ିକ ମଧ୍ୟ ବିଶାଳ । ଏଥିରେ ମୂର୍ତ୍ତିକଳା ଓ ମଣ୍ଡନକୃତି ବିଭିନ୍ନ ଭାବରେ ଉତ୍କୀର୍ଣ୍ଣ ହୋଇଛି । ଦେଉଳର ତିନି ପାଖ ବାଡ଼ର ରାହାପାଗରେ ଥିବା ସୂର୍ଯ୍ୟଙ୍କ ପାର୍ଶ୍ୱଦେବତା ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ । ପୂର୍ବମୁଖୀ ଦେଉଳର ପଶ୍ଚିମ, ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ସୂର୍ଯ୍ୟଙ୍କ ସୁନ୍ଦର ଓ ବିଶାଳ ପ୍ରତିମାମାନ ସ୍ଥାନିତ ହୋଇଛି । କଳା ମୁଗୁନି ପଥରରେ ନିର୍ମିତ ପ୍ରତିମାଗୁଡିକ ଜୀବନ୍ତ ଭଳି ମନେହେଉଥିବା ବେଳେ ବିଭିନ୍ନ ବସ୍ତ୍ରାଳଙ୍କାରରେ ବିଭୂଷିତ । ଏହାର ଚତୁଃପାର୍ଶ୍ୱର ମଣ୍ଡନକୃତି ଓ ମୂର୍ତ୍ତିକଳା ମଧ୍ୟ ଉଚ୍ଚକୋଟୀର । ଏହି ପାର୍ଶ୍ୱଦେବତା ମୂର୍ତ୍ତିଗୁଡିକ ନିମନ୍ତେ ମନ୍ଦିର ସହିତ ଉପଯୁକ୍ତ ଆକାରର ନିଶାମନ୍ଦିର ନିର୍ମିତ ହୋଇଥିଲା । ବର୍ତ୍ତମାନ କେବଳ ଏଗୁଡ଼ିକର ପ୍ରତ୍ନାବଶେଷ ମାତ୍ର ଦେଖାଯାଏ । ଏଠାରେ

ମୁଖ୍ୟଦେଉଳର ବର୍ଗାକାର ଗର୍ଭଗୃହର ପ୍ରତ୍ୟେକ ପାଖ ୧୦.୧୦ ମିଟର ଅଟେ । ଏହାର ଚତୁଃପାର୍ଶ୍ୱରେ ଥିବା ବାଡ଼ର ମୋଟା ସ୍ଥଳ ବିଶେଷରେ ୬.୧୫ ମିଟରରୁ ୭.୭୦ ମିଟର ଦେଖାଯାଏ । ଏହି ଗର୍ଭଗୃହ ମଧ୍ୟରେ ମୁଖ୍ୟ ଦେବତାଙ୍କ ସିଂହାସନଟି ରହିଛି । ଦେଉଳ ବାହାର ପାଖରେ ବର୍ତ୍ତମାନ ତିଷ୍ଠି ରହିଥିବା ପାଭାଗର ଉଚ୍ଚତା ପ୍ରାୟ ୪.୧୫ ମିଟର । ଏହି ମାପକୁ ଭିତ୍ତିକରି ଇ: ମନମୋହନ ଗାଙ୍ଗୁଲି, ପ୍ରାପ୍ତ ସୂତ୍ର ଅନୁସାରେ ଦେଉଳ ବାଡ଼ର ଉଚ୍ଚତା ପ୍ରାୟ ୧୮.୦୦ ମିଟର ଥିବା ଅନୁମାନ କରନ୍ତି । ପୁନଶ୍ଚ ବାଡର ଉଚ୍ଚତା ଅନୁଯାୟୀ ବିମାନର ମୋଟ ଉଚ୍ଚତା ପ୍ରାୟ ୭୦.୫୦ ମିଟର ହୋଇଥିବା ସମ୍ଭବ ବୋଲି ମତ ଦେଇଛନ୍ତି । ମନ୍ଦିର ମସ୍ତକ ଭାଗର କେତେକ ପ୍ରତ୍ନାବଶେଷକୁ ପରୀକ୍ଷା କରି ବିଦ୍ୱାନମାନେ ମତ ଦିଅନ୍ତି ଯେ, ଦେଉଳ ଶିଖରରେ ସୂର୍ଯ୍ୟ ଦେବତାଙ୍କ ଆୟୁଧ 'ଧ୍ୱଜାପଦ୍ମ' ସ୍ଥାପିତ ହୋଇଥିଲା ।



ପୂର୍ଣ୍ଣାଙ୍ଗ ସୂର୍ଯ୍ୟମନ୍ଦିରର ଆନୁମାନିକ ଚିତ୍ର

ଦେଉଳ ସହିତ ସଂଲଗ୍ନ ପ୍ରାୟ ୩.୩୦ ମିଟର ଚଉଡ଼ାର ଏକ ସନ୍ଧିସ୍ଥଳ ପରେ ଜଗମୋହନ ଅବସ୍ଥିତ । ପଞ୍ଚରଥ ଶୈଳୀ ଏହି ପୀଢ଼ଦେଉଳର ଅନେକାଂଶ ଭାଙ୍ଗି ପଡ଼ିଥିଲା । କିନ୍ତୁ ମରାମତି ପରେ ନିର୍ମାଣଟି ବର୍ତ୍ତମାନ ସୁରକ୍ଷିତ ରହିଛି । ପୂର୍ବୋକ୍ତ ପୀଠ ଉପରେ ଜଗମୋହନ ପାଭାଗର ଉଚ୍ଚତା ୩.୩୫ ମିଟର ।


ସୂର୍ଯ୍ୟମନ୍ଦିର ଜଗମୋହନର ଦୃଶ୍ୟ

ତଳଜଂଘ ୨.୭୦ ମିଟର ହୋଇଥିବା ବେଳେ ଉପର ଜଂଘର ଉଚ୍ଚତା ୨.୫୦ ମିଟର ଅଟେ । ଦୁଇ ଜଂଘ ମଧ୍ୟରେ ବନ୍ଧନୀର ଚଉଡା ୦.୮୦ ମିଟରେ ରହିଛି । ବାଡର ସର୍ବାଗ୍ରଭାଗ ବରଣ୍ଡର ଉଚ୍ଚତା ୨.୯୦ ମିଟର ଅଟେ । ଏହିପରି ପୀଠ ଉପରେ ବାଡ଼ର ଉଚ୍ଚତା ୧୨.୨୫ ମିଟର ଅଟେ । ବାଡ଼ ଉପରେ ଘଣ୍ଟଶ୍ରୀମୋହନ ଶୈଳୀର ପୀଢ଼ଛାତ ଦେଖାଯାଏ । ଏଥିରେ ଥିବା ତିନି ପଟଳର ପୀଢ଼ ମଧ୍ୟରୁ ପ୍ରଥମ ପଟଳର ଛଅ' ପୀଢ଼ର ଉଚ୍ଚତା ୪.୮୦ ମିଟରେ । ଏହା ଉପର କାଣ୍ଡିର ଉଚ୍ଚତା ୨.୧୫ ମିଟର ଅଟେ । ଦ୍ୱିତୀୟ ପଟଳରେ ଥିବା ଛଅ' ପୀଢ଼ର ଉଚ୍ଚତା ୧.୭୦ ମିଟର ଏବଂ ତୃତୀୟ ପଟଳର ପାଞ୍ଚ ପୀଢ଼ର ଉଚ୍ଚତା ୨.୭୫ ମିଟର ଅଟେ । ଏହି ତିନି ପଟଳ ଉପରେ ଥିବା ଜଗମୋହନ ମସ୍ତକଭାଗରେ ଥିବା ଘଣ୍ଟର ବେକି, ଘଣ୍ଟ, ଅଁଳାବେକି ଓ ଅଁଳାର ମୋଟ ଉଚ୍ଚତା ପ୍ରାୟ ୮.୦୦ମିଟର ଅଟେ । ଏହିପରି ପୀଠ ଉପରୁ ଜଗମୋହନର ମୋଟ ଉଚ୍ଚତା ୩୪.୩୫ ମିଟର ହୋଇଥିବା ଜଣାଯାଏ । ଜଗମୋହନ ଗଣ୍ଡିର ପୀଢ଼ ଧାରଗୁଡିକରେ ବିଭିନ୍ନ ଯୁଦ୍ଧଦୃଶ୍ୟ ଓ ଦୁଇ ପଟଳ ମଧ୍ୟଭାଗରେ ଥିବା ସୁଉଚ୍ଚ କାଣ୍ଡିଗୁଡିକରେ ମନୁଷ୍ୟାକୃତି ନର୍ତ୍ତକୀ, ବାଦିକା ଓ ଭୈରବ ମୂର୍ତ୍ତିଗୁଡ଼ିକ ନିର୍ମାଣଟିକୁ ଅଧିକ ଆକର୍ଷଣୀୟ ଓ ଅନ୍ୟ ମନ୍ଦିରର ଜଗମୋହନ ଠାରୁ ଭିନ୍ନ କରିପାରିଛି । ଏହି ଦେଉଳର ପୂର୍ବଦ୍ୱାର ବ୍ୟତୀତ ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ମଧ୍ୟ ପ୍ରବେଶ ନିମନ୍ତେ ବ୍ୟବସ୍ଥା ଥିଲା । ନିର୍ମାଣଟିର ସୁରକ୍ଷା ନିମନ୍ତେ ଏହା ମଧ୍ୟରେ ବାଲି ଭର୍ତ୍ତି କରାଯାଇଥିବାରୁ ଏହି ସମସ୍ତ ଦ୍ୱାର ବର୍ତ୍ତମାନ ବନ୍ଦ ରହିଛି । ଏହି ଦ୍ୱାରଗୁଡ଼ିକ ସମ୍ମୁଖରେ ଯଥାକ୍ରମେ ସିଂହ, ଘୋଟକ ଓ ହସ୍ତୀ ମୂର୍ତ୍ତିମାନ ସ୍ଥାପିତ ହୋଇଥିଲା, ଯାହାକି ବର୍ତ୍ତମାନ ମନ୍ଦିର ପରିସର ମଧ୍ୟରେ ଅନ୍ୟତ୍ର ସ୍ଥାନିତ ହୋଇଛି । ଏହା ବ୍ୟତୀତ ତିନି ଦିଗରୁ ଜଗମୋହନ ମଧ୍ୟକୁ ପ୍ରବେଶ କରିବା ନିମନ୍ତେ ସୋପାନର ବ୍ୟବସ୍ଥା ମଧ୍ୟ ଦେଖାଯାଏ । କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ଏହି ବିଶାଳତମ କୃତିର କାରୁକଳା ଓ ମୂର୍ତ୍ତିକଳା ମଧ୍ୟ ଚରମ ଉତ୍କର୍ଷତା ଲାଭକରିଛି ।

●●●

# କଳିଙ୍ଗ ମନ୍ଦିର ସ୍ଥାପତ୍ୟର କେତେକ ମୌଳିକ ଭାଗାନୁପାତ

ଅନେକ ଶିଳ୍ପପୋଥିରେ ମନ୍ଦିର ନିର୍ମାଣର ଭାଗାନୁପାତ ଦିଆଯାଇଛି । ତେବେ ଏଗୁଡ଼ିକ ପ୍ରାଚୀନ ଓ ସାଙ୍କେତିକ ଭାଷାରେ ଉଲ୍ଲେଖ ଥିବାରୁ ସୁବୋଧ ହୁଏନାହିଁ । ବୋଧହୁଏ ଏହି କାରଣରୁ ପୋଥିର ଏହି ତଥ୍ୟ ସହିତ ବାସ୍ତବ କ୍ଷେତ୍ରରେ ମନ୍ଦିରର ମାପଗୁଡ଼ିକୁ ଅଦ୍ୟାବଧି ତୁଳନା କରି ପରୀକ୍ଷା ନିରୀକ୍ଷା କରାଯାଇ ନାହିଁ । ତେବେ ଉନବିଂଶ ଶତାବ୍ଦୀର ପ୍ରଥମ ଦଶକରେ କେତେକ ମନ୍ଦିରର ରକ୍ଷଣାବେକ୍ଷଣ ଦାୟିତ୍ୱରେ ଥିବା ଇ: ମନୋମୋହନ ଗାଙ୍ଗୁଲି, ବାସ୍ତବ କ୍ଷେତ୍ରରେ ମନ୍ଦିରଗୁଡ଼ିକର ମାପ ନେଇ, ନିର୍ଦ୍ଧାରିତ କରିଥିବା କେତେକ ଭାଗାନୁପାତ ଅର୍ଥାତ୍ ନିର୍ମାଣ କୌଶଳର ସୂଚନା ନିମ୍ନରେ ଦିଆଗଲା ।

**ଭୂନକ୍ସା, ଗର୍ଭଗୃହ, ବାଡ଼ ଓ ରଥକ :**

ଅଧିକାଂଶ ପ୍ରାଚୀନ ରେଖଦେଉଳ ଗର୍ଭଗୃହର ଲମ୍ବ ବା ପ୍ରସ୍ଥ ଯାହା, ଦୁଇ ବାଡ଼ ବା କାନ୍ଥର ମୋଟ ଚଉଡ଼ା ତା' ସହିତ ପ୍ରାୟ ସମାନ । ଅର୍ଥାତ ଗୋଟିଏ ପାଖ ବାଡ଼ର ଚଉଡା ଗର୍ଭଗୃହର ୧/୨ ଅଟେ । ଏହି ଭାଗାନୁପାତରେ ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ମନ୍ଦିରପୁଞ୍ଜ, ପରଶୁରାମେଶ୍ୱର, ଶିଶିରେଶ୍ୱର, ତୀର୍ଥେଶ୍ୱର ମନ୍ଦିର ସମେତ ବକ୍ରକୋଟର ଭୃଙ୍ଗେଶ୍ୱରମହାଦେବ ମନ୍ଦିର, କୁଆଳୋର କନକେଶ୍ୱର ମନ୍ଦିର, ବଙ୍କାଡର ଭଗ୍ନ ଶିବମନ୍ଦିର, ମହାନଦୀ ଟାପୁର ସିଂହନାଥ ମନ୍ଦିର, ରାଣୀପୁର-ଝରିଆଲର ଇନ୍ଦ୍ରଲାଥ ମନ୍ଦିର, ଖିଚିଂର କୁଟେଇତୁଣ୍ଡି ଓ ଅନ୍ୟ କେତେକ ମନ୍ଦିର ନିର୍ମିତ ହୋଇଛି । ପରବର୍ତ୍ତୀ ସମୟର ଅନେକ ବିକଶିତ ରେଖଦେଉଳ ବାଡ଼ର ଚଉଡା ବିଭିନ୍ନ ଭାବରେ ହ୍ରାସ ପାଇଥିବା ଦେଖାଯାଏ ।




ଭୂନକ୍ସାରେ ଏକ ପଞ୍ଚରଥ ଦେଉଳର ଭାଗାନୁପାତ

କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ପଞ୍ଚରଥ ଶୈଳୀ ମନ୍ଦିରର ସଂଖ୍ୟା ଅଧିକ । ପ୍ରଥମ ପର୍ଯ୍ୟାୟ ଅନେକ ମନ୍ଦିରର ରଥକଗୁଡିକ ଅନୁଶୀଳନରୁ ଯେଉଁ ମୌଳିକତା ପରିଲକ୍ଷିତ ହୁଏ ସେଥିମଧ୍ୟରୁ ଜଣାଯାଏ ଯେ, ଗୋଟିଏ ରେଖଦେଉଳ ଭୂନକ୍ସାର ପ୍ରତ୍ୟେକ ପାର୍ଶ୍ୱର:- ରାହାପାଗ ୮: ପ୍ରତ୍ୟେକ ଅନୁରାହା ୩: ଏବଂ ପ୍ରତ୍ୟେକ କନିକପାଗ ୪, ଅନୁପାତରେ ରହିଛି । ରାହା ଓ ଅନୁରାହାପାଗଗୁଡିକ ପ୍ରତ୍ୟେକ ପାଖରେ ସମ୍ମୁଖକୁ ବଢ଼ିଥାଏ । ଅର୍ଥାତ୍ ଭୁନକ୍ସା ପ୍ରସ୍ତୁତି ନିମନ୍ତେ ୨୦×୨୦ ଅନୁପାତରେ ଏକ ମୂଳ ବର୍ଗକ୍ଷେତ୍ର ଅଙ୍କନ କରାଯାଇଥାଏ । ଏଥିରୁ ଗର୍ଭଗୃହ=୧୦, ପ୍ରତ୍ୟେକ ପାଖ ବାଢ଼=୫ ଅନୁପାତରେ ରହେ ।

### ଦେଉଳର ପାଭାଗ ଓ ବାଢ଼ :

ମଧ୍ୟଯୁଗୀୟ ପାଭାଗ ପଞ୍ଚକର୍ମ ଯଥା ଖୁରା, କୁମ୍ଭ, ପଟି, କନି ଓ ବସନ୍ତର ନିର୍ମାଣରେ ସାଧାରଣତଃ ଏହି ପ୍ରକାରେ ଭାଗାନୁପାତ ଦେଖାଯାଏ, ଯଥା: ୪କ: ୪କ: ୨କ: କ:କ

ଦେଉଳର ପଞ୍ଚାଙ୍ଗବାଢ଼ରେ ଦେଖାଯାଉଥିବା ସାଧାରଣ ଭାଗାନୁପାତ ଯଥାକ୍ରମେ :-
ପାଭାଗ ୧ : ତଳଜଂଘ ୫/୬ : ବନ୍ଧନୀ ୧/୩ : ଉପରଜଂଘ ୫/୬ : ବରଣ୍ଡ ୧ ।
ଅନ୍ୟ କେତେକ ସ୍ଥଳେ ଏହା - ୧: ୭/୮: ୧/୩ : ୭/୮: ୧, ରହିଥାଏ ।

### ବାଢ଼ :

ଅନେକ ପ୍ରାଚୀନ ଓ ମଧ୍ୟଯୁଗୀୟ ରେଖଦେଉଳ ବାଢ଼ର ମାପ ଅନୁଶୀଳନରେ ଦେଖାଯାଏ ଯେ, ଅଧିକାଂଶ ସ୍ଥଳେ ଦେଉଳ ବାଢ଼ର ଉଚ୍ଚତା, ବାଢ଼ ଲମ୍ବର ପ୍ରାୟ ୦.୬୫ ରୁ ୦.୭୨ ଅନୁପାତରେ ରହିଥାଏ । ତେବେ ସିଦ୍ଧେଶ୍ୱର ମନ୍ଦିର ବାଢ଼ର ଲମ୍ବ ଓ ଉଚ୍ଚତା ପ୍ରାୟ ସମାନ । ଏହିପରି କେତେକ ଦେଉଳ ବାଢ଼ର ମାପ ଓ ତାର ଭାଗାନୁପାତ ନିମ୍ନରେ ଦିଆଗଲା ।

| ମନ୍ଦିରର ନାମ | ବାଢ଼ର ଲମ୍ବ | ବାଢ଼ର ଉଚ୍ଚତା | ଭାଗାନୁପାତ ପ୍ରାୟ |
|---|---|---|---|
| ପରଶୁରାମେଶ୍ୱର | ୬.୦୭ ମିଟର | ୪.୩୮ ମିଟର | ୧:୦.୭୦ |
| ବୋଇତାଳ ଦେଉଳ | ୬.୧୫ ମିଟର | ୪.୨୮ ମିଟର | ୧:୦.୭୦ |
| ମୁକ୍ତେଶ୍ୱର ମନ୍ଦିର | ୪.୬୧ ମିଟର | ୩.୩୦ ମିଟର | ୧:୦.୭୦ |
| ଲିଙ୍ଗରାଜ ମନ୍ଦିର | ୧୯.୦୨ ମିଟର | ୧.୩୬ ମିଟର | ୧:୦.୬୬ |
| ଅନନ୍ତ-ବାସୁଦେବ | ୬.୪୮ ମିଟର | ୪.୪୯ ମିଟର | ୧:୦.୭୨ |
| ସିଦ୍ଧେଶ୍ୱର ମନ୍ଦିର | ୪.୯୨ ମିଟର | ୪.୯୨ ମିଟର | ୧:୧ |

ଅନେକ ଦେଉଳର ଉଚ୍ଚତା (ପାଠ ଉପରୁ ଖପୁରି ପର୍ଯ୍ୟନ୍ତ) ପ୍ରାୟ ଦେଉଳ ବାଢ଼ ଲମ୍ବର ୨ ୧/୨ ଅର୍ଥାତ୍ ଅଢ଼େଇଗୁଣ ହୋଇଥିବା ଦେଖାଯାଏ ।

| ମନ୍ଦିରର ନାମ | ବାଢ଼ର ଲମ୍ବ | ଖପୁରି ସମେତ ଦେଉଳର ଉଚ୍ଚତା | ଭାଗାନୁପାତ ପ୍ରାୟ |
|---|---|---|---|
| ମୁକ୍ତେଶ୍ୱର | ୨.୭୬ ମିଟର | ୧୦.୪୭ ମିଟର | ୧:୨.୩ |
| ରାଜାରାଣୀ | ୫.୨୩ ମିଟର | ୨୪.୧୫ ମିଟର | ୧:୨.୭ |
| ଶ୍ରୀଜଗନ୍ନାଥ | ୧୪.୬୧ ମିଟର | ୬୦.୩୦ ମିଟର | ୧:୨.୭ |
| ଅନନ୍ତ-ବାସୁଦେବ | ୭.୨୮ ମିଟର | ୧୮.୪୬ ମିଟର | ୧:୨.୭ |

ତେବେ ଏଥିରେ ବ୍ୟତିକ୍ରମ ଦେଖାଯାଉଥିବା ନିର୍ମାଣ ମଧ୍ୟରେ ସିଦ୍ଧେଶ୍ୱର ମନ୍ଦିରର ଉଚ୍ଚତା, ବାଢ଼ ଲମ୍ବର ପ୍ରାୟ ତିନିଗୁଣ ଓ ଲିଙ୍ଗରାଜ ମନ୍ଦିରର ଉଚ୍ଚତା ବାଢ଼ ଲମ୍ବର ପ୍ରାୟ ଦୁଇଗୁଣ ଅଟେ ।

ଅନ୍ୟ ଭାବରେ ରେଖ ଦେଉଳ ବାଢ଼ର ଉଚ୍ଚତା ଯାହା, ତଳପଟନ କିମ୍ବା ପାଠ ଉପରୁ ଖପୁରି ସମେତ ଦେଉଳର ଉଚ୍ଚତା ପ୍ରାୟ ତା'ର ତିନିଗୁଣ ହୋଇଥାଏ । ଏଠାରେ ଏହାର କେତୋଟି ଉଦାହରଣ ଦିଆଗଲା :-

| ମନ୍ଦିରର ନାମ | ବାଢ଼ର ଉଚ୍ଚତା | କଳସ ବ୍ୟତୀତ ଦେଉଳର ଉଚ୍ଚତା | ଅନୁପାତ ପ୍ରାୟ |
|---|---|---|---|
| ମୁକ୍ତେଶ୍ୱର | ୩.୩୦ ମିଟର | ୯.୫୩ ମିଟର | ୧:୩ |
| ସିଦ୍ଧେଶ୍ୱର | ୪.୯୨ ମିଟର | ୧୩.୪୩ ମିଟର | ୧:୩ |
| ଲିଙ୍ଗରାଜ | ୧୩.୩୫ ମିଟର | ୩୯.୧୦ ମିଟର | ୧:୩ |

**ରେଖଦେଉଳ ଗଣ୍ଡି :**

କନିକପାଗର ଭୂମି ଓ ଭୂମିଅଁଳାର ସୂଚନା ପୂର୍ବରୁ ଦିଆଯାଇଛି । ତେବେ କନିକ ଉପର ସବୁ ଭୂମିର ମାପ ବା ଉଚ୍ଚତା ସମାନ ନଥାଏ । ପ୍ରଥମତଃ କନିକପାଗର ଚଉଡ଼ା ଯାହା ନିମ୍ନ ବା, ପ୍ରଥମ ଭୂମିର ଉଚ୍ଚତା ତା'ର ୩/୪ ହୋଇଥାଏ । ତା'ପରର ପ୍ରତ୍ୟେକ ଭୂମିର ଉଚ୍ଚତା ତା'ରି ନିମ୍ନ ଭୂମିର ୩/୪ ହୋଇଥାଏ । ଉଦାହରଣ ସ୍ୱରୂପ ପ୍ରଥମ ଭୂମିର ୩/୪ = ୨ୟ ଭୂମି । ଦ୍ୱିତୀୟ ଭୂମିର ୩/୪ = ତୃତୀୟ ଭୂମି । ଏହିପରି ଉପରକୁ ଉପର ଭୂମି ଗୁଡ଼ିକର ଉଚ୍ଚତା ହ୍ରାସ ପାଇଥାଏ ।

**ମସ୍ତକ ଭାଗ:**

ଅଧିକାଂଶ ରେଖଦେଉଳ ମସ୍ତକଭାଗର ମାପ ଅନୁଶୀଳନରେ ଯେଉଁ ଭାଗାନୁପାତ ପ୍ରାପ୍ତ ହୁଏ ତା'ର କେତୋଟି ଉଦାହରଣ ଏଠାରେ ଦିଆଗଲା ।

ଅଧିକାଂଶ ସ୍ଥଳ :- ବେକିର ଉଚ୍ଚତା = ଆମଳକଶିଳାର ଉଚ୍ଚତା

ଆମଳକଶିଳା ୧/୩ = ବେକି ଉପର ତ୍ରିପଟଧାର

ଅନ୍ୟକେତେକ ସ୍ଥଳେ:- ଆମଳକଶିଳାର ୧/୨ = ବେକି

ବେକିର ଉଚ୍ଚତା = ଖପୁରିର ଉଚ୍ଚତା

**କଳସ :**

ମସ୍ତକର ସର୍ବାଗ୍ର ଭାଗ, କଳସର ମଧ କେତେକ ସ୍ଥଳେ ଭାଗନୁପାତ ଦେଖିବାକୁ ମିଳେ ।

କଳସ ପାଦର ଚଉଡା = କଳସର ଉଚ୍ଚତା, ଖପୁରି ପର୍ଯ୍ୟନ୍ତ ।

କଳସ ଉଚ୍ଚତାର ୧/୨ = କଳସ ଖପୁରିର ବ୍ୟାସ ।

କଳସର ମୋଟ ଉଚ୍ଚତାର ୧/୨ = କଳସର ପ୍ରସ୍ଥ ।

କଳସ ହାଣ୍ଡିର ୧/୨ = କଳସପାଦର ଡୋରି ।

କଳସ ହାଣ୍ଡିର ୧/୪ = କଳସ ବେକି

**ପୀଢ଼ଦେଉଳ**

ପୀଢ଼ଦେଉଳ ବାଡ଼ର ଅଧିକାଂଶ ନିର୍ମାଣ ସୂତ୍ର ରେଖ ଦେଉଳ ସହିତ ସମତା ରକ୍ଷା କରୁଥିବା ଦେଖାଯାଏ । ତେବେ ପାଢ଼ଦେଉଳ ଗଣ୍ଡିର ନିର୍ମାଣ ଶୈଳୀ ଭିନ୍ନ ହୋଇଥିବାରୁ ଏଥିରେ କେତେକ ଭିନ୍ନ ନିର୍ମାଣସୂତ୍ର ପ୍ରଚଳିତ ଥିବା ସୂଚନା ମିଳେ । ଅନେକ ପୀଢ଼ଦେଉଳରେ ଦେଖାଯାଉଥିବା କେତେକ ସାଧାରଣ ଭାଗାନୁପାତ ନିମ୍ନରେ ଦିଆଗଲା ।

ବାଡ ଉଚ୍ଚତାର ୩/୪ = ସମୁଦାୟ ପୀଢ଼ର ଉଚ୍ଚତା ।

ବରଣ୍ଡର ୧/୨ = ବାଡ଼ ଉପରେ ପୀଢ଼ର ଛଜା ।

ସମୁଦାୟ ପୀଢ଼ର ଉଚ୍ଚତା = ପୀଢ଼ ଉପର ଘୋଡ଼ାଚକଡ଼ାର ଚଉଡ଼ା ।

ପୀଢ଼ ଉଚ୍ଚତାର ୩/୪ = ମସ୍ତକଭାଗ, ଖପୁରି ପର୍ଯ୍ୟନ୍ତ ।

ଘୋଡ଼ାଚକଡ଼ା ପ୍ରସ୍ତର ୧/୨ = ତା' ଉପର ଆମଳକର ବେକି ।

ବେକିର ୧ ୧/୨ = ଆମଳକଶିଳା ।

ଆମଳକଶିଳାର ୧/୪ = ବେକି ତ୍ରିପଟଧାରର ଚଉଡ଼ା ।

ଆମଳକଶିଳାର ୩/୪ = ଖପୁରିର ଉଚ୍ଚତା ।

ଆମଳକଶିଳାର ୧/୪ = ବେକି ତ୍ରିପଟଧାରର ଚଉଡ଼ା ।

ଆମଳକଶିଳାର ୩/୪ = ଖପୁରିର ଉଚ୍ଚତା ।

ଆମଳକଶିଳାର ୩/୪ = ଚମ୍ପକପତ୍ର ପାଖୁଡ଼ା ।

ଚମ୍ପକପତ୍ରର ୩/୪ = ଆମଳକଶିଳା

ଆମଳକଶିଳା ବ୍ୟାସର ୧/୨ = ଉପର ଖପୁରିର ବ୍ୟାସ ।

ଖପୁରି ବ୍ୟାସର ୧/୨ = କଳସ ପାଦର ବ୍ୟାସ ।

● ● ●

# ପଶ୍ଚିମଓଡ଼ିଶାର କେତେକ ଭିନ୍ନ ଶୈଳୀର ମନ୍ଦିର

କଳିଙ୍ଗ ଶୈଳୀର ମନ୍ଦିରଗୁଡ଼ିକ ଓଡ଼ିଶାର ଉପକୂଳ, ଦକ୍ଷିଣଓଡ଼ିଶା ଓ ମଧ୍ୟଓଡ଼ିଶାର କେତେକ ଅଞ୍ଚଳରେ ନିର୍ମିତ ହୋଇଥିବା ବେଳେ ଓଡ଼ିଶାର ପଶ୍ଚିମାଞ୍ଚଳରେ ମଧ୍ୟଭାରତୀୟ ଶୈଳୀର କିମ୍ବା ଏହି ଶୈଳୀ ଦ୍ୱାରା ପ୍ରଭାବିତ ଅନେକ ମନ୍ଦିର ଦେଖିବାକୁ ମିଳେ । ଏହା ମଧ୍ୟରେ କେତେକ ମୁଖମଣ୍ଡପ କିମ୍ବା ମୁଖଶାଳା ଯୁକ୍ତ ମନ୍ଦିର ଓ ଅନ୍ୟ କେତେକ ନକ୍ଷତ୍ରାକାର କିମ୍ବା ଅଷ୍ଟକୋଣୀ ମନ୍ଦିର ଅନ୍ତର୍ଭୁକ୍ତ । ଅର୍ଥାତ୍ ଏଗୁଡ଼ିକର ଭୂନକ୍ସା ନକ୍ଷତ୍ରାକାର ଅଟେ । ଏଥି ମଧ୍ୟରୁ ଅଧିକାଂଶ କୀର୍ତ୍ତି ମହାନଦୀର ଉପର ଅବବାହିକାରେ ଅବସ୍ଥିତ, ଯାହାର ଏକ ସମୟାନୁକ୍ରମ ତାଲିକା ବହିର ପରିଶିଷ୍ଟରେ ଦିଆଯାଇଛି । ପ୍ରଥମ ପର୍ଯ୍ୟାୟର ବର୍ଗାକାର ମୁଖମଣ୍ଡପ ଯୁକ୍ତ ମନ୍ଦିରଗୁଡ଼ିକର ମୁଖ୍ୟ ଦେଉଳଟି ଅପେକ୍ଷାକୃତ ଯଥେଷ୍ଟ ଛୋଟ ଏବଂ ରେଖ ଦେଉଳ ସଦୃଶ ହୋଇଥାଏ । ଏହାର ସମ୍ମୁଖର ଏକ ଛୋଟ କୋଠରୀକୁ 'ଅନ୍ତରାଳ' କୁହାଯାଏ । ଏହି ଅନ୍ତରାଳ ସମ୍ମୁଖରେ ଥିବା ମୁଖମଣ୍ଡପର ମଧ୍ୟଭାଗରେ ସାଧାରଣତଃ ଚାରିଗୋଟି ଖମ୍ବ ଏବଂ ଚତୁଃପାର୍ଶ୍ୱରୁ ପ୍ରତ୍ୟେକ ପାର୍ଶ୍ୱରେ ଚାରିଗୋଟିଏ ଖମ୍ବ ଦେଖାଯାଏ । ଏହି ପରି ଷୋହଳ ଗୋଟି ଖମ୍ବ ଉପରେ ମଣ୍ଡପର ଅନୁଚ୍ଚ, ନହଚାଳିଆ ଶୈଳୀର ଛାତ ରହିଥାଏ । କିନ୍ତୁ ଅଧିକାଂଶ ସ୍ଥଳେ ପ୍ରାଚୀନ ଛାତ ଭାଙ୍ଗିପଡ଼ିଥିବାରୁ ପୁନଃନିର୍ମିତ ନୂତନ ଛାତ ଦେଖାଯାଏ । ମଣ୍ଡପଗୁଡ଼ିକର ଚତୁଃପାର୍ଶ୍ୱରେ ଅର୍ଦ୍ଧବାଡ଼ ବା ଛୋଟ କାନ୍ଥ ରହିଥିବା ବେଳେ ମୁଖଶାଳାଗୁଡ଼ିକରେ ପୂର୍ଣ୍ଣବାଡ଼ ରହିଥାଏ । ଏହି ଉଭୟ ପ୍ରକାର ନିର୍ମାଣର ଦୁଇ ପାର୍ଶ୍ୱ ବାଡ଼ର କିଞ୍ଚିତ ଆଗକୁ ବାହାରି ଥିବା ପୋର୍ଟିକୋ ସଦୃଶ ନିର୍ମାଣ ଥାଏ । ଏହା ଚଟାଣ ପତନଠାରୁ କିଞ୍ଚିତ ଉଚ୍ଚ ଓ ଛାତ, ମୁଖ୍ୟ ଛାତଠାରୁ କିଞ୍ଚିତ ନିମ୍ନରେ ଥାଏ । ଏଗୁଡ଼ିକରେ ଦଣ୍ଡଯୁକ୍ତ ରେଲିଙ୍ଗ ବା ବାରେଣି କିମ୍ବା ଗବାକ୍ଷ ସଦୃଶ ନିର୍ମାଣ ଦେଖାଯାଏ । ଅଧିକାଂଶ ସ୍ଥଳେ ମଣ୍ଡପ କିମ୍ବା ମୁଖଶାଳାର ମଧ୍ୟଭାଗରେ ଥିବା ଖମ୍ବଗୁଡ଼ିକରେ ପୂର୍ଣ୍ଣଘଟ ସମେତ ବିଭିନ୍ନ ମଣ୍ଡନକୃତି ଓ ମୂର୍ତ୍ତିକଳା ଦେଖିବାକୁ ମିଳେ । ଏହି ପ୍ରକାର କେତେକ ମନ୍ଦିରର ମୁଖମଣ୍ଡପ ମଧ୍ୟରେ କିମ୍ବା ମନ୍ଦିର ପରିସରରେ ଅନ୍ୟ ଏକ ଚାରି ଖମ୍ବ ଯୁକ୍ତ, ଛୋଟ ମଣ୍ଡପ ମଧ୍ୟରେ ଶିବଙ୍କ ବାହନ ବୃଷଭ ସ୍ଥାପିତ ହୋଇଥାଏ । ଏହାର ଉପର ଛାତ ପୀଢ଼ ଶୈଳୀର ହୋଇଥିବା ବେଳେ ନିର୍ମାଣଟିକୁ 'ନନ୍ଦିମଣ୍ଡପ' କୁହାଯାଏ ।

ପଶ୍ଚିମ ଓଡ଼ିଶାରେ ଉପରୋକ୍ତ ପ୍ରକାରର କୋଶଳେଶ୍ୱର ନାମରେ ଏକାଧିକ ମନ୍ଦିର ରହିଛି । ଏହା ମଧ୍ୟରେ ବୈଦ୍ୟନାଥ ଗ୍ରାମର ମନ୍ଦିରଟି ପ୍ରାଚୀନ ଅଟେ । ଏହାର ଖମ୍ବଗୁଡ଼ିକରେ ମନୁଷ୍ୟାକୃତି ପ୍ରତିମାମାନ ଦେଖାଯାଏ । ଏହି ମନ୍ଦିରଟି ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ପୁନଃ ନିର୍ମାଣ କରାଯାଇଥିଲେହେଁ ବର୍ତ୍ତମାନ ଜରାଜୀର୍ଣ୍ଣ ଅବସ୍ଥାରେ ରହିଛି । ଅନ୍ୟ ମନ୍ଦିରଟି ବଲାଙ୍ଗିର ଜିଲ୍ଲାର ପାଟନାଗଡ ଠାରେ ଅବସ୍ଥିତ । ଏ ଗୋଟିକ ପରବର୍ତ୍ତି ସମୟର କୃତି ହୋଇଥିବା ବେଳେ ଏହାର ଖମ୍ବଗୁଡିକରେ ମଣ୍ଡନକୃତି ଦେଖାଯାଏ । ମନ୍ଦିର ପରିସରରେ ସ୍ୱଚ୍ଛ ମଣ୍ଡନକୃତି ବିଶିଷ୍ଟ ଏକ ନନ୍ଦିମଣ୍ଡପ ଦେଖିବାକୁ ମିଳେ । ସୋନପୁର ନିକଟ ଚରଦା ଗ୍ରାମର କପିଳେଶ୍ୱର ମନ୍ଦିରଟି ମଧ୍ୟ ଏହି ଶୈଳୀର ନିର୍ମାଣ । ତେବେ ପରବର୍ତ୍ତି ସମୟରେ ମନ୍ଦିରଟି ପୁନଃ ନିର୍ମାଣ ବେଳେ ତାହାର ମୌଳିକତା ବହୁ ଭାବରେ କ୍ଷୁର୍ଣ୍ଣ ହୋଇଛି । ଏଥିରେ ଥିବା କାରୁକଳା ଓ ମୂର୍ତ୍ତି ଯୁକ୍ତ ଚାରି ଖମ୍ବ ପୂର୍ବ ନିର୍ମାଣର ମୂକସାକ୍ଷୀ । କଳାହାଣ୍ଡି ଜିଲ୍ଲା ମୋହନଗିରିର ଧବଳେଶ୍ୱର ମନ୍ଦିର, ମୁଖଶାଳା ମଧ୍ୟରେ ସ୍ୱଚ୍ଛ ମଣ୍ଡନକୃତି ଓ ଅଭିଲେଖ ଯୁକ୍ତ ଏକ ଉଲ୍ଲେଖଯୋଗ୍ୟ ନନ୍ଦିମଣ୍ଡପ ଦେଖିବାକୁ ମିଳେ ।




କୋଶଳେଶ୍ୱର ମନ୍ଦିରର ଭୂନକ୍ସା, ବୈଦ୍ୟନାଥ




ରାମେଶ୍ୱର ମନ୍ଦିରର ନକ୍ଷତ୍ରାକାର ଭୂନକ୍ସା



ବୌଦ ରାମେଶ୍ୱର ମନ୍ଦିରର ଦୃଶ୍ୟ ।

ବୌଦର ରାମେଶ୍ୱର ମନ୍ଦିର ପରିସରରେ ନକ୍ଷତ୍ରାକାର ଭୂନକ୍‌ସା ଉପରେ ନିର୍ମିତ ତିନୋଟି ମନ୍ଦିର ରହିଛି । ଏଗୁଡିକର ଭୂନକ୍‌ସା ବ୍ୟତୀତ ଗର୍ଭଗୃହର ଶିବଲିଙ୍ଗ ସହିତ ଥିବା ଶକ୍ତିପୀଠ ମଧ୍ୟ ନକ୍ଷତ୍ରାକାର । ଏହା ସୋମବଂଶୀ ରାଜତ୍ୱ ସମୟରେ ଶୈବ ମତବାଦ ସହିତ ତନ୍ତ୍ରର ପ୍ରଭାବରେ ନିର୍ମିତ ହୋଇଥିବା ଜଣାଯାଏ । ପ୍ରତ୍ୟେକ ମନ୍ଦିର ଗୋଟିଏ, ଗୋଟିଏ ପୀଠ ଉପରେ ଦଣ୍ଡାୟମାନ ହୋଇଥିବା ବେଳେ ଏଗୁଡ଼ିକ ଜଗମୋହନ ବା ମୁଖଶାଳା ବିହୀନ । ଏହା ମଧ୍ୟରେ ଭୁବନେଶ୍ୱର ଓ କପିଳେଶ୍ୱର ମନ୍ଦିର ଦ୍ୱୟ ପୂର୍ବମୁଖୀ ଓ ପଶ୍ଚିମ-ସୋମନାଥ ନାମକ ମନ୍ଦିରଟି ପଶ୍ଚିମମୁଖୀ ଅଟେ । ମନ୍ଦିର ତିନୋଟି ଏକ ଦୀର୍ଘ ତ୍ରିଭୂଜ ସୃଷ୍ଟି କରୁଥିବା କ୍ଷେତ୍ରର ତିନି କୋଣରେ ଅବସ୍ଥିତ । ନକ୍ଷତ୍ରାକାର ମନ୍ଦିରର ପାଗଗୁଡିକ ବହୁବିଧ, ଉଚ୍ଚକୋଟୀର କାରୁକଳା ଓ ମୂର୍ତ୍ତିକଳାରେ ପରିପୂର୍ଣ୍ଣ । ସାଧାରଣତଃ ଏଗୁଡ଼ିକ କଳିଙ୍ଗ ଶୈଳୀର ମନ୍ଦିର ଭଳି ମନେ ହେଉଥିଲେହେଁ, ଏହା ଏକ ଭିନ୍ନ ପ୍ରକାର ନିର୍ମାଣ । ଅନ୍ୟ ଗୋଟିଏ ନକ୍ଷତ୍ରାକାର ଭୂନକ୍‌ସା ଉପରେ ନିର୍ମିତ ମନ୍ଦିର ହେଉଛି ବୁଢ଼ୀକୋମ୍‌ନାର ପାତାଳେଶ୍ୱର ମନ୍ଦିର । ଏହି ଇଟା ତିଆରି ମନ୍ଦିରଟିର ବିବରଣୀ 'ଇଟା ମନ୍ଦିର' ଅଧ୍ୟାୟରେ ଦିଆଯାଇଛି । ଏହି ପ୍ରକାର ବିଭିନ୍ନ ଶୈଳୀର ନକ୍ଷତ୍ରାକାର ମନ୍ଦିର ମଧ୍ୟପ୍ରଦେଶରେ ପ୍ରବାହିତ ମହାନଦୀର ଉପରେ ଅବବାହିକା ଓ ଛତିଶଗଡ଼ ଅଞ୍ଚଳରେ ଦେଖିବାକୁ ମିଳେ ।

# ପ୍ରାଚୀନ ମନ୍ଦିରର ସଂରକ୍ଷଣ

ଓଡ଼ିଶା ଏକ ମନ୍ଦିର ବହୁଳ ରାଜ୍ୟ । ଏହି ପ୍ରାଚୀନ ମନ୍ଦିରମାନଙ୍କ କଳା ଓ ସ୍ଥାପତ୍ୟ ନିମନ୍ତେ ଆମ ରାଜ୍ୟ ଆଜି ଭାରତ ତଥା ଭାରତ ବାହାରେ ସୁପରିଚିତ ଓ ଓଡ଼ିଶାବାସୀ ଗୌରବାନ୍ୱିତ । ତେବେ ଏହି ଐତିହ୍ୟ ସମ୍ପନ୍ନ କୀର୍ତ୍ତିଗୁଡ଼ିକର ସୁରକ୍ଷା ନିମନ୍ତେ ଆମେ କେତେଦୂର ସଚେତନ, ତାହା ଚିନ୍ତାର ବିଷୟ । ଚଳିତ ଶତାବ୍ଦୀରେ ନିର୍ମିତ ମନ୍ଦିର କିମ୍ବା କୋଠାବାଡ଼ି ଯଦି କୌଣସି କାରଣରୁ ଭାଙ୍ଗି ନଷ୍ଟ ହୋଇଯାଏ, ତେବେ ସେହି ନକ୍‌ସାରେ ଅବିକଳ ଏକ ନିର୍ମାଣ ପୁନଶ୍ଚ କରି ହେବ । କିନ୍ତୁ ଐତିହାସିକ ଯୁଗର କୌଣସି କଳାକୃତିପୂର୍ଣ୍ଣ ମନ୍ଦିର ଥରେ ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲେ ତାର ପୁନଃ ନିର୍ମାଣ ଅସମ୍ଭବ କହିଲେ ଭୁଲ ହେବ ନାହିଁ । ଏଣୁ ପ୍ରତ୍ୟେକ ପ୍ରାଚୀନ ମନ୍ଦିରରେ ବ୍ୟବହୃତ କଳାକୃତିପୂର୍ଣ୍ଣ ପଥରଖଣ୍ଡ ଅତ୍ୟନ୍ତ ଦୁର୍ଲଭ ବସ୍ତୁ, ଯାହାକି ଆମ ଐତିହ୍ୟ, ସଂସ୍କୃତି ଓ ଗୌରବର ଏକ ଅମୂଲ୍ୟ ଅଙ୍ଗ । ଏହି ପରିପ୍ରେକ୍ଷୀରେ ପ୍ରତ୍ୟେକ ପ୍ରାଚୀନ କୀର୍ତ୍ତିର ସଂରକ୍ଷଣ ସରକାର ତଥା ପ୍ରତ୍ୟେକ ଦେଶବାସୀଙ୍କର ଏକ ମହତ କର୍ତ୍ତବ୍ୟ ଅଟେ ।

ମୁଖ୍ୟତଃ ଦୁଇ କାରଣରୁ ମନ୍ଦିର ଧ୍ୱଂସାଭିମୁଖୀ ହୋଇଥାଏ । ପ୍ରଥମଟି ପ୍ରାକୃତିକ ଓ ଅନ୍ୟଟି ମନୁଷ୍ୟକୃତ । ଖରା, ବର୍ଷା ଅର୍ଥାତ୍ ଜଳବାୟୁର ସଂସ୍ପର୍ଶରେ ଆସି ମନ୍ଦିରରେ ବ୍ୟବହାର ହୋଇଥିବା କଟା ପଥର ଓ ଇଟାଗୁଡ଼ିକର ତୀକ୍ଷ୍ଣ ଧାରଗୁଡ଼ିକର ଅବକ୍ଷୟ ଦ୍ୱାରା ମନ୍ଦିର ଦେହରେ ଛୋଟ ଫାଙ୍କ ସୃଷ୍ଟି ହୁଏ । ସେହି ସେହି ଫାଙ୍କରେ ଧୂଳି ଓ ବର୍ଷାଜଳ ପ୍ରବେଶ କରେ । ପକ୍ଷୀ ଓ ପବନ ଦ୍ୱାରା ବିଭିନ୍ନ ବୃକ୍ଷ ଲତାର ବୀଜ ପଡ଼ି ମନ୍ଦିର ଉପରେ ବୃକ୍ଷଲତା ଜନ୍ମେ । ଏହାର ଚେର ମନ୍ଦିର ଦେହରେ ପ୍ରବେଶ କରି ବିଭିନ୍ନ ଆକାର ପ୍ରକାରର ଫାଟ ସୃଷ୍ଟି କରି ପରିଶେଷରେ ମନ୍ଦିରକୁ ଧରାଶାୟୀ କରିଥାଏ । ମନ୍ଦିର ଯଦି କୌଣସି ସନ୍ତସନ୍ତିଆ ସ୍ଥାନରେ କିମ୍ବା ନିକଟରେ ଥିବା ବୃକ୍ଷ ଛାୟା ତଳେ ଥାଏ ତେବେ ବର୍ଷା ଜଳ ଶୀଘ୍ର

ନଶୁଖିବା ଦ୍ୱାରା ମନ୍ଦିର ଦେହରେ ଶିଉଳି ସୃଷ୍ଟି ହୁଏ । କେତେକ ମନ୍ଦିରର ପଥରର ଗୁଣ ଏବଂ ପରିବେଶ ଦ୍ୱାରା ମଧ୍ୟ ବିଭିନ୍ନ ପ୍ରକାର ଶିଉଳି ସଦୃଶ ଗୁଳ୍ମ ମାନ ଜନ୍ମିଥାଏ । ଏଗୁଡ଼ିକର ମୂଳ ପଥରର ଉପରଭାଗକୁ ଦୁର୍ବଳ କରି ଅବକ୍ଷୟ ଘଟାଏ । ସମୟ ସମୟେ ବଜ୍ରପାତରେ ମଧ୍ୟ ମନ୍ଦିରର କ୍ଷତି ଘଟିଥାଏ । ଓଡ଼ିଶା ଗୋଟିଏ ଉପକୂଳ ରାଜ୍ୟ । ଏହାର ସମୁଦ୍ର ଉପକୂଳରେ ବହୁପ୍ରଖ୍ୟାତ ମନ୍ଦିର ରହିଛି । ସମୁଦ୍ରର ଲବଣାକ୍ତ ପବନ ସଂସ୍ପର୍ଶରେ ଆସି ମନ୍ଦିର ଅବକ୍ଷୟ ହୋଇଥାଏ । ମନ୍ଦିର ନିକଟରେ ନଦୀ କିମ୍ବା ଅବହେଳିତ ଗାଡ଼ିଆ ଓ ପୁଷ୍କରିଣୀ ଜଳର ପ୍ରଭାବ ମନ୍ଦିର ମୂଳଦୁଆ ଉପରେ ପଡ଼ିବା ଦ୍ୱାରା ମୂଳଦୁଆ ଦବି ମନ୍ଦିରରେ ଫାଟ ସୃଷ୍ଟି ହୁଏ କିମ୍ବା ନିର୍ମାଣଟି ଗୋଟିଏ ପାଖକୁ ଢ଼ଳିପଡ଼େ । ପୂର୍ବୋକ୍ତ କାରଣର ଉଦାହରଣ ବହୁ ସ୍ଥାନରେ ଦେଖିବାକୁ ମିଳୁଥିବା ବେଳେ ସମ୍ବଲପୁର ନିକଟ, ମହାନଦୀ କୂଳ, ହୁମାର ବିମଳେଶ୍ୱରଙ୍କ ମନ୍ଦିର ଓ ଖୋର୍ଦ୍ଧା ଜିଲ୍ଲା ଜଙ୍କିଆ ନିକଟ ମଲାଗୁଣି ନଦୀ କୂଳର ଜଳେଶ୍ୱର ମନ୍ଦିର, ଭୂମିମଧ୍ୟରେ ଜଳ ସ୍ରୋତର ପ୍ରଭାବଯୋଗୁ ବକ୍ର ହୋଇ ପଡ଼ିଛି ।

ମନୁଷ୍ୟକୃତ କାରଣ ମଧ୍ୟରୁ, ପୂର୍ବେ ଯୁଦ୍ଧ ଓ ଗୋଷ୍ଠୀ ବିବାଦରେ ମନ୍ଦିରମାନଙ୍କର ବହୁ କ୍ଷତି ଘଟିଛି । କିନ୍ତୁ ବର୍ତ୍ତମାନ ଏହି ପ୍ରକାର ସମ୍ଭାବନା ନଥିଲେହେଁ, ନରାଧମମାନଙ୍କ ଦ୍ୱାରା ମନ୍ଦିରର ବହୁ କ୍ଷତି ହୋଇଥାଏ । କେତେକ ଦୁଷ୍ଟ ପ୍ରକୃତିର ଲୋକ ଅଯଥାରେ ମନ୍ଦିରର ଅଙ୍ଗ ପ୍ରତ୍ୟଙ୍ଗ ଭାଙ୍ଗୁଥିବା ବେଳେ ଚୋରମାନେ ସୁନ୍ଦର ମୂର୍ତ୍ତିଗୁଡ଼ିକୁ ମନ୍ଦିର ଦେହରୁ କାଢ଼ିନେଇ ଦେଶ ବିଦେଶରେ ବିକ୍ରୀ କରି ଦିଅନ୍ତି । ଅନ୍ୟ କେତେକ ବ୍ୟକ୍ତି ମନ୍ଦିର ପରିସରର ସ୍ଥାନ ଜବରଦଖଲ କରି ମନ୍ଦିରକୁ ଅବରୁଦ୍ଧ କରନ୍ତି । କେତେକ ମନ୍ଦିର ନିକଟରେ ମଳତ୍ୟାଗ କରି କିମ୍ବା ପାଇଖାନା କରି ବ୍ୟବହାର କରିବା ଭଳି ପାପ କାର୍ଯ୍ୟରୁ ମଧ୍ୟ କ୍ଷାନ୍ତ ହୁଅନ୍ତି ନାହିଁ । କେତେକ ସ୍ୱାର୍ଥାନ୍ୱେଷୀବ୍ୟକ୍ତି ମନ୍ଦିର ପଥର, ଇଟା ଅପହରଣ କରି ନିଜର ବାସଗୃହ ନିର୍ମାଣରେ ଲଗାଇ ଥାଆନ୍ତି । ଏହି ସବୁ କାରଣ ବ୍ୟତୀତ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି କେତେକ ବଦାନ୍ୟ ବ୍ୟକ୍ତି ପ୍ରାଚୀନ ମନ୍ଦିରର ସୁରକ୍ଷା କରିବାକୁ ଯାଇ ନିଜର ଅଜ୍ଞତାରେ ମନ୍ଦିରର କ୍ଷତି କରିଥାଆନ୍ତି । ଭୁଲ ଧାରାରେ ପ୍ରାଚୀନ ମନ୍ଦିର ମରାମତି କରିବାଦ୍ୱାରା ମନ୍ଦିରର ମୌଳିକତା ନଷ୍ଟ ହୋଇ ଗୁରୁତର କ୍ଷତି ଘଟିଥାଏ । ସୁଚିନ୍ତିତ ପରିକଳ୍ପନା ବିନା ମନ୍ଦିର ପରିସରରେ ମଣ୍ଡପ, ରୋଷଘର, ବିଶ୍ରାମଗୃହ ଇତ୍ୟାଦି ନିର୍ମାଣ କରି ମନ୍ଦିର ପରିସରର ପରିବେଶ ମଧ୍ୟ ନଷ୍ଟ କରିଥାଆନ୍ତି । ଏପରିକି ମନ୍ଦିରରେ କିମ୍ବା ତା'ର ପରିସରରେ ମାର୍ବଲର ସ୍ମୃତିଫଳକ ଲଗାଇବା ଦ୍ୱାରା ମଧ୍ୟ ମନ୍ଦିରର କ୍ଷତି ଘଟେ ।

ପ୍ରାଚୀନ ମନ୍ଦିରଗୁଡ଼ିକର ରକ୍ଷଣାବେକ୍ଷଣ ନିମନ୍ତେ ସରକାରୀ ସ୍ତରରେ କେନ୍ଦ୍ର ଓ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ରହିଥିବା ସତ୍ତ୍ୱେ ସର୍ବସାଧାରଣ ଏଦିଗରେ ସଚେତନ ଓ ସକ୍ରିୟ ନହେଲେ ଏହି କାର୍ଯ୍ୟରେ ସୁଫଳ ମିଳେ ନାହିଁ । ମନ୍ଦିରର ଚତୁଃପାର୍ଶ୍ୱରୁ ଅଯଥା ବୃକ୍ଷଲତା କାଟି ସଫା କରିବା ସହିତ ମନ୍ଦିର ଉପରେ ବୃକ୍ଷଲତା ଆରମ୍ଭ ହେବାକ୍ଷଣି ତାର ମୂଳ ଉତ୍ପାଟନ କରି, ରହି ଯାଇଥିବା ମୂଳରେ ପ୍ରାଥମିକ ଉପଚାର ସ୍ୱରୂପ ହେଙ୍ଗୁ ଓ ଚୂନର ଏକ ମିଶ୍ରଣ ବ୍ୟବହାର କଲେ ସେଗୁଡ଼ିକ ନଷ୍ଟ ହୋଇଯାଏ । ମନ୍ଦିରକୁ ଛାଇ କରୁଥିବା ସମସ୍ତ ପ୍ରକାର ବୃକ୍ଷ କାଟିଦେବା ଦ୍ୱାରା ମନ୍ଦିର ଶୁଷ୍କରହେ ଏବଂ ଏଥିରେ ଶିଉଳି ଜନ୍ମେ ନାହିଁ । ଯଦି ଅନ୍ୟ କୌଣସି କାରଣରୁ ମନ୍ଦିର ଦେହରେ ଶିଉଳି ଜନ୍ମେ ତାହାକୁ କତା କିମ୍ବା କତା ବ୍ରସ୍ ଦ୍ୱାରା ଘସି ସଫା କରିବା ଉଚିତ୍, କିମ୍ବା ମନ୍ଦିର ଉପରୁ ଏହି ବୃକ୍ଷ, ଲତା ଓ ଶିଉଳିର ବିନାଶ ପାଇଁ ପ୍ରତ୍ନତତ୍ତ୍ୱ ବିଭାଗର ରସାୟନ ବିଶେଷଜ୍ଞଙ୍କ ସହାୟତା ଲୋଡ଼ିବା ବାଞ୍ଛନୀୟ । ମନ୍ଦିର ନିକଟରେ ଥିବା ଅବହେଳିତ

ଗାଡ଼ିଆଗୁଡ଼ିକୁ ପୋତିଦେବା ସହିତ ପ୍ରାଚୀନ ପୁଷ୍କରିଣୀ ଗୁଡ଼ିକ ପୁନରୁଦ୍ଧାର କରି ପରିଷ୍କାର ରଖାଯାଇ ପାରେ । ବଜ୍ରାଘାତରୁ ସୁଉଚ୍ଚ ମନ୍ଦିରମାନଙ୍କୁ ରକ୍ଷାକରିବା ନିମନ୍ତେ ବିଦ୍ୟୁତ୍ ନିୟମ ଅନୁଯାୟୀ ଏକ ତମ୍ବା ପାତିଆ ମନ୍ଦିରର ଚୂଳ ଠାରୁ ଭୂମିକୁ ସଂଯୋଗ କରାଯାଇଥାଏ । ମନ୍ଦିର ଓ ସମୁଦ୍ର ମଧ୍ୟରେ ଥିବା ସ୍ଥାନ ଅର୍ଥାତ୍ ମନ୍ଦିରର ଅନତି ଦୂରରେ ଝାଉଁ ଜଙ୍ଗଲ ସୃଷ୍ଟି କରିବା ଦ୍ୱାରା ଲବଣାକ୍ତ ବାୟୁରୁ ମନ୍ଦିର କେତେକାଂଶରେ ମୁକ୍ତି ପାଇଥାଏ । ବର୍ତ୍ତମାନ ପ୍ରତ୍ନତତ୍ତ୍ୱ ବିଭାଗ ଏକ ପ୍ରକାର ରାସାୟନିକ ପ୍ରଲେପ ମନ୍ଦିର ଦେହରେ ବ୍ୟବହାର କରି ଏହାର ନିରାକରଣ କରୁଛନ୍ତି । ବର୍ଷା ଜଳ ଓ ଲବଣାକ୍ତ ବାୟୁର ପ୍ରଭାବରୁ ରକ୍ଷାକରିବା ସହିତ ମନ୍ଦିରର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ କେତେକ ଗ୍ରାମବାସୀ ମନ୍ଦିର ଦେହରେ ଚୂନ ଧୂଳେଇ ଦିଅନ୍ତି । କିମ୍ବା ରାସାୟନିକ ରଙ୍ଗ ଦିଅନ୍ତି । କିନ୍ତୁ ଏହି ରଙ୍ଗ ପରିବର୍ତ୍ତେ ଗେରୁ ପଥରର ପ୍ରଲେପ ଦେବାଦ୍ୱାରା ମନ୍ଦିରର ସୁରକ୍ଷା ସହିତ ସୌନ୍ଦର୍ଯ୍ୟ ବୃଦ୍ଧି ହୋଇଥାଏ । ଏହି ସବୁ ପଦକ୍ଷେପ ବ୍ୟତୀତ ମନ୍ଦିର ନିକଟରୁ ବର୍ଷାଜଳ ନିଷ୍କାସନର ବ୍ୟବସ୍ଥା ଅପରିହାର୍ଯ୍ୟ । ମନ୍ଦିର ଠାରୁ ଅନ୍ତତଃ ୧୦୦ ମିଟର ପରିସୀମା ମଧ୍ୟରେ କୌଣସି ଘରୋଇ ନିର୍ମାଣ ରହିବା ଅନୁଚିତ୍ । ମନ୍ଦିରର ପରିବେଶ ଆକର୍ଷଣୀୟ କରିବା ନିମନ୍ତେ ପରିସରରେ ସୁପରିକଳ୍ପିତ ଫୁଲ ବଗିଚା କରିବା ବାଞ୍ଛନୀୟ ।

ମନୁଷ୍ୟମାନଙ୍କ ଦ୍ୱାରା ମନ୍ଦିରଗୁଡ଼ିକର ଯେଉଁସବୁ କ୍ଷତି ଘଟେ ତାହା ସରକାରଙ୍କ କଠୋର ନିୟମ, ଦୋଷୀକୁ ଦଣ୍ଡବିଧାନ ତଥା ଲୋକଙ୍କ ଗୋଷ୍ଠୀବଦ୍ଧ ପ୍ରତିରୋଧ ଦ୍ୱାରା ଦୂର କରାଯାଇ ପାରିବ । ସରକାରୀ ପ୍ରତ୍ନତତ୍ତ୍ୱ ବିଭାଗର ବିନା ପରାମର୍ଶରେ ଭାଙ୍ଗିପଡ଼ିଥିବା କୌଣସି ପ୍ରାଚୀନ ମନ୍ଦିରର ମରାମତି କିମ୍ବା ପୁନରୁଦ୍ଧାର କାର୍ଯ୍ୟ ସର୍ବସାଧାରଣ ନିଜ ଇଚ୍ଛାମତେ କରିବା ଉଚିତ୍ ନୁହେଁ । ଏଠାରେ ମନ୍ଦିରଟି ପୂର୍ବ ମୌଳିକତା ରକ୍ଷା କରି ମରାମତି କରିବା ମୁଖ୍ୟଲକ୍ଷ୍ୟ ହେବା ଆବଶ୍ୟକ । ଏପରି ସ୍ଥଳେ କେବଳ ଅଭିଜ୍ଞ ପ୍ରତ୍ନତତ୍ତ୍ୱବିତ୍‌ମାନେ ସାବଧାନତାର ସହିତ ଭଗ୍ନ ମନ୍ଦିରର ଖଣ୍ଡ ବିଖଣ୍ଡିତ ଅଂଶକୁ ସଠିକଭାବେ ଚିହ୍ନିତ କରି ପୁନଃନିର୍ମାଣବେଳେ ସେଗୁଡ଼ିକୁ ଯଥା ସ୍ଥାନରେ ସ୍ଥାନୀତ କରିବା ନିମନ୍ତେ ଶିଳ୍ପୀ ବା କାରିଗରମାନଙ୍କୁ ନିର୍ଦ୍ଦେଶ ଦେଇଥାଆନ୍ତି ଏବଂ ଅଭିଜ୍ଞ ଇଞ୍ଜିନିୟରମାନେ ବୈଷୟିକ ନିର୍ମାଣ କୌଶଳର ପରାମର୍ଶ ଦେଇ ମନ୍ଦିରଟି ଦିର୍ଘସ୍ଥାୟୀ କରିବା ନିମନ୍ତେ ଚେଷ୍ଟା କରନ୍ତି । ଏଥିରେ ମନ୍ଦିରର ସ୍ଥପତି ବା କାରିଗରମାନଙ୍କ ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ସ୍ୱାଧୀନତାର ପୂର୍ବବର୍ତ୍ତୀ ସମୟ ଅର୍ଥାତ୍ ବ୍ରିଟିଶ୍ ଶାସନ ସମୟରେ ଓଡ଼ିଶା ତଥା ଭାରତର ବହୁ ପ୍ରାଚୀନ କୀର୍ତ୍ତି ପୁନରୁଦ୍ଧାର, ମରାମତି ଓ ସଂରକ୍ଷୀତ ହୋଇଛି । ସେତିକିବେଳେ ମରାମତି, ନିର୍ମାଣ ସମୟରେ ମନ୍ଦିର ଦେହର କଳାକୃତିପୂର୍ଣ୍ଣ ଯେଉଁ ପଥରଖଣ୍ଡ ପ୍ରାପ୍ତ ହେଉନଥିଲା, ସେହି ପ୍ରକାର କଳାକୃତି ଖୋଦନ ଏକ ପ୍ରକାର ଅସମ୍ଭବ କାର୍ଯ୍ୟ ଭାବି ଇଂରେଜମାନେ ସେହି ସ୍ଥାନରେ ଏକ ସାଧା ପଥର ଖଣ୍ଡ ସଂଯୋଗ କରୁଥିଲେ । ବାସ୍ତବରେ ଦେଖିବାକୁ ଗଲେ ସେତେବଳେ ରାଜକୀୟ ପୃଷ୍ଠପୋଷକତା ବିନା ପଥର କାରୁକଳା ଶିଳ୍ପୀମାନେ ସୁପ୍ତ ହୋଇ ପଡ଼ିଥିଲେ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ପଥର କାରୁକଳା ଓ ମୂର୍ତ୍ତି କଳାର ଆଦର ବଢ଼ିଲା । ପାରମ୍ପରିକ ଶିଳ୍ପୀମାନେ ନିଜ ମୌଳିକ ପେଷା ଗ୍ରହଣ କରି ଅର୍ଥ ଉପାର୍ଜନ କରିବାକୁ ସକ୍ଷମ ହେଲେ । ଏହି ପରିସ୍ଥିତିରେ ଶିଳ୍ପୀ ସଂଖ୍ୟା ବୃଦ୍ଧି ଘଟିବା ସଙ୍ଗେ ସଙ୍ଗେ ବହୁ ଦକ୍ଷ ଓ କୁଶଳୀ କାରିଗର ସୃଷ୍ଟି ହେଲେଣି । ତେବେ ଦେଶ ସ୍ୱାଧୀନ ପରେ ମଧ୍ୟ ଭାରତୀୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ପୂର୍ବୋକ୍ତ ଧାରାରେ ପ୍ରାଚୀନ କୀର୍ତ୍ତିର ମରାମତି ବା ସଂରକ୍ଷଣ କାର୍ଯ୍ୟ କରି ଆସୁଛନ୍ତି ।



ସାଧା ପଥର ଦେଇ ମରାମତି କରାଯାଇଥିବା ପ୍ରାଚୀନ ମନ୍ଦିରର ସଂରକ୍ଷଣ କାର୍ଯ୍ୟ



କିଛି ବର୍ଷ ପୂର୍ବେ ଶ୍ରୀକ୍ଷେତ୍ର ପୁରୀରେ ପାରମ୍ପରିକ ପଥର ଶିଳ୍ପୀମାନଙ୍କର ଏକ ସମ୍ମିଳନୀ ହୋଇଥିଲା । ଘଟଣାକ୍ରମେ ସ୍ୱୟଂ ଲେଖକ ସେଠାରେ ଉପସ୍ଥିତ ଥିଲେ । କାର୍ଯ୍ୟକ୍ରମର ବିଭିନ୍ନ ପ୍ରସଙ୍ଗ ଆଲୋଚନା ବେଳେ ଜଣେ ବୟୋବୃଦ୍ଧ ଶିଳ୍ପୀ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପସ୍ଥାପନ କରିଥିଲେ । ସେ କହିଲେ, ''ଆମେ ଦେଖୁଛୁ ସରକାର ପ୍ରାଚୀନ ମନ୍ଦିର ମରାମତି ବେଳେ ଯେଉଁ କାରୁକାର୍ଯ୍ୟ ପୂର୍ଣ୍ଣ ପଥର ଯଥା ସ୍ଥାନରେ ନାହିଁ, ସେଠାରେ ଖଣ୍ଡିଏ ସାଧା ପଥର ଲଗାଇ ଦେଉଛନ୍ତି । ସମୟାନୁକ୍ରମେ ମନ୍ଦିରର ଅଙ୍ଗପ୍ରତ୍ୟଙ୍ଗ ଭାଙ୍ଗୁଥିବ ଏବଂ ସରକାର ଯଦି ଏହି ପରି, ସେହି ସ୍ଥାନରେ ଖଣ୍ଡିଏ ଖଣ୍ଡିଏ ସାଧା ପଥର ଲଗାଉଥିବେ ତେବେ କିଛିକାଳ ପରେ ମନ୍ଦିରଗୁଡ଼ିକ ବିକୃତ ହୋଇ ପଡ଼ିବ ।'' ଶିଳ୍ପୀଙ୍କ ଏହି ଉକ୍ତି ବାସ୍ତବରେ ଚିନ୍ତାର ବିଷୟ । ବର୍ତ୍ତମାନ ପଥର ଖୋଦେଇରେ ଦକ୍ଷ ଶିଳ୍ପୀଙ୍କର ଅଭାବ ନାହିଁ । ଏଣୁ ମରାମତିବେଳେ ମନ୍ଦିର ଦେହରେ ଲଗାଯାଉଥିବା ସାଧା ପଥରରେ ଉପଯୁକ୍ତ ନକ୍ସା ଉତ୍କୀର୍ଣ୍ଣ କରାଯାଇପାରେ । କେତେକ ମୂର୍ତ୍ତିର ଏକ ଅଂଶ ଭାଙ୍ଗିଥାଏ । ଏହି କ୍ଷେତ୍ରରେ ତା'ର ମୌଳିକତା ନଷ୍ଟ ନକରି, ସାବଧାନତାର ସହ ମରାମତି କରାଯାଇପାରେ । କିନ୍ତୁ ମୂର୍ତ୍ତିକଳାର ପ୍ରସଙ୍ଗ ଭିନ୍ନ । ମନ୍ଦିରଗାତ୍ରରୁ ସମ୍ପୂର୍ଣ୍ଣ ଉଭେଇ ଯାଇଥିବା ମୂର୍ତ୍ତିଟିର ପୂର୍ବ ମୂର୍ତ୍ତିତତ୍ତ୍ୱ, ଭାବ ଭଙ୍ଗିକୁ କେବଳ ଅନୁମାନ କରି ନିର୍ମାଣ କରିବା ଉଚିତ୍ ହେବ ନାହିଁ । ପ୍ରାଚୀନ କୀର୍ତ୍ତି ବା ମନ୍ଦିରମାନଙ୍କର ସଂରକ୍ଷଣ ନିମନ୍ତେ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କ ସ୍ୱତନ୍ତ୍ର ନିୟମ ରହିଛି । ସେ ବିଷୟରେ ସର୍ବସାଧାରଣ ଜାଣିବା ବାଞ୍ଛନୀୟ ।

●●●

# ନାଗର ଶୈଳୀ ଓ କଳିଙ୍ଗ ମନ୍ଦିର ସ୍ଥାପତ୍ୟ

କଳିଙ୍ଗରେ ମନ୍ଦିର ନିର୍ମାଣ ପ୍ରକ୍ରିୟାର ପ୍ରାରମ୍ଭ ନିଜସ୍ୱ ହୋଇଥିଲେହେଁ ଅଳ୍ପକାଳ ପରେ ଏହାର ଶିଳ୍ପୀମାନେ ସର୍ବଭାରତୀୟ ନାଗର ବା ପ୍ରାସାଦ ଶୈଳୀର ବହୁ ମୌଳିକତାକୁ ଗ୍ରହଣ କରିଥିବା ଦେଖାଯାଏ । ଏହି ଶୈଳୀ ମୁଖ୍ୟତଃ ଉତ୍ତରଭାରତ, ମଧ୍ୟଭାରତ, ଉତ୍ତର-ପଶ୍ଚିମ ଓ ଦକ୍ଷିଣ ପଶ୍ଚିମ ଭାରତର ବହୁ ଅଞ୍ଚଳରେ ପ୍ରଚଳିତ । ତେବେ ଖ୍ରୀ: ୬ଷ୍ଠ-୮ମ ଶତାବ୍ଦୀ ମଧ୍ୟରେ ଭାରତର ଉପରୋକ୍ତ ବହୁସ୍ଥାନରେ ଏକାଧିକ କୋଠରୀ ବିଶିଷ୍ଟ ବହୁ ବୃହଦାକାର ମନ୍ଦିର ନିର୍ମାଣ ହୋଇଥିବା ବେଳେ ଏହି ସମୟରେ କଳିଙ୍ଗରେ ନିର୍ମିତ ମନ୍ଦିରଗୁଡିକ ଅପେକ୍ଷାକୃତ ସରଳ ଓ ଏକ କିମ୍ବା ଦୁଇ କୋଠରୀ ବିଶିଷ୍ଟ ଅଟେ । କିନ୍ତୁ କଳିଙ୍ଗର ଶିଳ୍ପୀମାନେ କେତେକ ମୁଖ୍ୟ ଶାସ୍ତ୍ରୀୟ ମୌଳିକତାକୁ ରକ୍ଷା କରିବା ସହିତ ନିର୍ମାଣଗୁଡ଼ିକୁ ସୁପରିକଳ୍ପିତ ଓ ନିଜସ୍ୱ ଶୈଳୀରେ ଉପସ୍ଥାପିତ କରିଥିବା ଦ୍ୱାରା ଏହା ଅଧିକ ଆକର୍ଷଣୀୟ ହେବା ସହିତ ଏକ ଭିନ୍ନ ଶୈଳୀ ଭାବେ ସ୍ୱୀକୃତି ଲାଭକଲା । ଏଗୁଡ଼ିକର ନିର୍ମାଣରେ ନାଗର ଶୈଳୀର ବଳିଷ୍ଠ ପ୍ରଭାବ ସହିତ ମଣ୍ଡନକୃତି ଓ ମୂର୍ତ୍ତିକଳାରେ ମଧ୍ୟ ସାମାନ୍ୟ ଭିନ୍ନତା ସହିତ ବହୁ ନକ୍ସା ଓ ଧାରା ପ୍ରତିଫଳିତ ହୋଇଥିବା ଦେଖାଯାଏ ।

ଦକ୍ଷିଣ-ପଶ୍ଚିମାଞ୍ଚଳ, ଅହିହୋଲର ଖ୍ରୀ: ୭ମ-୮ମ ଶତାବ୍ଦୀରେ ନିର୍ମିତ, ଦୁର୍ଗାମନ୍ଦିର, ହୁଚ୍ଚାମାଲ୍ଲିଗୁଡି ଶିବମନ୍ଦିର ଓ ଅନ୍ୟ କେତେକ ଛୋଟ ମୁଖ୍ୟ ଦେଉଳଗୁଡିକର ବାଡ଼ ଓ ଗଣ୍ଡିର ନିର୍ମାଣ କଳିଙ୍ଗ ମନ୍ଦିର ଶୈଳୀ ସହିତ ବହୁ ଭାବରେ ସମତା ରକ୍ଷାକରେ । ପଶ୍ଚିମଭାରତର ପଟ୍ଟାଡୋକଲ ଠାରେ ଥିବା ଜମ୍ବୁଲିଙ୍ଗ ମନ୍ଦିର, ଗଲାଗନାଥ ମନ୍ଦିର ଓ ପାପନାଥ ଶିବମନ୍ଦିରର ମୌଳିକ ନିର୍ମାଣ ଶୈଳୀ ତଥା ମଣ୍ଡନକୃତିର ପ୍ରଭାବ କଳିଙ୍ଗ ମନ୍ଦିର ସ୍ଥାପତ୍ୟରେ ସୁସ୍ପଷ୍ଟ । ତେବେ ଏହି ସମୟରେ ନିର୍ମିତ କଳିଙ୍ଗ ମନ୍ଦିରଗୁଡିକର ବକ୍ରତା, ମସ୍ତକ ଭାଗର ଅଁଳା, କଳସ ଇତ୍ୟାଦି ସୁପରିକଳ୍ପିତ ଓ ସନ୍ତୁଳିତ ହୋଇଥିବାରୁ ଅପେକ୍ଷାକୃତ ସୁନ୍ଦର । ମଧ୍ୟଯୁଗରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟର ନିଜସ୍ୱ ଶୈଳୀରେ ବିକାଶ ଘଟିଥିବା ବେଳେ ଏହା ପୂର୍ବୋକ୍ତ ସ୍ଥାନର ମନ୍ଦିର ଶୈଳୀଠାରୁ ଅଧିକ ପୃଥକ୍ ମନେହୁଏ । ଏହି ସମୟରେ ମଧ୍ୟଭାରତର ଖଜୁରାହୋରେ ଉଚ୍ଚ ପୀଠ ଉପରେ ନିର୍ମିତ ବହୁତଳ ଶୈଳୀର ମନ୍ଦିରଗୁଡିକ କଳିଙ୍ଗ ମନ୍ଦିର ଶୈଳୀ ଠାରୁ ବହୁ ଭାବରେ ପୃଥକ୍ ହୋଇଥିବା ସତ୍ତ୍ୱେ ଅଳ୍ପକେତେକ ମୌଳିକତା ଉଭୟ ଅଞ୍ଚଳର ମନ୍ଦିରରେ ପରିଲକ୍ଷିତ ହୁଏ । ଖ୍ରୀ: ୧୧ଶ ରୁ ଖ୍ରୀ: ୧୪ଶ ଶତାବ୍ଦୀ ମଧ୍ୟରେ ନିର୍ମିତ ଗୁଜୁରାଟ ଓ ରାଜସ୍ଥାନର କେତେକ ମନ୍ଦିର କଳିଙ୍ଗ ମନ୍ଦିର ଶୈଳୀ ସହିତ ବହୁ ସମତା ରକ୍ଷା କରିଥିବା ଦେଖାଯାଏ । ରାଜସ୍ଥାନ, ଓସିଆଁର ଖ୍ରୀ: ୧୨ଶ ଶତାବ୍ଦୀରେ ନିର୍ମିତ ହରିହର ତଥା ଅନ୍ୟକେତେକ ମନ୍ଦିର ମୁଖ୍ୟ ଦେଉଳ କଳିଙ୍ଗର ରେଖ ଶୈଳୀ ସହିତ ବହୁଭାବରେ ସମତା ରକ୍ଷା କରୁଥିବା ବେଳେ ଗୁଜୁରାଟର ସୋମନାଥପୁର ଠାରେ ଥିବା କେଶବ ମନ୍ଦିରର ମୁଖ୍ୟ ଦେଉଳ, ମଧ୍ୟଯୁଗୀୟ କଳିଙ୍ଗର ପୀଢ଼ ଶୈଳୀ ଦ୍ୱାରା ପ୍ରଭାବିତ । ମଧ୍ୟଭାରତର ଶିରିପୁର ଠାରେ ଥିବା ଲକ୍ଷ୍ମଣ ମନ୍ଦିରର କେତେକ ମୌଳିକତା କଳିଙ୍ଗ ମନ୍ଦିରଗୁଡ଼ିକରେ



ବିଶ୍ୱବ୍ରହ୍ମା ମନ୍ଦିର, ଆଲମ୍ପୁର କର୍ଣ୍ଣାଟକ



ଏକ ମଣ୍ଡନକୃତି, ଗଲଗନାଥ ମନ୍ଦିର,
ପଟ୍ଟାଡୋକଲ



ଶିବମନ୍ଦିର, ରୋଡା, ରାଜସ୍ଥାନ



ବିଶ୍ୱବ୍ରହ୍ମା ମନ୍ଦିରର ମଣ୍ଡନକୃତି

ମଧ ଦୃଷ୍ଟି ଗୋଚର ହୁଏ । ଏହା ସହିତ ରାଣୀପୁର-ଝରିଆଲ୍‌ର ଇନ୍ଦ୍ରଲାଥ ମନ୍ଦିର ତୁଳନୀୟ । ସେହିପରି ମଧ୍ୟପ୍ରଦେଶ ସରେଇପାଲ୍ଲୀ, ବିଶ୍ୱେଶ୍ୱର ମନ୍ଦିରର ଆକାର ପ୍ରକାର ସହିତ ମୁଖଲିଙ୍ଗମ୍‌ର, ସୋମେଶ୍ୱର ମନ୍ଦିର ଓ ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ, ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱରଙ୍କ ଦେଉଳର ସମତା ରହିଛି । ଦେଉଳର ମୁଖ୍ୟ ନିର୍ମାଣ ବ୍ୟତୀତ ନାଗର ଶୈଳୀ ମନ୍ଦିରମାନଙ୍କ ମଣ୍ଡନକୃତି ଓ ମୂର୍ତ୍ତିକଳା ଉପସ୍ଥାପନାରେ ମଧ ସର୍ବଭାରତୀୟ ସ୍ତରରେ ଅନେକ ସମତା ଦେଖାଯାଏ । ମଧ ପ୍ରଦେଶର ଜୟତୀ, ଶିରିପୁର ଓ ସରେଇପାଲ୍ଲୀ ମନ୍ଦିରଗୁଡ଼ିକର ବାଡ଼ର ମଣ୍ଡନକୃତି ଭୁବନେଶ୍ୱରର ମୁକ୍ତେଶ୍ୱର ଓ ଗୌରୀ ମନ୍ଦିରର ମଣ୍ଡନ ଧାରା ସହିତ ତୁଳନୀୟ । ରୋଡା ଓ ଆଲାମପୁରର କେତେକ ମନ୍ଦିର ଗଣ୍ଡିରେ ବହୁଳଭାବେ ରହିଥିବା ଚୈତ୍ୟପଦକ ନକ୍‌ସା ଭଳି ବୁଢ଼ୀକୋମନାର ପାତାଳେଶ୍ୱର ମନ୍ଦିର, ବୌଦ ନିକଟ ଗନ୍ଧରାଡ଼ିର ଶିବ ଓ ବିଷ୍ଣୁ ଯୁଗଳ ମନ୍ଦର ଓ ଗଞ୍ଜାମ ଜିଲ୍ଲା ବଡ଼ଗାଁର ପ୍ରାଚୀନ ମନ୍ଦିର ମାନଙ୍କରେ । ମନ୍ଦିର ଦେହରେ ଥିବା ଏକ ପ୍ରକାର ଜ୍ୟାମିତିକ ବକ୍ରମସ୍ତକ ନକ୍‌ସା ଭୁବନେଶ୍ୱରର ମୁକ୍ତେଶ୍ୱର ସମେତ ଖଜୁରାହୋର କେତେକ ମନ୍ଦିର ଓ ଆଲମ୍‌ପୁରର ବିଶ୍ୱବ୍ରହ୍ମା ମନ୍ଦିରରେ ରହିଛି । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର, ଗୌରୀ ଦେବୀଙ୍କ ମନ୍ଦିର ଓ ଜଳୌକାର ପଞ୍ଚପାଣ୍ଡବ ମନ୍ଦିର ଦେହରେ ଦେଖାଯାଉଥିବା ବକ୍ରମୁଣ୍ଡି ଭଳି ଅନେକ ନକ୍‌ସା ରାଜସ୍ଥାନ, ଓସିଆଁର କେତେକ ମନ୍ଦିର, ପାଲେରିର ସିଦ୍ଧେଶ୍ୱର ମନ୍ଦିର, ଗୟସପୁରର ମାଲାଦେବୀ ମନ୍ଦିର ତଥା ଗୁଜରାଟ, ରୋଡର କେତେକ ମନ୍ଦିରରେ ଦେଖାଯାଏ । ଶିରିପୁର ଲକ୍ଷ୍ମଣ ମନ୍ଦିରର ରାହାପାଗ ଶୈଳୀ ସହିତ ଗନ୍ଧରାଡ଼ି, ସଦ୍ଧେଶ୍ୱର ମନ୍ଦିର ତଥା ପୁରୀଜିଲ୍ଲା ବୟାଳିସି ବାଟି ଗ୍ରାମର ଗଙ୍ଗେଶ୍ୱରୀ ଦେବୀ ମନ୍ଦିରର ରାହାର ଉପସ୍ଥାପନା ଶୈଳୀ ତୁଳନୀୟ । ମନ୍ଦିର ଦ୍ୱାରବନ୍ଧର ମଣ୍ଡନକୃତି ଓ ଦ୍ୱାରପାଳ ମୂର୍ତ୍ତିଗୁଡିକର ଉପସ୍ଥାପନା ଶୈଳୀ, ଭୁବନେଶ୍ୱରର ଶିଶିରେଶ୍ୱର, ମୁକ୍ତେଶ୍ୱର, ତାଳେଶ୍ୱର ଓ ମୁଖଲିଙ୍ଗମ୍‌ର ମଧୁକେଶ୍ୱର ସହିତ ତାଲା, ଓ ଦେଓଘରର କେତେକ ମନ୍ଦିରର କୃତି ବହୁ ଭାବରେ ସମତା ରକ୍ଷାକରେ । ଏହିସବୁ ଉଦାହରଣରୁ ସୂଚିତ ହୁଏ ଯେ ତତ୍‌କାଳୀନ ସ୍ଥପତି ଓ ଶିଳ୍ପୀମାନେ ମନ୍ଦିର ନିର୍ମାଣ କ୍ଷେତ୍ରରେ ବାସ୍ତୁଶାସ୍ତ୍ରର କେତେକ ନିର୍ଦ୍ଦିଷ୍ଟ ମୌଳିକତାକୁ ନିଷ୍ଠାର ସହିତ ଅନୁସରଣ କରିବା ବ୍ୟତୀତ ନିଜସ୍ୱ ସୃଜନଶୀଳତା ପ୍ରୟୋଗରେ ସ୍ୱାଧୀନ ଥିଲେ । ଏହା ବ୍ୟତୀତ ଭାବର ଆଦାନ ପ୍ରଦାନ ନିମନ୍ତେ ବିଭିନ୍ନ ତୀର୍ଥସ୍ଥାନ ଭ୍ରମଣ କରୁଥିଲେ ।

କଳିଙ୍ଗରେ ଖ୍ରୀ: ୬ଷ୍ଠ-୭ମ ଶତାବ୍ଦୀ ଠାରୁ ଖ୍ରୀ: ୧୩ଶ-୧୪ଶ ଶତାବ୍ଦୀ ମଧରେ ବିଭିନ୍ନ ସ୍ଥପତି ଓ ଶିଳ୍ପୀ ଗୋଷ୍ଠୀ ବିଭିନ୍ନ ସ୍ଥାନରେ ବହୁ ମନ୍ଦିର ନିର୍ମାଣ କରିଛନ୍ତି । ପ୍ରତ୍ୟେକ ଗୋଷ୍ଠୀ କଳିଙ୍ଗର କେତେକ ସ୍ଥାନୀୟ ଶୈଳୀକୁ ଅନୁସରଣ କରିବା ବ୍ୟତୀତ ନିଜସ୍ୱ ଚିନ୍ତାଧାରା ଓ ସୃଜନଶୀଳତାର ପ୍ରୟୋଗ ଦ୍ୱାରା ପ୍ରତ୍ୟେକ ମନ୍ଦିର ଅନ୍ୟ ଠାରୁ ଭିନ୍ନ ଦେଖାଯାଏ ଏବଂ ପ୍ରତ୍ୟେକ ନିର୍ମାଣରେ କିଛି ନୂତନତ୍ୱ ଦେଖିବାକୁ ମିଳେ । ଏହି ପୁସ୍ତକରେ ଦେଉଳର ଅଙ୍ଗ ପ୍ରତ୍ୟଙ୍ଗ ଓ ଅନ୍ୟାନ୍ୟ ମଣ୍ଡନକୃତିର କେତେକ ସାଧାରଣ ଉଦାହରଣ ଦର୍ଶାଯାଇଥିବା ବେଳେ ଅନ୍ୟ କେତେକ ମନ୍ଦିରରେ ଭିନ୍ନ ପ୍ରକାର ନିର୍ମାଣ ଓ ଉଦାହରଣ ଦେଖିବାକୁ ମିଳିବା ସ୍ୱାଭାବିକ ।



# କଳିଙ୍ଗ ମନ୍ଦିର ସ୍ଥାପତ୍ୟର ପରିଭାଷା ଓ ତା'ର ସମସ୍ୟା

କଳିଙ୍ଗ ମନ୍ଦିର ସ୍ଥାପତ୍ୟର ପରିଭାଷା ଅର୍ଥାତ୍ ମନ୍ଦିରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ନାମ ବିଷୟ ଏକ ସମସ୍ୟା କହିଲେ ଭୁଲ ହେବନାହିଁ । ବିଭିନ୍ନ ଶିଳ୍ପପୋଥିରେ ଉଲ୍ଲେଖ ଥିବା ଓ ଶିଳ୍ପୀମାନେ ବ୍ୟବହାର କରୁଥିବା ଅଳ୍ପ କେତେକ ଶବ୍ଦ ବା ନାମରେ ସମତା ରହୁଥିବା ବେଳେ ବହୁନାମରେ ମତପାର୍ଥକ୍ୟ ଦେଖାଯାଏ । ଏହା ବ୍ୟତୀତ ବହୁ ଉଲ୍ଲେଖଯୋଗ୍ୟ ଅଙ୍ଗ ପ୍ରତ୍ୟଙ୍ଗର ଉପଯୁକ୍ତ ନାମକରଣ ପ୍ରାପ୍ତ ହୁଏ ନାହିଁ । ଏହାର ଏକ ଉଦାହରଣ ଏହି ପୁସ୍ତକର ରେଖଦେଉଳ ଅଧ୍ୟାୟରେ ଉଲ୍ଲେଖ କରାଯାଇଛି ।ଏହିପରି ଅନେକ ଦୃଷ୍ଟାନ୍ତ ଦେଶ ସ୍ୱାଧୀନ ପୂର୍ବରୁ ଓଡ଼ିଶାର ମନ୍ଦିର କଳା ଓ ସ୍ଥାପତ୍ୟ ଉପରେ ଲିଖିତ କେତେକ ପୁସ୍ତକରେ ଦେଖିବାକୁ ମିଳେ । ଏହି ଅସୁବିଧାର ସମ୍ମୁଖୀନ ହୋଇ ପରବର୍ତ୍ତୀ ସମୟର କେତେକ ଗବେଷକ ଗବେଷିକା ଓଡିଶାର ମନ୍ଦିର ସ୍ଥାପତ୍ୟ ଉପରେ ଲିଖିତ ତାଙ୍କ ପୁସ୍ତକମାନଙ୍କରେ ଉତ୍ତର ଓ ଦକ୍ଷିଣଭାରତୀୟ ମନ୍ଦିର ଅଙ୍ଗ-ପ୍ରତ୍ୟଙ୍ଗର ବହୁ ନାମ ବା ପରିଭାଷା ବ୍ୟବହାର କରିଛନ୍ତି ।

ଗତ କିଛି ବର୍ଷ ପୂର୍ବେ ସଙ୍କଳିତ ଓ ପ୍ରକାଶିତ ଓଡିଶାର ଅନ୍ୟ ଏକ ଶିଳ୍ପପୋଥି 'ଶିଳ୍ପରତ୍ନକୋଷ'ରେ ମନ୍ଦିର ଅଙ୍ଗ ପ୍ରତ୍ୟଙ୍ଗର କେତେକ ଭିନ୍ନ ଶବ୍ଦ ଉଲ୍ଲେଖ ଥିବାରୁ ଏହି ବିଷୟ ଅଧିକ ଜଟିଳ ମନେହୁଏ । ଏଣୁ ଏହାର ସମାଧାନ ନିମନ୍ତେ ଓଡ଼ିଶାର ଐତିହାସିକ, ପତ୍ନତତ୍ତ୍ୱବିତ୍, ସ୍ଥପତି ଓ ଶିଳ୍ପୀମାନଙ୍କର ଏକ ବିଚାର ଆଲୋଚନା ପରେ କଳିଙ୍ଗ ମନ୍ଦିର ସ୍ଥାପତ୍ୟର ଏକ ସିଦ୍ଧ ଓ ସମ୍ପୂର୍ଣ୍ଣ ଭାଷାକୋଷ ପ୍ରକାଶ ପାଇବା ଉଚିତ୍ । ଯାହାକି ଗବେଷକ, ଗବେଷିକା, ସ୍ଥପତି ତଥା ଶିଳ୍ପୀମାନଙ୍କ ନିମନ୍ତେ ଏକ ଉପଯୁକ୍ତ ସହାୟକ ପୁସ୍ତକ ହେବ । ତେବେ ବର୍ତ୍ତମାନ, ଏହି ପୁସ୍ତକରେ ଅଧିକାଂଶ ପ୍ରଚଳିତ ଶବ୍ଦକୁହିଁ ବ୍ୟବହାର କରାଯାଇଛି ।

## ମନ୍ଦିର ସ୍ଥାପତ୍ୟ ସମ୍ପର୍କୀୟ ଶବ୍ଦାର୍ଥ

| | |
|---|---|
| ଅର୍ଘପଟ | ଶିବଲିଙ୍ଗ ସହିତ ଥିବା ଚକ୍ରାକାର ଶକ୍ତିପୀଠ । |
| ଅନୁରାହା | ରାହାପାଗର ଦୁଇ ପାର୍ଶ୍ୱରେ ଥିବା ରେଖଦେଉଳର ଆଲମ୍ବ ଭାଗ । |
| ଅନର୍ଥ ପାଗ | ଅନୁରାହାକୁ କେତେକ ଅନର୍ଥ କହନ୍ତି । |
| ଅଁଳା | ଅର୍ଥାତ୍ ଆମଳକଶିଳା । ଚତୁଃପାର୍ଶ୍ୱ ଦନ୍ତୁରିତ ହୋଇଥିବା ଚକ୍ରାକାର ନିର୍ମାଣ । ଦେଉଳର ମସ୍ତକ ଭାଗର ଏକ ମୁଖ୍ୟ ଅଙ୍ଗ । |
| ଅଳସକନ୍ୟା | ଅଳସ ଭାଙ୍ଗିବା ଭଙ୍ଗିରେ ଥିବା ନାରୀମୂର୍ତ୍ତି । ଏହାକୁ ଅଳସା ମଧ୍ୟ କୁହାଯାଏ । |
| ଅନ୍ତରା | ଦୁଇ ପାଗକୁ ଅଲଗା ବା ଅନ୍ତର କରୁଥିବା ଗଭୀର ସ୍ଥାନ ବା ଅନ୍ତରାପାଗ । |
| ଅନ୍ତରାଳ | ଦେଉଳ ଓ ମୁଖଶାଳା ମଧ୍ୟରେ ଥିବା ଛୋଟ କୋଠରୀ । ସାଧାରଣତଃ ମଧ୍ୟଭାରତୀୟ ଶୈଳୀ ମନ୍ଦିରମାନଙ୍କ ସହ ଦେଖାଯାଏ । |

| | |
|---|---|
| ଅର୍ଦ୍ଧପାରାୟଣିକ : | ଗୋଟିଏ ଜାନୁ ମାଡ଼ି ଓ ଅନ୍ୟ ଜାନୁ ଟେକି ଭୂମି ଉପରେ ବସିଥିବା ଭଙ୍ଗି । |
| ଅଙ୍ଗଶିଖର | ରେଖଦେଉଳ ଗଣ୍ଡିର ପାଗରେ ଥିବା ରେଖଦେଉଳ ସଦୃଶ କ୍ଷୁଦ୍ର ନିର୍ମାଣ । |
| ଆକାଶଲିଙ୍ଗ | ପ୍ରାଚୀନ ମନ୍ଦିରମାନଙ୍କ ଶିଖରରେ ଥିବା ଶିବଲିଙ୍ଗ ସଦୃଶ ନିର୍ମାଣ । |
| ଆଗମ | ଆଳଙ୍କାରିକ ଲତାର ଚକ୍ରାକାର ସ୍ଥାନ ମଧ୍ୟରେ ପଶୁ, ପକ୍ଷୀ ଥିବା ନକ୍ସା । |
| ଆଗମଲତା | ଲତା ଶୈଳୀର ଏକ ପ୍ରକାର ମଣ୍ଡନକୃତି ବା ନକ୍ସା ମଧ୍ୟରେ ଚକ୍ରାକାର ରଚନା । |
| ଆସନ | ଦେବ, ଦେବୀଙ୍କ ବସିବା ଶୈଳୀ ବା ଆସନ । |
| ଆବରଣଦେବତା : | ମନ୍ଦିରର ପାର୍ଶ୍ୱଦେବତା ବ୍ୟତୀତ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ସ୍ଥାନିତ ହୋଇଥିବା ଅନ୍ୟାନ୍ୟ ଦେବତା ଓ ଉପଦେବତା । |
| ଆଲମ୍ୱ | ଉପରୁ ତଳକୁ ଲମ୍ୱିଥିବା ମଣ୍ଡନକୃତି, ଧାର, ମାଳା ଇତ୍ୟାଦି । |
| ଆୟୁଧ | ଦେବତାମାନେ ହସ୍ତରେ ଧାରଣ କରିଥିବା ପଦାର୍ଥ କିମ୍ୱା ଅସ୍ତ୍ର । |
| ଆଙ୍ଗୁଳ | ପ୍ରାଚୀନ ପଦ୍ଧତିରେ ମନୁଷ୍ୟର ଆଙ୍ଗୁଳି ସମାନ ମାପ । |
| ଉଦ୍ୟତ ସିଂହ | ଲମ୍ଫଦେବା ଭଙ୍ଗିରେ ଥିବା ସିଂହମୂର୍ତ୍ତି । |
| ଉପସ୍ତମ୍ଭ | ବାଡ଼ ଦେହରେ ଲାଗି ରହିଥିବା ସ୍ତମ୍ଭ ସଦୃଶ ନିର୍ମାଣ । |
| ଉପତୋରଣ | ମୁଖ୍ୟ ତୋରଣର ଦୁଇ ପାର୍ଶ୍ୱରେ ଥିବା ଛୋଟ ତୋରଣ । |
| ଉର୍ଦ୍ଧ୍ୱବନ୍ଧନୀ | ଉପର ଭାଗର ବନ୍ଧନୀ ସଦୃଶ ଧାର । |
| ଉର୍ଦ୍ଧ୍ୱଗର୍ଭିକା | ଗବାକ୍ଷ କିମ୍ୱା ପାର୍ଶ୍ୱଦେବତା ଖୋପର ଉପରିଭାଗ । |
| ଉପବିଷ୍ଟ | ବସିବା ଭଙ୍ଗି । |
| କନି | କୋଣ ଥିବା ଧାର । |
| କନିକପାଗ | ଦେଉଳର ବାହାର ପାଖ ଆଲମ୍ୱ କୋଣ । |
| କଳସ | ମାଟି କଳସ ସଦୃଶ ନିର୍ମାଣ, ଦେଉଳ ଉପରେ ଥାଏ । |
| କନ୍ୟା | ଏଠାରେ ନାରୀମୂର୍ତ୍ତି । |
| କିନ୍ନର | ନିମ୍ନ ଶ୍ରେଣୀର ଉପଦେବତା ବା ଗଣ । |
| କିରୀଟ | ମୁକୁଟ ସଦୃଶ ତ୍ରିକୋଣ ମଣ୍ଡନକୃତି କିମ୍ୱା ମୁକୁଟ । |
| କୁଟିଳ | ଜଟିଳ ଭାବେ ଥିବା ଡ଼ାଳି ନକ୍ସା । |
| କୁମ୍ଭସ୍ତମ୍ଭ | ଯେଉଁସ୍ତମ୍ଭ ତଳେ କିମ୍ୱା ଉପରେ କୁମ୍ଭ ନକ୍ସା ଥାଏ । |
| କୁମ୍ଭିକବନ୍ଧ | ଛୋଟ ଛୋଟ କୁମ୍ଭର ଧାର ନକ୍ସା । |
| କୁଞ୍ଚିତ | କୁଞ୍ଚ ହୋଇଥିବା ମଣ୍ଡନକୃତି । |
| କୀର୍ତ୍ତିମୁଖ | ଏକ ରାକ୍ଷସ ମୁଖର ମଣ୍ଡନକୃତି |
| କେତକୀଭରଣା | କେତକୀଫୁଲ ଗଭାରେ ଲଗାଉଥିବା ନାରୀମୂର୍ତ୍ତି । |
| କଳିକାବଳୀ | ଫୁଲର କଢ଼ ସଦୃଶ ଧାଡ଼ିର ଧାର ମଣ୍ଡନକୃତି । |
| କୌତୂହଳ | ସିଂହ ଦେହରେ ଅନ୍ୟ ପଶୁ, ପକ୍ଷୀଙ୍କ ମସ୍ତକ ଲାଗିଥିବା କୌତୂହଳଜନକ ମୂର୍ତ୍ତି । |

| | |
|---|---|
| କାଠଚାଳିଆ | ପୀଢ଼ଦେଉଳର ପିରାମିଡ଼ ସଦୃଶ ଛାତ । |
| ଖାକରା | ଦୁଇପାଖ ଅର୍ଦ୍ଧଗୋଲାକାର ଗଡ଼ାଣିଆଁ ଛାତଥିବା ଏକ ପ୍ରକାର ମନ୍ଦିର ଶୈଳୀ । |
| ଖାକରାମୁଣ୍ଡି | ଖାକରା ଦେଉଳ ସଦୃଶ ମନ୍ଦିର ଦେହରେ ଥିବା ଛୋଟ ନିର୍ମାଣ । |
| ଖୁରା | ଗୋରୁ ପାଦ ବା ଖୁରା ସଦୃଶ ଧାର ନିର୍ମାଣ । |
| ଖୁରାପୀଢ଼ | ଖୁରା ସଦୃଶ ଧାର ଥିବା ନିର୍ମାଣ, ଯାହାକି ପୀଢ଼ ଭଳି ଦେଖାଯାଏ । |
| ଗଜାକ୍ରାନ୍ତ | ହସ୍ତୀକୁ ଆକ୍ରାନ୍ତ କରୁଥିବା ଭଙ୍ଗିରେ ଥିବା ସିଂହମୂର୍ତ୍ତି । |
| ଗଜବିଡ଼ାଳ | ହସ୍ତୀଶୁଣ୍ଢ ଥିବା ଦଣ୍ଡାୟମାନ ସିଂହମୂର୍ତ୍ତି । |
| ଗଜଲକ୍ଷ୍ମୀ | ଲକ୍ଷ୍ମୀଙ୍କୁ ହସ୍ତୀ ଅଭିଷେକ କରୁଥିବା ମୂର୍ତ୍ତି । |
| ଗବାକ୍ଷ | ମନ୍ଦିର ଜଗମୋହନରେ କିମ୍ବା ଭୋଗ ମନ୍ଦିର ଦୁଇ ପାର୍ଶ୍ୱ ବାଡ଼ରେ ଥିବା ଝରକା । |
| ଗର୍ଭଗୃହ | ମୁଖ୍ୟ ଦେଉଳର ଭିତର କୋଠରୀ । |
| ଗର୍ଭମୁଦ | ଦେଉଳ ଗର୍ଭଗୃହର ଭିତର ଛାତ । |
| ଗର୍ଭିକା | ଗବାକ୍ଷ କିମ୍ବା ପାର୍ଶ୍ୱଦେବତାଙ୍କ ଖୋପର ତଳ କିମ୍ବା ଉପର ଭାଗ । |
| ଗଣ୍ଡି | ମୁଖ୍ୟତଃ ରେଖଦେଉଳର ମଧଭାଗକୁ ବୁଝାଏ । ଏହା ବାଡ଼ ଉପରେ ଥାଏ । |
| ଗୁଣ୍ଡିକ | ଗୋଲ, ଗୋଲ ଗୋଟିଥିବା ଧାର ମଣ୍ଡନକୃତି । |
| ଗ୍ରହ | ଜ୍ୟୋତିଷ ଶାସ୍ତ୍ରର ନବଗ୍ରହ । |
| ଗନ୍ଧର୍ବ | ଦେବତାମାନଙ୍କ ସେବକ, ଉପଦେବତା ଶ୍ରେଣୀୟ । |
| ଗୁଳ୍ମ | ଛୋଟ ଛୋଟ ଲତା-ପତ୍ରର ମଣ୍ଡନକୃତି ବା ନକ୍ସା । |
| ଗୁଣ୍ଠନ | ଓଢ଼ଣା ଦେଇଥିବା ନାରୀମୂର୍ତ୍ତି । |
| ଗମ୍ବୁଜ | ଅର୍ଦ୍ଧଗୋଲାକାର ଉପର ଭାଗ ବା ଛାତ । |
| ଗୁମ୍ଫନ | ଗୁଳ୍ମ ଡ଼ାଳି ନକ୍ସା । |
| ଘଟ | କଳସ ବା କୁମ୍ଭ । |
| ଘଣ୍ଟ, ଘଣ୍ଟା | ପୀଢ଼ ଦେଉଳ ଉପରେ ଥିବା ଘଣ୍ଟ ସଦୃଶ ନିର୍ମାଣ । ଏହି ପ୍ରକାର ଛାତ ଥିବା ଜଗମୋହନକୁ ଘଣ୍ଟଶ୍ରୀ ମୋହନ କୁହାଯାଏ । |
| ଘୋଡ଼ାଚକଡ଼ା | ରେଖଦେଉଳ ଗଣ୍ଡି ଉପରେ କିମ୍ବା ପୀଢ଼ଦେଉଳ ପୀଢ଼ଉପରର ଚକ୍ରାକାର ସମତଳ ସ୍ଥାନ । ଏହାଉପରେ ମସ୍ତକଭାଗ ଥାଏ । |
| ଚୈତ୍ୟ-ଗବାକ୍ଷ | ବୌଦ୍ଧ ଚୈତ୍ୟଗୃହ ପ୍ରବେଶଦ୍ୱାର ଉପରେ ଥିବା ଅର୍ଦ୍ଧଗୋଲାକର ଝରକା । |
| ଚୈତ୍ୟପଦକ | ଚୈତ୍ୟଗବାକ୍ଷ ଆକାରର ମଣ୍ଡନକୃତି । |
| ଚମ୍ପକପତ୍ର | ଲମ୍ବ ପତ୍ର ସଦୃଶ ନକ୍ସା, ପୀଢ଼ଦେଉଳ ଘଣ୍ଟ ଉପରେ ଦେଖାଯାଏ । |
| ଚତୁକ | ଚାରି ପାଖୁଡ଼ା ଥିବା ଫୁଲ ନକ୍ସା । |
| ଚାମରା | ଚାମର ଧାରଣ କରିଥିବା ନାରୀମୂର୍ତ୍ତି । |

| | |
|---|---|
| ଛଜା | ବାଡ଼ ବା କାନ୍ଥରୁ ଆଗକୁ ବାହାରିଥିବା ଛୋଟ ଚାଳ ସଦୃଶ ନିର୍ମାଣ ଯାହା ମୁଖ୍ୟତଃ ଛାଇ କରିବା ନିମନ୍ତେ ଉଦ୍ଦିଷ୍ଟ । |
| ଛନ୍ଦ | ଜାଲିଭଳି କିମ୍ବା ବୁଣାଭଳି ଛନ୍ଦା ମଣ୍ଡନକୃତି । |
| ଛନ୍ଦିତା | ଦୁଇ ପାଦ ଓ ଦୁଇ ହସ୍ତ ଛନ୍ଦି ରଖିଥିବା ନାରୀମୂର୍ତ୍ତି । |
| ଜଗମୋହନ | ମୁଖ୍ୟ ଦେଉଳ ସହିତ ସଂଯୋଗ ହୋଇ ରହିଥିବା ଦ୍ୱିତୀୟ କୋଠରୀ । ଏହା ଜନ ସମାବେଶ ନିମନ୍ତେ ଉଦ୍ଦିଷ୍ଟ । |
| ଜାଗ୍ରତ | ଦୁଇ ଗୋଡ଼ରେ ଦଣ୍ଡାୟମାନ ହୋଇ ସମ୍ମୁଖକୁ ଚାହିଁଥିବା ସିଂହ ମୂର୍ତ୍ତି । |
| ଜଂଘ | ମନ୍ଦିର ବାଡ଼ର ମଧ୍ୟଭାଗ । ଏହା ପାଭାଗ ଉପରେ ଥାଏ । |
| ଜଳପତ୍ର | ବରଝାଙ୍ଗି ସଦୃଶ ତିନି ପାଖୁଡା ଥିବା ମଣ୍ଡନକୃତି । |
| ଜାଲି | ଛନ୍ଦଯୁକ୍ତ ବିଭିନ୍ନ ଆକାରର କିମ୍ବା ଜାଲ ଶଦୃଶ ଛିଦ୍ର ଥିବା ନିର୍ମାଣ । |
| ଝରାବଳୀ | ତଳକୁ ଝୁଲିଥିବା ମାଳା ସଦୃଶ ମଣ୍ଡନକୃତି । |
| ଝୁମ୍ପା | ତଳକୁ ଝୁଲିଥିବା ମାଳାର ନିମ୍ନରେ ସଂଯୋଗ ହୋଇଥିବା ଫୁଲ ସଦୃଶ ଭାଗ । |
| ଟାଙ୍କୁ | ପୀଢ଼ଦେଉଳର ପୀଢ଼ମାନଙ୍କ ଧାର ଉପରେ ସମ ବ୍ୟବଧାନରେ ଦିଆଯାଇଥିବା ଛୋଟ ତ୍ରିକୋଣ ନିର୍ମାଣ । |
| ଡମ୍ବରୁଭାଗ | ଉପର ଓ ତଳଭାଗ ସମ୍ମୁଖକୁ ରହିଥିବା ବେଳେ ମଧ୍ୟଭାଗ ଡମ୍ବରୁ ସଦୃଶ ଗଭୀରରେ ଥିବା ନିର୍ମାଣ ବା ଧାର । ଏହାକୁ ଡମ୍ବରୁଗର୍ଭ ମଧ୍ୟ କୁହାଯାଏ । |
| ଡୋରି | ରସି ସଦୃଶ ସରୁ ଧାରର ମଣ୍ଡନକୃତି ବା ଧାର । |
| ଡାଳମାଳିକା | ବୃକ୍ଷର ଏକ ଡାଳକୁ ନିଜ ମସ୍ତକ ଉପରେ ମାଳା ସଦୃଶ ଧାରଣ କରିଥିବା ନାରୀମୂର୍ତ୍ତି । |
| ତ୍ରିକର୍ମ | ତିନି ଧାରର ନିର୍ମାଣ, ଯଥା ପଟି, କନି ଓ ବସନ୍ତ । |
| ତ୍ରିପଟଧାର | ବେକୀ ଉପରେ, ଅମଳକ ତଳେ ଥିବା ତିନି ଧାରର ମଣ୍ଡନକୃତି । |
| ତ୍ରିଭଙ୍ଗ | ତିନି ଭାଙ୍ଗରେ ଛିଡ଼ା ହୋଇଥିବା ମୂର୍ତ୍ତି, କିମ୍ବା ତିନି ଭାଙ୍ଗର ନିର୍ମାଣ । |
| ତ୍ରିରଥ | ଯେଉଁ ରେଖଦେଉଳର ପ୍ରତ୍ୟେକ ପାଖ ଆଲମ୍ବ ଭାବେ ତିନି ଭାଗ ହୋଇଥାଏ । |
| ତୋରଣ | ଦୁଇ ଖମ୍ବ କିମ୍ବା ଉପସ୍ତମ୍ଭ ଉପରେ ଭୂମି ସହିତ ସମାନ୍ତରାଳ କିମ୍ବା ଅର୍ଦ୍ଧଚକ୍ରକାର ଭାଗ ଥିବା ନିର୍ମାଣ । |
| ତୋରଣକନ୍ୟା | ପ୍ରବେଶ ଦ୍ୱାରରେ ଥିବା ନାରୀମୂର୍ତ୍ତି । |
| ତଳପତନ | ଭୂମି ସହିତ ସମ ଉଚ୍ଚତାରେ ଥିବା ମନ୍ଦିରର ପଥର ଚଟାଣ । |
| ତଳବନ୍ଧନୀ | ମନ୍ଦିରର ନିମ୍ନ ଭାଗରେ ଥିବା କୌଣସି ଧାର ଯାହାକି ଚତୁଃପାର୍ଶ୍ୱରେ ରହିଥାଏ । |
| ତଳଗର୍ଭିକା | ପାର୍ଶ୍ୱଦେବତାଙ୍କ ଖୋପ କିମ୍ବା ଗବାକ୍ଷର ତଳ ଭାଗ । |
| ତାଳ | ମୂର୍ତ୍ତିର ମାପ ପଦ୍ଧତି, ଏକ ତାଳ ଯାହାକି ମୂର୍ତ୍ତିର ମୁଖ ସହିତ ସମାନ । |

| | |
|---|---|
| ଦିଗ୍‌ପାଳ | ଏମାନେ ବିଭିନ୍ନ ଦିଗର ରକ୍ଷାକର୍ତ୍ତା, ବୈଦିକ ଦେବତା । ପରବର୍ତ୍ତୀ ସମୟରେ ଉପଦେବତା । |
| ଦ୍ୱିପିଢ଼ା ସିଂହ | ଗୋଟିଏ ମୁଖ ଓ ଦୁଇଟି ପିଢ଼ା ବା ପଛପାଖ ଥିବା ସିଂହମୂର୍ତ୍ତି । |
| ଦର୍ପଣା | ଦର୍ପଣ ଧାରଣ କରିଥିବା ନାରୀମୂର୍ତ୍ତି । |
| ଦ୍ୱିଭଙ୍ଗ | ସାମାନ୍ୟ ଢ଼ଳି, ଦୁଇ ଭାଙ୍ଗରେ ଦଣ୍ଡାୟମାନ କିମ୍ବା ତୋରଣର ଦୁଇ ଭାଙ୍ଗ । |
| ଦ୍ୱାରପାଳ | ପ୍ରବେଶଦ୍ୱାର ଦୁଇ ପାର୍ଶ୍ୱରେ ଥିବା ଦ୍ୱାରରକ୍ଷକ ମୂର୍ତ୍ତି । ଏମାନେ ଗଣ ଶ୍ରେଣୀୟ ଉପଦେବତା । ନାରୀମୂର୍ତ୍ତି ହୋଇଥିଲେ ଦ୍ୱାରପାଳିକା । |
| ଦ୍ୱାରଲଲାଟବିମ୍ବ | ପ୍ରବେଶଦ୍ୱାର ଉପରବନ୍ଧର ସମ୍ମୁଖଭାଗ, ଏହାର ମଧ୍ୟଭାଗରେ ଥିବା ପ୍ରତିମାକୁ ଦ୍ୱାରଲଲାଟବିମ୍ବ-ମୂର୍ତ୍ତି କୁହାଯାଏ । |
| ଦଣ୍ଡ | ଏକ ସଳଖ କାଷ୍ଠ ବା ବାଡ଼ି ଦେବତାଙ୍କ ଆୟୁଧ କିମ୍ବା ସ୍ଥପତିର ମାପବାଡ଼ି । |
| ଦାନ୍ତି | ମନ୍ଦିର ଦେହର ଏକ ତୀକ୍ଷ୍ଣ ଦାନ୍ତ ସଦୃଶ ନିର୍ମାଣ ବା ଧାର । |
| ଦନ୍ତୁରିତ | ଦାନ୍ତ ପରି ଭାଗ ଭାଗ ହୋଇଥିବା ଅଂଶ । |
| ଧ୍ୱଜା | ପତାକା । |
| ଧ୍ୱଜାସ୍ତମ୍ଭ | ପତାକା ବନ୍ଧା ଯାଉଥିବା ସ୍ତମ୍ଭ । |
| ଧନୁଗଣ୍ଠି | ଦୁଇଟି ଧନୁକୁ ବିପରୀତ ଦିଗକୁ ରଖି ଏକତ୍ର ବନ୍ଧା ଯାଇଥିବା ଭଳି ମଣ୍ଡନକୃତି । |
| ନହଚାଳିଆ | ଅନୁଚ୍ଚ ପୀଢ଼ ଥିବା ଦେଉଳର ଛାତ । |
| ନାଗ, ନାଗୀ | ସାଧାରଣତଃ ସର୍ପକୁ ବୁଝାଉଥିଲେହେଁ ମନ୍ଦିର କଳା ଓ ସ୍ଥାପତ୍ୟରେ ଏମାନେ ଉପ ଦେବତା ଅଟନ୍ତି । |
| ନାଗବନ୍ଧ | ଏକାଧିକ ନାଗ ଛନ୍ଦି ହୋଇଥିବା ମଣ୍ଡନକୃତି । |
| ନାଗସ୍ତମ୍ଭ | ନାଗ କିମ୍ବା ନାଗ-ନାଗୀଙ୍କ ମୂର୍ତ୍ତି ସଂଯୋଗ ହୋଇଥିବା ସ୍ତମ୍ଭ କିମ୍ବା ଉପସ୍ତମ୍ଭ । |
| ନାଗପାଶ | ପାଶ ସଦୃଶ ଛନ୍ଦି ହୋଇଥିବା ନାଗମୂର୍ତ୍ତି । ଆୟୁଧ ବିଶେଷ । |
| ନାଟମନ୍ଦିର | ମନ୍ଦିରର ଯେଉଁ କୋଠରୀ ନୃତ୍ୟ, ସଙ୍ଗୀତ ପରିବେଷଣ ନିମନ୍ତେ ଉଦ୍ଦିଷ୍ଟ । |
| ନନ୍ଦୁମୋହନ | ଅଳ୍ପ କେତୋଟି ପ୍ରଶସ୍ତ ପୀଢ଼ ଥିବା ଦେଉଳ । |
| ନାଟମଣ୍ଡପ | ଯେଉଁ ଖମ୍ବଯୁକ୍ତ ମଣ୍ଡପ ନୃତ୍ୟ, ସଙ୍ଗୀତ ପରିବେଷଣ ନିମନ୍ତେ ଉଦ୍ଦିଷ୍ଟ । |
| ନୂପୁରପାଦିକା | ନୂପୁର ପିନ୍ଧୁଥିବା ଭଙ୍ଗିରେ ଥିବା ନାରୀମୂର୍ତ୍ତି । |
| ନବଗ୍ରହ | ନ'ଟି ଗ୍ରହ ଏକତ୍ର ଥିବା ମୂର୍ତ୍ତି । |
| ନବରଥ | ସର୍ବଶ୍ରେଷ୍ଠ ରେଖଦେଉଳ । ଏହାର ପ୍ରତ୍ୟେକ ପାଖରେ ନ' ଗୋଟି ଆଲମ୍ବ ଭାଗ ବା ରଥକ ଥାଏ । |
| ନୋଳି | ଅର୍ଦ୍ଧଗୋଲାକାର ଧାର, ସ୍ଥାପତ୍ୟର ଅଙ୍ଗ ବିଶେଷ । |
| ନିଶାମନ୍ଦିର | ପାର୍ଶ୍ୱଦେବତାଙ୍କ ନିମନ୍ତେ ନିର୍ମିତ ଛୋଟ ମନ୍ଦିର । |
| ନନ୍ଦାବର୍ତ୍ତପାହାଚ | ମନ୍ଦିରର ପ୍ରବେଶ ଦ୍ୱାରରେ ଥିବା ଅର୍ଦ୍ଧଚନ୍ଦ୍ରାକାର ପାହାଚ । |

| | |
|---|---|
| ନନ୍ଦିକମୁଖ | ଅର୍ଦ୍ଧଚକ୍ରାକାର ନକ୍ସା ମଧରେ ଥିବା ମୁଖ । ମଣ୍ଡନକୃତି ବିଶେଷ । |
| ନନ୍ଦିମଣ୍ଡପ | ଯେଉଁ ଛୋଟ ମଣ୍ଡପରେ ଶିବଙ୍କ ବାହନ, ନନ୍ଦି-ବୃଷଭର ମୂର୍ତ୍ତିଥାଏ । |
| ପାଗ | ରେଖଦେଉଳର ଆଲମ୍ବ ଭାଗ, ଯାହା ବାଡ଼ ଓ ଗଣ୍ଡି ଉପରେ ଦେଖାଯାଏ । |
| ପାଟପଥର | ଦେଉଳର ପ୍ରବେଶଦ୍ୱାର ଉପରେ ରହୁଥିବା ଲମ୍ବ ମୁଖ୍ୟପଥର, ଏହାକୁ 'ପାଟ' ମଧ କୁହାଯାଏ । |
| ପଟଳ | ପୀଢ଼ଦେଉଳ ଉପରେ ଏକତ୍ର ଥିବା କେତେକ ପୀଢ଼କୁ ପଟଳ କହନ୍ତି । |
| ପୀଠ | ବେଦୀ ସଦୃଶ ନିର୍ମାଣ, ଯାହା ଉପରେ ମନ୍ଦିର କିମ୍ବା ଦେବତାଙ୍କ ଆସ୍ଥାନ ଥାଏ । |
| ପୀଢ଼ | ପିରାମିଡ଼ ସଦୃଶ ଛାତ ଥିବା ଦେଉଳର ଗଡ଼ାଣିଆଁ ପାହାଚ ସଦୃଶ ପ୍ରତ୍ୟେକ ପୀଢ଼ା ସଦୃଶ ଭାଗ । |
| ପୀଢ଼ ଦେଉଳ | ଯେଉଁ ଦେଉଳର ଛାତ ଏକାଧିକ ପୀଢ଼କୁ ନେଇ ଗଠିତ । |
| ପୀଢ଼ମୁଣ୍ଡି | ମନ୍ଦିର ଦେହରେ ଥିବା ପୀଢ଼ ଦେଉଳସଦୃଶ ଛୋଟ ନିର୍ମାଣ । |
| ପତ୍ରଲତା | ପତ୍ରବହୁଳ ଲତା ମଣ୍ଡନକୃତି । |
| ପ୍ରତିରଥ | ଅନୁରଥକୁ ମଧ ପ୍ରତିରଥ କହାଯାଏ । |
| ପଦ୍ମ | ମୁଖ୍ୟତଃ ପଦ୍ମ ଫୁଲକୁ ବୁଝାଉଥିଲେହେଁ ମନ୍ଦିର ଗାତ୍ରର ଅଧିକାଂଶ ଚକ୍ରାକାର ନକ୍ସା । |
| ପଦ୍ମପୃଷ୍ଠ | କୌଣସି ଧାର ଉପରେ ଥିବା ପଦ୍ମ ପାଖୁଡ଼ାର ନକ୍ସା । |
| ପଦ୍ମାସନ | ଚକାମାଡ଼ି ବସିବା ଭଙ୍ଗି ବା ଯୋଗାସନ । |
| ପଦ୍ମଗନ୍ଧା | ହସ୍ତରେ ପଦ୍ମଫୁଲ ଧାରଣ କରିଥିବା ନାରୀମୂର୍ତ୍ତି । |
| ପ୍ରଦକ୍ଷଣ | ମନ୍ଦିର ଚତୁପାର୍ଶ୍ୱରେ ବୁଲିବା । ଏହି ରାସ୍ତାକୁ 'ପ୍ରଦକ୍ଷିଣପଥ' କୁହାଯାଏ । |
| ପଦ୍ମପୀଢ଼ | ପ୍ରସାରିତ ପଦ୍ମ ପାଖୁଡ଼ା ନକ୍ସା ଯୁକ୍ତ ପୀଢ଼ । |
| ପାଭାଗ | ପା-ଭାଗ ଅର୍ଥାତ୍ ଦେଉଳର ପାଦ ବା ମୂଳ ଭାଗ । |
| ପ୍ରଭାବଳୀ | ଦେବ ଦେବୀଙ୍କ ମସ୍ତକ ପଛରେ ଥିବା ଚକ୍ରାକାର ମଣ୍ଡନକୃତି କିମ୍ବା ତୋରଣ । |
| ପଞ୍ଚକର୍ମ | ପାଞ୍ଚ ପ୍ରକାର ଧାର ନିର୍ମାଣ ଯଥା, ଖୁରା, କୁମ୍ଭ, ପଟି, କନି ଓ ବସନ୍ତ । |
| ପଞ୍ଚାୟତନ ମନ୍ଦିର : | ମୁଖ୍ୟ ମନ୍ଦିରର ବାହାର ଚାରି କୋଣରେ ଅନ୍ୟ ଚାରିଗୋଟି ଛୋଟ ମନ୍ଦିର ଥିଲେ, ଏକତ୍ର ଏହାକୁ 'ପଞ୍ଚାୟତନ ମନ୍ଦିର' କୁହାଯାଏ । |
| ପୂର୍ଣ୍ଣଘଟ | କଳସ ଉପରେ ପୁଷ୍ପ, ପତ୍ର ଇତ୍ୟାଦି ଥିବା ମଣ୍ଡନକୃତି । |
| ପାର୍ଶ୍ୱଦେବତା | ମୁଖ୍ୟ ଦେଉଳ ବାଡ଼ର ରାହାପାଗ ଅର୍ଥାତ ପାର୍ଶ୍ୱରେ ସ୍ଥାନିତ ହୋଇଥିବା ଦେବ, ଦେବୀ । |
| ଫଣା | ସର୍ପରଫଣାକୁ ବୁଝାଏ, କିମ୍ବା ଫଣା ସଦୃଶ ବାହାରକୁ ବାହାରିଥିବା ନିର୍ମାଣ । |
| ଫନ୍ଦିଗ୍ରନ୍ଥି | ଗୋଲ, ଗୋଲ ଛନ୍ଦଥିବା ଜାଲି ସଦୃଶ ମଣ୍ଡନକୃତି । |
| ବୋଇତାଳ | ବୋଇତି କଖାରୁର ଏକ ଫାଳ ସଦୃଶ ଛାତ ଥିବା ନିର୍ମାଣ । ଅନ୍ୟ ଭାବରେ ଏହା ଖାକରା ଦେଉଳ । |
| ବେକି | ଦେଉଳ ମସ୍ତକର ମୂଳଭାଗ, ବେକ ସଦୃଶ ଅଙ୍ଗ । |

| | |
|---|---|
| ବେକି-ଭୈରବ | ଦେଉଳ ବେକୀରେ ଥିବା ଶିବଙ୍କ ମୂର୍ତ୍ତି । |
| ବେକି-ଗରୁଡ଼ | ବୈଷ୍ଣବ ମନ୍ଦିରର ବେକି ନିକଟରେ ଥିବା ଗରୁଡ଼ ମୂର୍ତ୍ତି । |
| ବଜ୍ର | ଇନ୍ଦ୍ରଙ୍କ ମୁଖ୍ୟ ଆୟୁଧ ବା କଠିନତାର ପ୍ରତୀକ । |
| ବଜ୍ରମସ୍ତକ | ଦେଉଳ ଗଣ୍ଡିର ଚାରି ପାର୍ଶ୍ୱରେ ଥିବା ଚକ୍ରାକାର ମୁଖ୍ୟ ମଣ୍ଡନକୃତି । |
| ବଜ୍ରମୁଣ୍ଡି | ବଜ୍ରମସ୍ତକ ସଦୃଶ ଛୋଟ ନକ୍ସା ଥିବା ଦେଉଳ ସଦୃଶ ଛୋଟ ନିର୍ମାଣ । ମନ୍ଦିରର ବିଭିନ୍ନ ଅଙ୍ଗରେ ଦେଖାଯାଏ । |
| ବାଡ଼ | ଦେଉଳର କାନ୍ଥ, ଯାହା ଭୂମି ଭୂପରୁ ସଳଖ ଭାବେ ଉଠିଥାଏ । |
| ବେଦୀ | ଚଉତରା, ବର୍ଗାକାର ଉଚ୍ଚ ନିର୍ମାଣ । |
| ବେତାଳ | ଉପଦେବତା ଶ୍ରେଣୀୟ ଗଣ । |
| ବିଦ୍ୟାଧର | ଦେବତାମାନଙ୍କ ଅନୁଚର, ଉଚ୍ଚ ଶ୍ରେଣୀୟ ଉପଦେବତା । |
| ବନଲତା | ବନର ଲତା ସଦୃଶ ଅନା-ବନା ପତ୍ର ଫୁଲ ଥିବା ଡ଼ାଳି ନକ୍ସା । |
| ବନମାଳା | ଅନା ବନା ଫୁଲରମାଳା, ମଣ୍ଡନକୃତି । |
| ବିନ୍ୟାସା | କେଶବିନ୍ୟାସ କରୁଥିବା ନାରୀମୂର୍ତ୍ତି । |
| ବରଣ୍ଡ | ଦେଉଳ ବାଡ଼ର ଅଗ୍ରଭାଗ, ଯେଉଁଥିରେ ବିଭିନ୍ନ ଧାରର କାମଥାଏ । |
| ବରଣ୍ଡି | କନିକପାଗର ଛୋଟ, ଛୋଟ ଧାର । |
| ବାରେଣି | ବାରଣ କରୁଥିବା ନିର୍ମାଣ ଛୋଟବୋଡ଼ ବା ରେଲିଙ୍ଗ୍ । |
| ବିମାନ | ରେଖ ଦେଉଳକୁ ବୁଝାଏ । ଏହା ବ୍ୟତୀତ ରେଖଦେଉଳ ସଦୃଶ ଛୋଟ ନିର୍ମାଣକୁ ମଧ୍ୟ ବିମାନ କୁହାଯାଏ । ଏହା ମନ୍ଦିର ବାଡ଼ରେ ଥାଏ । |
| ବିମାନିକ | ବିଭିନ୍ନ ଆକାର ପ୍ରକାରର ମୁଣ୍ଡି ଥିବା ଦେଉଳ ସଦୃଶ ଛୋଟ ନିର୍ମାଣ । |
| ବଳା | ଅର୍ଦ୍ଧଗୋଲାକାର, ମଧ୍ୟମ ମୋଟାର ଧାର ନିର୍ମାଣ । |
| ବାଳି | ଅର୍ଦ୍ଧଗୋଲାକାର ସରୁ ଧାର ନିର୍ମାଣ । |
| ବିଷମ | ଯେଉଁଠାରେ ରେଖଦେଉଳର ଗଣ୍ଡି ବକ୍ରହୋଇ ଏକ ସମତଳ ବା ଘୋଡାଚକଡା ସୃଷ୍ଟି କରିଥାଏ । |
| ବାହନ | ଦେବତାମାନଙ୍କୁ ବହନ କରୁଥିବା ପଶୁ, ପକ୍ଷୀ କିମ୍ବା ଅନ୍ୟ ପ୍ରାଣୀ । |
| ବନ୍ଧନୀ | ଦେଉଳ ବାଡ଼ର ଚତୁଃପାର୍ଶ୍ୱରେ ଘୁରିଥିବା ଏକ କିମ୍ବା ଏକାଧିକ ଧାର ନିର୍ମାଣ । |
| ବର୍ତ୍ତୁଳ | ଚକ୍ରାକାର ବା ଗୋଲ ନକ୍ସା । |
| ଭାରରକ୍ଷକ | ଗଣ ଜାତୀୟ ମୂର୍ତ୍ତି । ମନ୍ଦିରର କୌଣସି ଅଙ୍ଗର ଭାର ବହନ କରୁଥିବା ଭଙ୍ଗିରେ ଦେଖା ଯାଏ । |
| ଭିତ୍ତି | ମୂଳଦୁଆ । |
| ଭୂନକ୍ସା | ମନ୍ଦିର ନିର୍ମାଣ ପୂର୍ବରୁ ମନ୍ଦିରର ପରିକଳ୍ପନା ଉପରେ ଭିତ୍ତିକରି ଭୂମି ଉପରେ ଅଙ୍କା ଯାଇଥିବା ରେଖାଚିତ୍ର ବା Groundplan. |

ଭୂମି | ଦେଉଳ କନିକ ପାଗର ଥିବା କେତେକ ବରଣ୍ଡିକୁ ଏକତ୍ର ଭୂମି କୁହନ୍ତି । ଅନ୍ୟ ଭାବରେ ଏହା ଭୂମିବରଣ୍ଡି ।
ଭୂମିଅଁଳା | କନିକ ପାଗରେ ନିର୍ଦ୍ଦିଷ୍ଟ ବ୍ୟବଧାନରେ ଥିବା ଅଁଳାର ଅଂଶ ସଦୃଶ ନିର୍ମାଣ ।
ଭୋ | ମନ୍ଦିର ଗଣ୍ଡିରେ ଥିବା ମୁଖ୍ୟ ମଣ୍ଡନକୃତି ବା ବକ୍ରମସ୍ତକର ପ୍ରାଚୀନ ନାମ ।
ମକର | ଅର୍ଥାତ୍ କୁମ୍ଭୀର, ମୂର୍ତ୍ତିକଳାରେ ମକରମୁଖ ସହିତ ହସ୍ତୀଶୁଣ୍ଢ ସଂଯୋଗ ହୋଇଥାଏ ।
ମକର ତୋରଣ | ଯେଉଁ ତୋରଣର ଦୁଇ ପାର୍ଶ୍ୱରେ ମକର ମସ୍ତକ ଥାଏ ।
ମୁକୁଟ | ଏକ ପ୍ରକାର ତ୍ରିକୋଣ ନକ୍ସା ବା ମଣ୍ଡନକୃତି ।
ମୁଖଶାଳା | ମୁଖ୍ୟ ଦେଉଳର ସମ୍ମୁଖରେ ଥିବା ପ୍ରଥମ କୋଠରୀ ।
ମୁଖମଣ୍ଡପ | ମୁଖ୍ୟ ଦେଉଳର ସମ୍ମୁଖରେ ଥିବା ଖମ୍ବଯୁକ୍ତ ମଣ୍ଡପ ।
ମୁଗ୍ଧା | କୌଣସି ଏକ କମନୀୟ ଭଙ୍ଗିରେ ଥିବା ସହାସ୍ୟ ବଦନା ନାରୀମୂର୍ତ୍ତି ।
ମେଘା | ମେଘ ସଦୃଶ ଜଟିଳ ଅର୍ଦ୍ଧଚକ୍ରାକର ରଚନାର ନକ୍ସା ବା ଡାଳିକର୍ମ ।
ମାତୃମୂର୍ତ୍ତି | ସନ୍ତାନକୁ ବାତ୍ସଲ୍ୟ ଭାବ ପ୍ରଦର୍ଶନ କରୁଥିବା ନାରୀମୂର୍ତ୍ତି ।
ମିଥୁନ | ଯେକୌଣସି କମନୀୟ ଭଙ୍ଗୀରେ ଥିବା ସ୍ତ୍ରୀ-ପୁରୁଷଙ୍କ ଯୁଗଳମୂର୍ତ୍ତି ।
ମୈଥୁନ | ସ୍ତ୍ରୀ-ପୁରୁଷଙ୍କ ରତିକ୍ରୀଡା ମୂର୍ତ୍ତି ।
ମୃଦ | ଦେଉଳର ଭିତର ଛାତ ।
ମୁଦ୍ରା | ଦେବ, ଦେବୀଙ୍କ ହସ୍ତର ଭଙ୍ଗି, ଯେଉଁଥିରେ ଭାବ ପ୍ରକାଶ ପାଏ ।
ମର୍ଦଳା | ମର୍ଦଳ ବାଦନ କରୁଥିବା ନାରୀମୂର୍ତ୍ତି ।
ମାନ | ମାପ, ସ୍ତର ।
ମାନିନୀ | ଅଭିମାନ ଭାବ ପ୍ରକାଶ କରୁଥିବା ନାରୀମୂର୍ତ୍ତି ।
ମସ୍ତକ | ଦେଉଳର ଗଣ୍ଡି ଉପରେ ଥିବା ବେକୀ, ଅଁଳା, ଖପୁରି ଓ କଳସକୁ ଏକତ୍ର ମସ୍ତକ କୁହାଯାଏ ।
ମାହୁନ୍ତି | କୌଣସି ଧାର ନିର୍ମାଣରେ ହସ୍ତୀ ପୃଷ୍ଠ ଭଳି ଥିବା ଗଡାଣିଆ ଉପର ଅଂଶ ।
ମଣ୍ଡପ | ବେଦୀ ସଦୃଶ ଉଚ୍ଚ ନିର୍ମାଣ ।
ମୁଣ୍ଡି | ଛୋଟ ଦେଉଳ ସଦୃଶ ନିର୍ମାଣ । ମନ୍ଦିରର ବିଭିନ୍ନ ଅଙ୍ଗରେ ଦେଖାଯାଏ ।
ମଣ୍ଡନକୃତି | କାରୁକଳା ପୂର୍ଣ୍ଣ ରଚନା ବା Decorative element.
ମନ୍ଦିରଚାରିଣୀ | ମନ୍ଦିର ବେକିରେ, ଦୁଇ ହସ୍ତ ଭୂମି ଉପରେ ଭରାଦେଇ ବସିଥିବା ନାରୀମୂର୍ତ୍ତି ।
ମଲ୍ଲୀଫୁଲପାଦିକ : | ମଲ୍ଲୀଫୁଲ ନକ୍ସା ଥିବା ଧାର ।
ଯୋଗିନୀ | ଦେବୀଙ୍କ ଅନ୍ୟ ରୂପ ।
ଯୋଗାସନ | ପଦ୍ମାସନ ବା ଚକାମାଡ଼ି ବସିବା ଭଙ୍ଗି ।
ଯୂପ | ବଳିଦେବା ଖୁଣ୍ଟ ।
ଯକ୍ଷ | ଦେବଯୋନୀ ସମ୍ଭୂତ ଗଣ, ପ୍ରାଚୀନ ଲୋକ ଦେବତା ।

| | |
|---|---|
| ରେଖଦେଉଳ | ଯେଉଁ ମନ୍ଦିର ଦେହରେ ଆଲମ୍ବ ରଥକ ବା ପାଗ ଥାଏ । |
| ରେଖମୁଣ୍ଡି | ରେଖଦେଉଳ ସଦୃଶ ଛୋଟ ନିର୍ମାଣ, ଯାହାକି ଦେଉଳର ବିଭିନ୍ନ ଅଙ୍ଗରେ ଦେଖାଯାଏ । |
| ରାଜଲିଳାସନ | ରାଜାଙ୍କ ଭଳି ସାବଲୀଳ ଭଙ୍ଗିରେ ବସିଥିବା ଆସନ । |
| ରତୀକେରା | ପ୍ରଗତିଶିଳ ବା କ୍ଷିପ୍ର ରେଖା ଚିତ୍ରରେ ଅଙ୍କିତ ଲତା ପତ୍ର ନକ୍ସା । |
| ରଥକ | ରେଖଦେଉଳ ବାଡ଼ ଓ ଗଣ୍ଡିରେ ଥିବା ଆଲମ୍ବ ଭାଗ । |
| ରାହାପାଗ | ରେଖଦେଉଳ ବାଡ଼ ଓ ଗଣ୍ଡିର ଆଲମ୍ବ ମଧଭାଗ । |
| ରଙ୍ଗଣୀ | ଏକ ପ୍ରକାର ଫୁଲ ନକ୍ସା । |
| ଲତାପତ୍ର | ଲତା ପତ୍ରର ଡ଼ାଳି ନକ୍ସା । |
| ଲଳିତାସନ | ବସିବା ଭଙ୍ଗି, ଯେଉଁଥିରେ ଗୋଟିଏ ଗୋଡ଼ ବଇଠି ଆସନ ଉପରେ ଥିବା ବେଳେ ଅନ୍ୟ ଗୋଡ଼ ଭୂମିସ୍ପର୍ଶ କରିଥାଏ । |
| ଲହରି | ପାଣିଢ଼େଉ ସଦୃଶ ନକ୍ସା କିମ୍ବା ପୀଢ଼ ଦେଉଳର ପୀଢ଼ ସମୂହ । |
| ଶିଖର | ଦେଉଳର ଉର୍ଦ୍ଧ୍ୱଭାଗ । |
| ଶିକ୍ଷାସଦନ | ଗୁରୁ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିବା ଦୃଶ୍ୟର ମୂର୍ତ୍ତି । |
| ଶିଳ୍ପୀ | ଶିଳ୍ପକଳାରେ ଜ୍ଞାନ ଥିବା ସହିତ ଶିଳ୍ପକାର୍ଯ୍ୟ କରୁଥିବା ବ୍ୟକ୍ତି । |
| ଶିଳ୍ପଶାସ୍ତ୍ର | ଗୃହ, ମନ୍ଦିର କିମ୍ବା ମୂର୍ତ୍ତି ନିର୍ମାଣ କୌଶଳ ଓ ତଥ୍ୟ ଲେଖାଥିବା ପ୍ରାଚୀନ ରଚନା । |
| ଶ୍ରୀଅଁଳା | ଅମଳକ ଶିଳା । |
| ଶଙ୍କୁ | ମନ୍ଦିର ଗର୍ଭଗୃହର କେନ୍ଦ୍ର ବିନ୍ଦୁରୁ ସମକୋଣ ସୃଷ୍ଟିକରି ଉର୍ଦ୍ଧ୍ୱକୁ ଉଠିଥିବା ନିର୍ଦ୍ଧାରିତ ରେଖା । |
| ଶାଳଭଞ୍ଜିକା | ଶାଳ ବୃକ୍ଷର ଡ଼ାଳକୁ ଭାଙ୍ଗୁଥିବା ଅର୍ଥ ବୁଝାଉଥିବା ବେଳେ ଭାରତୀୟ ମୂର୍ତ୍ତି କଳାରେ ଯେକୌଣସି ବୃକ୍ଷ ଡ଼ାଳକୁ ଧାରଣ କରିଥିବା ନାରୀମୂର୍ତ୍ତି । |
| ସପ୍ତରଥ | ଯେଉଁ ଦେଉଳର ପ୍ରତ୍ୟେକ ପାଖରେ ସାତଟି ଆଲମ୍ବ ଭାଗ ବ ରଥକ ଥାଏ । |
| ସମଭଙ୍ଗ | ସଳଖ ଭାବରେ ଦଣ୍ଡାୟମାନ ହୋଇଥିବା ମୂର୍ତ୍ତିର ଭଙ୍ଗି । |
| ସୂତ୍ରଧର | ଗୃହ କିମ୍ବା ମନ୍ଦିର ଇତ୍ୟାଦିର ନିର୍ମାଣ ବେଳେ ଯେଉଁ ଶିଳ୍ପୀ ଦଣ୍ଡ ଓ ସୂତ୍ର ସାହାର୍ଯ୍ୟରେ ମାପାନୁପାତ ନିର୍ଣ୍ଣୟ କରନ୍ତି । |
| ସିଂହାସନ | ସିଂହମୂର୍ତ୍ତି ଯୁକ୍ତ ଉଚ୍ଚ ଆସନକୁ ବୁଝାଉଥିବା ବେଳେ ସାଧାରଣତଃ ଦେବତାଙ୍କ ଉଚ୍ଚ ଆସନକୁ ବୁଝାଏ । |
| ସ୍ଥପତି | ଗୃହ କିମ୍ବା ମନ୍ଦିରଭଳି ନିର୍ମାଣ କାର୍ଯ୍ୟର ମୁଖ୍ୟ ଶିଳ୍ପୀ ବା କାରିଗର । |
| ହଂସଲତା | ହଂସର ପୁଚ୍ଛରୁ ବାହାରିଥିବା ଡାଳି ନକ୍ସାର ମଣ୍ଡନକୃତି । |



# ଭୁବନେଶ୍ୱର ବାହାରର କେତେକ ଉଲ୍ଲେଖଯୋଗ୍ୟ ମନ୍ଦିର

**ପ୍ରାଚୀନ ମନ୍ଦିର, ଖ୍ରୀ: ୭-୯ମ ଶତାବ୍ଦୀ**

ଭଗ୍ନଶିବ ମନ୍ଦିର, ବଙ୍କାଡ଼, ବାଣପୁର, ଖୋର୍ଦ୍ଧା ।

ଗର୍ତ୍ତେଶ୍ୱର ମନ୍ଦିର, ପୁରୋହିତପୁର, ଖୋର୍ଦ୍ଧା ।

ପଞ୍ଚିମେଶ୍ୱର ମନ୍ଦିର, ଅମଙ୍ଗେଇ, କଟକ ।

ମାଣିକେଶ୍ୱର ମନ୍ଦିର, ଶୁକ୍ଳେଶ୍ୱର, ସାଲେପୁର ।

କୁଙ୍ଗେଶ୍ୱର ମନ୍ଦିର, ବକୁକୋଟ, ଢେଙ୍କାନାଳ ।

ପଞ୍ଚିମେଶ୍ୱର ମନ୍ଦିର, ଭାପୁର, ଢେଙ୍କାନାଳ ।

କନକେଶ୍ୱର ମନ୍ଦିର, କୁଆଲୋ, ଢେଙ୍କାନାଳ ।

ନରସିଂହସ୍ୱାମୀ ମନ୍ଦିର , ବଡ଼ଗାଁ, ଗଞ୍ଜାମ ।

ବଟେଶ୍ୱର ମନ୍ଦିର, କର୍ଣ୍ଣଆଗଡ଼, ଗଞ୍ଜାମ ।

ଭିମ ମନ୍ଦିର, ମହେନ୍ଦ୍ରଗିରି, ଗଜପତି ।

ଜୈନ ମନ୍ଦିର ପୁଞ୍ଜ, ସୁବେଇ, କୋରାପୁଟ ।

ମଲ୍ଲିକେଶ୍ୱର ମନ୍ଦିର, ପଦ୍ମପୁର, ରାୟଗଡ଼ା ।

ପାତାଳେଶ୍ୱର ମନ୍ଦିର, ପାଇକପଡ଼ା, ରାୟଗଡ଼ା ।

ଉତ୍ତରେଶ୍ୱର ମନ୍ଦିର, ମୋହନଗିରି, କଳାହାଣ୍ଡି ।

**ମଧ୍ୟଯୁଗୀୟ ମନ୍ଦିର ଖ୍ରୀ: ୧୦-୧୧ଶ ଶତାବ୍ଦୀ**

ଖିଲେଶ୍ୱର ମନ୍ଦିର, ଖେଲାର, ପୁରୀ ।

ଉଗ୍ରେଶ୍ୱର ମନ୍ଦିର, ବଲଙ୍ଗା, ପୁରୀ ।

ଗଚିଶ୍ୱର ମନ୍ଦିର, ଅଳଗୁମ, ପୁରୀ ।

ଚଉଷଠି ଯୋଗିନୀ, ହିରାପୁର, ଖୋର୍ଦ୍ଧା ।

ଜଳେଶ୍ୱର ମନ୍ଦିର, କଳାରାହାଙ୍ଗା, ଖୋର୍ଦ୍ଧା ।

କପିଳେଶ୍ୱର ମନ୍ଦିର, ଡ଼ିଆ, ଖୋର୍ଦ୍ଧା ।

ଦୁର୍ଗା ମନ୍ଦିର, ବଳପୁର, ଖୋର୍ଦ୍ଧା ।

ସୋମନାଥ ମନ୍ଦିର ଘୋରଡ଼ିଆ, ଖୋର୍ଦ୍ଧା ।

ବ୍ରହ୍ମେଶ୍ୱର ମନ୍ଦିର, ବେରବୋଇ, ଖୋର୍ଦ୍ଧା ।

ଜଲେଶ୍ୱର ମନ୍ଦିର, ଗୋଳବାଇ, ଖୋର୍ଦ୍ଧା ।

କୁନ୍ତେଶ୍ୱର ମନ୍ଦିର, ଅରାଗଡ଼, ଖୋର୍ଦ୍ଧ ।

ଭବକୁଣ୍ଡଳେଶ୍ୱର ମନ୍ଦିର, ଟଙ୍କପାଣି, ଖୋର୍ଦ୍ଧା ।

ପଞ୍ଚୁପାଣ୍ଡବ ମନ୍ଦିର, ଗଣେଶ୍ୱରପୁର, କଟକ ।

ନାସିକେଶ୍ୱର ମନ୍ଦିର, ନାସିକ, କଟକ ।

ଉତ୍ତରେଶ୍ୱର ମନ୍ଦିର, ବୁଢ଼ାଲିଙ୍ଗ, ଚୌଦ୍ୱାର ।

କପିଳେଶ୍ୱର ମନ୍ଦିର, ଚୌଦ୍ୱାର, କଟକ ।

ଗୁପ୍ତେଶ୍ୱର ମନ୍ଦିର, ଚଷାପଡ଼ା, କଟକ ।

ବୈଦ୍ୟନାଥ ମନ୍ଦିର ପୁଞ୍ଜ, ବୈଦ୍ୟେଶ୍ୱର, କଟକ ।

ଦୁର୍ଗା ମନ୍ଦିର, ରାମେଶ୍ୱର, କଟକ ।

ଯଜ୍ଞବରାହ ମନ୍ଦିର, ଯାଜପୁର ।

କପିଳେଶ୍ୱର ମନ୍ଦିର, ନୁଆଧାନ, ଯାଜପୁର ।

ରାମେଶ୍ୱର ମନ୍ଦିର, ଭଗବତୀପୁର, ଯାଜପୁର ।

ତ୍ରିଲୋଚନେଶ୍ୱର ମନ୍ଦିର, କୁଣ୍ଡେଶ୍ୱର, ଜଗତସିଂହପୁର ।

କପିଳେଶ୍ୱର ମନ୍ଦିର, କୋପାଳ, ଜଗତସିଂହପୁର ।

କୁବେରଶ୍ୱର ମନ୍ଦିର, କଇମ, ଗଞ୍ଜାମ ।

ମହାଲିଙ୍ଗେଶ୍ୱର ମନ୍ଦିର, ଜିଲୁଣ୍ଡି, ଗଞ୍ଜାମ ।

ଝାଡ଼େଶ୍ୱର ମନ୍ଦିର, କୋଦଲା, ଗଞ୍ଜାମ ।

ସିଦ୍ଧେଶ୍ୱର ମନ୍ଦିର, ଗଞ୍ଜାମ, ଗଞ୍ଜାମ ।

**ମଧ୍ୟଯୁଗୀୟ ମନ୍ଦିର, ଖ୍ରୀ: ୧୨-୧୩ଶ ଶତାବ୍ଦୀ**

ଶ୍ରୀ ଜଗନ୍ନାଥ ମନ୍ଦିର, ପୁରୀ ।

ସୂର୍ଯ୍ୟ ମନ୍ଦିର, କୋଣାର୍କ, ପୁରୀ ।

ଗଙ୍ଗେଶ୍ୱରୀ ମନ୍ଦିର, ବୟାଳିସିବାଟି, ପୁରୀ ।

ସୋମନାଥ ମନ୍ଦିର, ବିଷ୍ଣୁପୁର, ପୁରୀ ।

ସ୍ୱପ୍ନେଶ୍ୱର ମନ୍ଦିର, ପୂ.ବାସୁଦେବପୁର, ପୁରୀ ।

ପିଙ୍ଗଳାକ୍ଷୀ ମନ୍ଦିର, ଡ଼େଣୁଆ, ପୁରୀ ।

ସାକ୍ଷୀଗୋପୀନାଥ, ସାକ୍ଷୀଗୋପାଳ, ପୁରୀ ।

ଦକ୍ଷପ୍ରଜାପତି ମନ୍ଦିର, ବାଣପୁର, ପୁରୀ ।

ଭବକୁଣ୍ଡଳେଶ୍ୱର ମନ୍ଦିର, ମାଣିକପାଟଣା, ପୁରୀ ।

ବୁଦ୍ଧନାଥ ମନ୍ଦିର, ଗାରଡିପାଞ୍ଚଣ, ଖୋର୍ଦ୍ଧା ।

ଅର୍ଜୁନେଶ୍ୱର, ହଳଦିବସନ୍ତ, ଖୋର୍ଦ୍ଧା ।

ଅମୃତେଶ୍ୱର ମନ୍ଦିର, ବନ୍ତଳସିଂ, ଖୋର୍ଦ୍ଧା ।

କ୍ଷୀରେଶ୍ୱର ମନ୍ଦିର, ବଡ଼କ୍ଷୀରା, କଟକ ।

ଭଦ୍ରେଶ୍ୱର ମନ୍ଦିର, ଭଦ୍ରେଶ୍ୱର, କଟକ ।

ପଞ୍ଚପାଣ୍ଡବ ମନ୍ଦିର, ଧନିସ, କଟକ ।

ଶିବମନ୍ଦିର, ନାଥୁଆବର, ଯାଜପୁର ।

କପିଳେଶ୍ୱର, ନୂଆଁଧାନ, ଯାଜପୁର ।

ଲକ୍ଷ୍ମୀନାରାୟଣ, ସାଧୁଶାସନ, ଜଗତସିଂପୁର ।

ଶିବମନ୍ଦିର, ଲେ. ଭଗବାନପୁର, ଜଗତସିଂପୁର ।

ଗଙ୍ଗାଧରସ୍ୱାମୀ ମନ୍ଦିର, ଖଲ୍ଲିକୋଟ, ଗଞ୍ଜାମ ।

ଉତ୍ତରେଶ୍ୱର ମନ୍ଦିର, ପିଚଳ, ଗଞ୍ଜାମ ।

ଧାରେଶ୍ୱର ମନ୍ଦିର, କୋଦଳା, ଗଞ୍ଜାମ ।

କୁମାରେଶ୍ୱର ମନ୍ଦିର, ଗୁଆମାଳ , ବଲେଶ୍ୱର ।

ବିରଞ୍ଚିନାରାୟଣ ମନ୍ଦିର, ପାଳିଆ, ବାଲେଶ୍ୱର ।

## ପରବର୍ତ୍ତୀ ସମୟର ମନ୍ଦିର : ୧୪-୧୫ଶ ଶତାବ୍ଦୀ

ନୀଳମାଧବ ମନ୍ଦିର, କଣ୍ଟିଲୋ, ପୁରୀ ।

ଅଲାରନାଥ ମନ୍ଦିର, ବ୍ରହ୍ମଗିରି, ପୁରୀ ।

କୁଣ୍ଡଳେଶ୍ୱର ମନ୍ଦିର, ବିଦ୍ୟାଧରପୁର, ପୁରୀ,

ଜୟଗୋପାଳ ମନ୍ଦିର, ଦାଣ୍ଡମୁକୁନ୍ଦପୁର, ପୁରୀ ।

ବିଶ୍ୱନାଥ ମନ୍ଦିର, ବିଷ୍ଣୁପୁର, ପୁରୀ ।

ବୋଧକେଶ୍ୱର ମନ୍ଦିର, ଭିଲ୍ଲିଦେଉଳି, ଖୋର୍ଦ୍ଧା ।

କପିଳେଶ୍ୱର ମନ୍ଦିର, କପିଳପ୍ରସାଦ, ଖୋର୍ଦ୍ଧା ।

କଖାରୁଆ ବୈଦ୍ୟନାଥ, ମାଣିକ୍ରି, ଖୋର୍ଦ୍ଧା ।

ଆଖଣ୍ଡଳେଶ୍ୱର ଚାମଡ଼ା, କଟକ ।

ଚାଟେଶ୍ୱର ମନ୍ଦିର, କିସନପୁର, କଟକ ।

ତ୍ରିଲୋଚନେଶ୍ୱର ମନ୍ଦିର, ହଂସପଡା, କଟକ ।

ଦୁର୍ଗାମନ୍ଦିର, ହାଟମୋଳ, ଛିଗିରିଆ, କଟକ ।

ଗୋପୀନାଥ ମନ୍ଦିର, ରେମୁଣା, ବାଲେଶ୍ୱର ।

କୋଶଳେଶ୍ୱର ମନ୍ଦିର, ଦେଓଗାଁ, କେନ୍ଦୁଝର ।

ସୁନ୍ଦରମାଧବ ମନ୍ଦିର, ପୁରୁଷୋତ୍ତମପୁର, ଗଞ୍ଜାମ ।

ଜଗନ୍ନାଥ ମନ୍ଦିର, ପାଲୁରୁ, ଗଞ୍ଜାମ ।

ଜଗନ୍ନାଥ ମନ୍ଦିର, ଖଲ୍ଲିକୋଟ, ଗଞ୍ଜାମ ।

ଜଗନ୍ନାଥ ମନ୍ଦିର, ମାରଦା, ଗଞ୍ଜାମ ।

କୁନ୍ତୀ ଓ ଯୁଧିଷ୍ଠିର ମନ୍ଦିର, ମହେନ୍ଦ୍ରଗିରି, ଗଜପତି ।

ଚନ୍ଦ୍ରଶେଖର ମନ୍ଦିର, କପିଳାସ, ଢେଙ୍କାନାଳ ।

ଶିବ, ବିଷ୍ଣୁ ଓ ଚଣ୍ଡୀ ମନ୍ଦିର, ସୋନପୁର ।

ନୃସିଂହନାଥ ମନ୍ଦିର, ପାଇକମାଳ, ସମ୍ବଲପୁର ।



# ପ୍ରାଚୀ ନଦୀ ଅବବାହିକାର ପ୍ରାଚୀନ କୀର୍ତ୍ତି

କାଠଯୋଡ଼ି ମହାନଦୀର ଏକ ମୁଖ୍ୟ ଶାଖାନଦୀ । ଏଥିରୁ ପୁନଶ୍ଚ ଅନେକ ଶାଖା ପ୍ରଶାଖା ବାହାରି ପୁରୀ ଓ କଟକ ଜିଲ୍ଲାର ଏକ ବିସ୍ତୃତ ଉପକୂଳ ଅଞ୍ଚଳରେ ପ୍ରବାହିତ ହୁଏ । ପୁଣ୍ୟତୋୟା ଭାବେ ଖ୍ୟାତ 'ପ୍ରାଚୀନଦୀ' ଏହା ମଧ୍ୟରେ ଅନ୍ୟତମ । ଏହାର ଉତ୍ପତ୍ତି ସ୍ଥଳ ନରାଜ ଠାରୁ ଅସ୍ତରଙ୍ଗ ଠାରେ ବଙ୍ଗୋପ ସାଗରରେ ସଂଯୋଗ ହେବା ଯାଏ, ବିଭିନ୍ନ ସ୍ଥାନରେ ଏହାର ନାମ ଭିନ୍ନ ଭିନ୍ନ ହେଲେହେଁ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ନିକଟରେ ଏହା 'ପ୍ରାଚୀ' ନାମରେ ସୁପରିଚିତ । ପୂର୍ବେ ଏହି ଅବବାହିକାର ଅଧିବାସୀମାନେ ମନ୍ଦିର ନିର୍ମାଣକୁ ଜୀବନର ସର୍ବଶ୍ରେଷ୍ଠ ପୁଣ୍ୟକାର୍ଯ୍ୟ ବୋଲି ମନେ କରୁଥିବାରୁ, ବର୍ତ୍ତମାନ ଏଠାରେ ଅନେକ ପ୍ରାଚୀନ ମୂର୍ତ୍ତି ଓ ମନ୍ଦିରର ପ୍ରତ୍ନାବଶେଷ ଦେଖିବାକୁ ମିଳେ । ଖ୍ରୀ: ୯ମ-୧୨ଶ ଶତାବ୍ଦୀ ମଧ୍ୟରେ ନିର୍ମିତ ଏହାର କେତେକ ଉଲ୍ଲେଖଯୋଗ୍ୟ ମନ୍ଦିରର ନାମ ନିମ୍ନରେ ଦିଆଗଲା ।

ସ୍ୱପ୍ନେଶ୍ୱର ଓ ନୃସିଂହ ମନ୍ଦିର, ଅଡ଼ସପୁର ।
ଚଣ୍ଡୀ ଓ ଶିବ ମନ୍ଦିର, ଅନ୍ୟାନ୍ୟ ମୂର୍ତ୍ତି,
ଜୟଦେବ ପୀଠ - କେନ୍ଦୁଲି ।
ଆଖଣ୍ଡଳେଶ୍ୱର ମନ୍ଦିର, ପ୍ରତାପରୁଦ୍ରପୁର ।
ବାରାହୀ ମନ୍ଦିର, ଲକ୍ଷ୍ମୀ-ନାରାୟଣ
ଓ ନୀଳମାଧବ, ଚଉରାଶି ଓ ଚହଟା ।
ସୋମେଶ୍ୱର ଓ ମଙ୍ଗଳା ମନ୍ଦିର, କାକଟପୁର
ଗ୍ରାମେଶ୍ୱର ମନ୍ଦିର, ଲତାହରଣ ।
ସିଦ୍ଧେଶ୍ୱର ଓ ମାଧବ ମନ୍ଦିର, ମୁଦ୍‌ଗଳ ।
ଦୁର୍ଗା ମନ୍ଦିର, ମୋଟିଆ ।

ଦୁର୍ଗା ମନ୍ଦିର, ଅମଣାକୁଦ ।
ଅଙ୍ଗେଶ୍ୱର ମନ୍ଦିର, ପିତାପଡ଼ା ।
ବିଶ୍ୱନାଥ ମନ୍ଦିର, କୃଷ୍ଣପ୍ରସାଦଗଡ଼ ।
କପିଳେଶ୍ୱର, କପିଳମୁନି ଆଶ୍ରମ ।
ଗୋକର୍ଣ୍ଣେଶ୍ୱର, ଜାମୁଗୋରଡ଼ି ।
ଲକ୍ଷ୍ମୀ ନୃସିଂହ ମନ୍ଦିର, ନୁଆପାଟଣା ।
ଶୋଭନେଶ୍ୱର ମନ୍ଦିର, ନିଆଳି ।
ମାଧବାନନ୍ଦ ମନ୍ଦିର, ମାଧବ ।
ଭୁବନେଶ୍ୱର ଓ ଅନ୍ୟ ଶିବ ମନ୍ଦିର, କଣ୍ଟାପଡ଼ା ।
ଇଶ୍ୱରଦେବ ମନ୍ଦିର, ଜିଉନ୍ତି ।

## ପଶ୍ଚିମ ଓଡ଼ିଶା, ଉପର ମହାନଦୀ ଅବବାହିକାର କେତେକ ମନ୍ଦିର

ନୃସିଂହନାଥ ମନ୍ଦିର, ପାଇକମାଳ ।
ପାତାଳେଶ୍ୱର ମନ୍ଦିର, ବୁଢ଼ୀକୋମନା ।
କୋଶଳେଶ୍ୱର ମନ୍ଦିର, ପାଟଣାଗଡ଼ ।
କୋଶଳେଶ୍ୱର ମନ୍ଦିର, ବୈଦ୍ୟନାଥ ।
ସୋମେଶ୍ୱର, ଇନ୍ଦ୍ରଲାଥ,
ଚଉଷଠି ଯୋଗିନୀ ପୀଠ ଓ ଅନ୍ୟାନ୍ୟ
ମନ୍ଦିର, ରାଣୀପୁର-ଝରିଆଲ ।
ସିଦ୍ଧେଶ୍ୱର ଓ ନୀଳମାଧବ ମନ୍ଦିର,
ଗନ୍ଧରାଡ଼ି, ବୌଦ ।

ରାମେଶ୍ୱର ମନ୍ଦିରପୁଞ୍ଜ, ବୌଦ ।
କିଚକେଶ୍ୱରୀ ଓ କୁଟେଇତୁଣ୍ଡୀ ମନ୍ଦିର, ଖିଚିଂ ।
ଦଧିବାମନ ଓ ଅନ୍ୟାନ୍ୟ ମନ୍ଦିର,
ଖଡ଼ିଆଳ ।
ବିଭିନ୍ନ ମନ୍ଦିରର ପ୍ରତ୍ନାବଶେଷ,
ମାରାଗୁଡ଼ା, ନୁଆପଡ଼ା
କୋଶଳେଶ୍ୱର ମନ୍ଦିର, ଆନନ୍ଦପୁର,
ପ୍ରାଚୀନ ଶିବମନ୍ଦିର, ମୋହନଗିରି
ଭଗ୍ନ ମନ୍ଦିର ଓ ମୂର୍ତ୍ତି, ବେଲଖଣ୍ଡି ।

● ● ●

# ସହାୟକ ପୁସ୍ତକ

1. Rajendralal Mitra, Antiquities of Orissa, Vol- I and II. (Calcutta, 1875 and 1880).

2. M.H. Arnott, Report with Photographs of The Principal Temples at Bhubaneswar (London, 1903).

3. J.Fergusson, History of Indian and Eastern Architecture (London, 1910).

4. M. Ganguly, Orissa and Her Remains (Calcutta, 1912).

5. R.D.Banerji, History of Orissa, Vol- I and II (Calcutta, 1930-31)

6. N.K. Bose, Canons of Orissan Architecture (Calcutta, 1932).

7. S.K. Saraswati, 'Temples of Orissa', Orissa Historical Research Journal, Vol- I & 4 (Bhubaneswar, 1953), pp. 233-53.

8. Debala Mitra, Bhubaneswar (New Delhi, 1961)

9. K.C. Panigrahi, Archaeological Remains of Bhubaneswar (Calcutta, 1961).

10. Percy Brown, Indian Architecture (Buddhist and Hindu Periods), (Bombay, 1965.)

11. Boner & Sharma, Silpa Prakasa. Leiden, E.S. Briess-1966

12. Debala Mitra, Konark, (New Delhi, 1968)

13. Krishna Deva, Temples of North India, NBT, India, (New Delhi 1969)

14. Charles Louis Fabri, History of the Art of Orissa (New Delhi, 1947)

15. Orissa Review, mounments Special, (H.P.R) Deptt. Govt of Orissa 1976.

16. Art Traditions of Orissa, (Orissa Sahitya Akademi, Bhubaneswar, 1982)

17. T.E.Donaldson, Hindu Temple Art of Orissa, Vol- I & II (Leiden, 1985 and 1986)

ସମାପ୍ତ



ଲେଖକଙ୍କ ଅନ୍ୟ ପୁସ୍ତକ —

## କଳିଙ୍ଗର ମୂର୍ତ୍ତିକଳା

## କଳିଙ୍ଗ ମନ୍ଦିରର ମଣ୍ଡନକୃତି

Contact Address : Sri D.C. Panda
MB - 83, BRIT, Badagada,
BHUBANESWAR - 751018
Ph: 311336